

# ଜୀବନ
# ଅଧ୍ୟ ଅମୀତ

କବିତା ବାରିକ

ଜୀବନ କେବେ କେମିତି

ଡ଼ଃ. କବିତା ବାରିକ

ପ୍ରକାଶକ
ଲାର୍କ ବୁକ୍ସ
ସୁବର୍ଣ୍ଣରେଖା ଚ୍ୟାମ୍ବର୍ସ
ଭୌମ ନଗର
ଭୁବନେଶ୍ୱର - ୭୫୧ ୦୦୧

ପ୍ରଥମ ପ୍ରକାଶ
୨୦୦୧

ପ୍ରଚ୍ଛଦ
ଛନ୍ଦା ଚରଣ ଆଚାର୍ଯ୍ୟ

ଟାଇପ ସେଟିଂ
ସ୍ପେକ୍ଟ୍ରମ୍ ପ୍ରିଣ୍ଟର୍ସ
୭୧ ଏ, ଫରେଷ୍ଟ ପାର୍କ୍
ଭୁବନେଶ୍ୱର - ୭୫୧୦୦୯

ମୁଦ୍ରଣ
ଶୋଭନ୍
ଆଚାର୍ଯ୍ୟବିହାର
ଭୁବନେଶ୍ୱର

ପଞ୍ଚଷଠୀ ଟଙ୍କା ମାତ୍ର

Jibana Kebe Kemiti

Written by
Dr. Kabita Barik

Published by
LARK BOOKS
Subarnarekha Chambers
Bhauma Nagar,
Bhubaneswar -751 001

First Edition
2001

Cover
Chhanda Charan Acharya

Type Setting
Spectrum Printers
71A, Forest Park
Bhubaneswar-751009

Printing by
Shovan
Acharya Vihar
Bhubaneswar

Rupees Sixtyfive only

ISBN 81-7375-086-6

## ଉତ୍ସର୍ଗ

ଜୀବନ ବଡ଼ ବିଚିତ୍ର । ଜୀବନ ବହୁବର୍ଣ୍ଣା, ସୁନ୍ଦର ଆଉ ଦୁଃଖ, ବିଷାଦ, ମୃତ୍ୟୁ, ଭୟରେ ପରିପୂର୍ଣ୍ଣ । ତଥାପି ଜୀବନ ଆନନ୍ଦମୟ । ଜୀବନକୁ ନେଇ ହିଁ ସବୁ ସ୍ୱପ୍ନ, ସବୁ କଳ୍ପନା ଆଉ ଆଶାର ତାଜମହଲ ଗଢ଼ା ।

ଯେଉଁମାନେ ସଂଘର୍ଷ ସତ୍ତ୍ୱେ ଜୀବନ ଉପରୁ ବିଶ୍ୱାସ ହରାଇ ନାହାନ୍ତି, ଯେଉଁମାନେ ସବୁ ହରାଇବା ସତ୍ତ୍ୱେ ଏବେ ବି ସଂଘର୍ଷ ଜାରି ରଖିଛନ୍ତି, ସର୍ବୋପରି ଯେଉଁମାନେ ଜୀବନକୁ ଭଲ ପାଆନ୍ତି, ଜୀବନର ବେଦନା, ବିଷାଦରେ ବତୁରି ବି ଜୀବନକୁ ସ୍ୱାଗତ କରନ୍ତି, ସେହିମାନଙ୍କ ହାତରେ ମୋର ଏହି 'ଜୀବନ କେବେ କେମିତି' ଗଳ୍ପ ସଂକଳନ....

କବିତା ବାରିକ

## ''ଜୀବନ କେବେ କେମିତି'' ସଂକଳନ ସମ୍ପର୍କରେ

ନାମକରଣରୁ ଯେ କେହି ପାଠକ ଜାଣିପାରିବେ ଯେ ଏ ଗଳ୍ପ ସଂକଳନର ଅଧିକାଂଶ ଗଳ୍ପ ଜୀବନକୈନ୍ଦ୍ରିକ । ଯଦିଓ ସମସ୍ତେ ଜାଣନ୍ତି ଜୀବନ ବିନା ଗଳ୍ପ କାହିଁ ? ଜୀବନ ତ ସବୁ ସମ୍ପର୍କର କାହାଣୀର ଆଧାର ବିନ୍ଦୁ । ତେଣୁ ତାକୁ ବାଦ୍ ଦେଇ ସୃଷ୍ଟି କାହିଁ ? ଏ ଗଳ୍ପ ସଂକଳନରେ ସମୁଦାୟ ଏକୋଇଶଟି ଗଳ୍ପ ସଂକଳିତ । ମୋ ଆଦ୍ୟ ଜୀବନର ବହୁ ପୁରୁଣା ଗଳ୍ପ ଏଠି ସଂକଳିତ । ପ୍ରକୃତରେ ଜୀବନ ପ୍ରତି ମୋ ନିଜର ଅନ୍ୱେଷାର ଶେଷ ନାହିଁ । ପିଲାଟି ଦିନରୁ ବିଭିନ୍ନ ସୁଦିନ, ଦୁର୍ଦ୍ଦିନ, ସଂଘର୍ଷ, ବେଦନା ଭିତରେ ଜୀବନକୁ ବହୁ ଭାବରେ ଅଙ୍ଗେ ନିଭେଇଛି । ତେଣୁ ଆପେ ଆପେ ଅଜାଣତରେ ଜୀବନର ଅନ୍ୱେଷା ମୋ ଭିତରେ ଦ୍ରୌପଦୀର ଶାଢ଼ି ଭଳି ଅନ୍ତଃହୀନ ପାଲଟି ଯାଇଛି । ପରବର୍ତ୍ତୀ ସମୟରେ ଗଳ୍ପ ଆକାରରେ ତାହା ଜନ୍ମ ନେଇଛି । ତେଣୁ ଏହି ବିଚିତ୍ର ବର୍ଣ୍ଣା ଜୀବନକୁ ଆଧାର କରି ହିଁ ସମୁଦାୟ ଏକୋଇଶଟି ଗଳ୍ପ ଲିଖିତ । ବିଶେଷ କରି 'ଭୁଲିବାର ବେଳ', 'ବନ୍ଧୁ ଆସୁଛନ୍ତି', 'ଜଣେ ନଡ଼ିଆ କୋରା ବିକୁଥିବା ପିଲା ସମ୍ପର୍କରେ', 'ଅଥଚ ମାତୃତ୍ୱ', 'ନିଜ ଭିତରେ ବଦଳିଯିବାର ନିଃଶବ୍ଦ ପ୍ରହର', 'ଯାତ୍ରାର ଶେଷପାଦ', 'ସଂସାରୀ', 'ମେଳା', 'ବଦଳି ଯାଉଥିବା ଜୀବନ', 'କାକ୍ଟସ' ଏବଂ 'ଜୀବନ କେବେ କେମିତି' ଗଳ୍ପଗୁଡ଼ିକରେ ବିଭିନ୍ନ ପରିବେଶରେ ଜୀବନର ଅଦ୍ଭୁତ, ବିଚିତ୍ର ବର୍ଣ୍ଣକୁ ମୁଁ ରୂପାୟିତ କରିଛି ।

ଜାଣେନା ଏ ସଂକଳନକୁ ପାଠକ କିଭଳି ଭାବରେ ଗ୍ରହଣ କରିବେ । ତେବେ ଜୀବନକୁ ନେଇ ମୋ ଭିତରେ ଯେଉଁ ଅନୁଧ୍ୟାନ, ଅନ୍ୱେଷା ତାହାର କିଛିଟା ଝଲକ ମାତ୍ର । ଆମ ଚାରିପଟେ ବହୁଭାବରେ ଜୀବନ ବିଛେଇ ପଡ଼ିଛି । ରାତିର ନିଃଶବ୍ଦ ପ୍ରହରରେ କ୍ଲାନ୍ତ ସାପୁଆ କେଳା ଆକାଶକୁ ଚାହିଁ ବିଡ଼ି ଟାଣୁଥିବା ବେଳେ ଦେଖୁଥିବା ଜୀବନ ଅଥବା ରାସ୍ତାକଡ଼ରେ ଫୁଟପାଥରେ ତିନୋଟି ଇଟା ପକାଇ ଚେପା ସିଲଭର ଡେକ୍‌ଚିରେ ମୁଠାଏ ଭାତ ରାନ୍ଧୁଥିବା ଭିକାରିର ଜୀବନ ହେଉ କି ପ୍ରାଚୁର୍ଯ୍ୟ, ପ୍ରତିପତ୍ତି ଭିତରେ ଅଣନିଃଶ୍ୱାସୀ ହେଇ ହେରୋଇନ୍, ଗଞ୍ଜେଇ, ସୁରାସାକୀ ଭିତରେ କାଟୁଥିବା ଜୀବନ ହେଉ ସବୁଠି ଜୀବନ ବଡ଼ ନିଃସଙ୍ଗ, ଅସହାୟ । ଅଧିକାଂଶ ଜୀବନର ଖାଲିପଣ, ସଂଘର୍ଷ, ବ୍ୟଥାବେଦନା ଓ ଜୀବନକୁ ନେଇ ଅଦ୍ଭୁତ ପାଗଳାମି ଭିତରେ ଜୀଇଁଥିବା ମଣିଷର କଥା ଏସବୁ ଗଳ୍ପ କହିଛି ।

ସବୁଠୁ ଆଶ୍ଚର୍ଯ୍ୟ ମୋର ଏହି ଜୀବନକେନ୍ଦ୍ରିକ ଗଳ୍ପ ସଂକଳନଟିର ପ୍ରଚ୍ଛଦ ଶିଳ୍ପୀ ଛନ୍ଦାଚରଣ ଆଚାର୍ଯ୍ୟ ଯେକି ନିଜେ ଅଦ୍ଭୁତ ଜୀବନଟିଏ ନେଇ ଜୀଇଁଥିଲେ ଯାହାକୁ କୁହାଯାଇପାରେ 'ବହେମିଆନ' ସେ ବି କେବେଠୁ କାଳର ସ୍ରୋତରେ ହଜିଗଲେଣି । ତାଙ୍କର ଅମର କାନ୍‌ଭାସ ପ୍ରଚ୍ଛଦରେ ପ୍ରତୀକାତ୍ମକ ଭାବରେ ସେହି ଜୀବନର ହିଁ ସୂଚନା ଦେଉଛି । ବାସ୍ତବିକ ୰ ଛନ୍ଦାଚରଣ ମୋର ଏ ବହିଟିର ପ୍ରଚ୍ଛଦ ଆଙ୍କି ଧନ୍ୟ କରିଦେଇଛନ୍ତି ମୋତେ । ପୁଣି ତାଠୁ ଆହୁରି ଧନ୍ୟ, କୃତଜ୍ଞ କରିଦେଇଛନ୍ତି ମହେନ୍ଦ୍ରବାବୁ ଏଭଳି ଏକ ବହି ପ୍ରକାଶ କରି ।

କବିତା ବାରିକ

# ସୂଚୀ

# ଭୁଲିବାର ବେଳ

ଝର୍କାର ପର୍ଦ୍ଦା ଟେକି ଦେଲାଭଳି ବେଳେବେଳେ ବର୍ତ୍ତମାନର ଜୀବନରୁ ପର୍ଦ୍ଦା ଉଠିଯାଇ ଅତୀତ ଫର୍ଦ୍ଦା ଦିଶେ । ମନେ ହୁଏ ସେ ଟ୍ରେନ୍‌ରେ ବସିଛି । ଟ୍ରେନ୍ ତାକୁ ନେଇ ଚାଲିଛି ବହୁଦୂରକୁ । ରାସ୍ତା ଜଣାନାହିଁ, ଠିକଣା, ଲକ୍ଷ୍ୟ କିଛି ବି ମାଲୁମ ନାହିଁ । ସେହି ଡବାରେ ଜଣେ ଆର୍ମି ଅଫିସର ତାର ଅସ୍ଥିରତାକୁ ଲକ୍ଷ୍ୟ କରିଛନ୍ତି କେତେ ବେଳୁ । ଜାଣେନା ସେ କେଉଁ ଭାଷାଭାଷୀ, କେଉଁ ଅଞ୍ଚଳର । ପଚାରୁଛନ୍ତି, ମ୍ୟାଡ଼ାମ୍ ! କାହାଁ ଜାୟେଙ୍ଗେ ଆପ୍ ?

ଓଡ଼ିଶା ନାଁ ଶୁଣି ଏଥର ସେ ଓଡ଼ିଆରେ କଥା ଆରମ୍ଭ କରୁଛନ୍ତି । ମୁଁ ବି ଯିବି କଟକର ଜଗତସିଂହପୁରକୁ । ଏହି ଆହ୍ଲାବାଦରେ ମୋର ପୋଷ୍ଟିଂ । ଦୁଇମାସ ଛୁଟିରେ ଯାଉଛି । ଆଉ ଆପଣ ?

ମୁଁ ଆହ୍ଲାବାଦ ବିଶ୍ୱବିଦ୍ୟାଳୟରେ ରିସର୍ଚ୍ଚ ଆସିଷ୍ଟାଣ୍ଟ ଭାବେ ଦୁଇମାସ ହେଲା ଜୟେନ କରିଛି । ଘର ଭୁବନେଶ୍ୱରରେ ।

କିନ୍ତୁ ଏବେତ ଛୁଟି ନାହିଁ ।

ଛୁଟି ନେଇ ଯାଉଛି ।

କଣ କାହାର ଦେହ ଖରାପ ନା କାମରେ ?

ଛାୟା କିଛି ଉତ୍ତର ନ ଦେଇ ଭଦ୍ରବ୍ୟକ୍ତିଙ୍କୁ ଅନାଉଛି । ଲୋକଟାର ଏତେ ପ୍ରଶ୍ନ କରିବାର ଉଚିତ କି ? ସେ କାହିଁକି ଯାଉଛି ଏତେ କଥା ବୁଝିବା କଣ ଦରକାର ?

ଖରାପ ଭାବିଲେ ବୋଧହୁଏ । କ୍ଷମା କରିବେ । ସେ ନମ୍ରଭାବରେ କହିଲେ । କିଛି ଉତ୍ତର ନଦେଇ ଚଳନ୍ତା ଟ୍ରେନର ଝରକା ସେପଟର ଦୃଶ୍ୟ ଦେଖିବାରେ ମନନିବେଶ କରୁଛି ଛାୟା । ତାର ମନଭିତରେ ଯେଉଁ ଝଡ଼, କୋହ ଉଠୁଛି ଏ ଭଳି ପରିସ୍ଥିତିରେ କୌଣସି ପୁରୁଷ ସହିତ ଗପିବା ପାଇଁ ତାର ଆଗ୍ରହ ନାହିଁ । ମନେ ହେଉଛି ସଂସାରର ସବୁ ପୁରୁଷ ଉପରୁ ତାର ବିଶ୍ୱାସ ଉଠିଯାଇଛି । କିନ୍ତୁ ଏତେବଡ଼ ଡବାଟିରେ ସେ ଓ ଭଦ୍ରବ୍ୟକ୍ତି । ରାତିରେ କାଁଭା କେହି ଉଠି ପାରନ୍ତି । ଯେତେ ହେଲେ ଓଡ଼ିଶାର ଲୋକ । କିଛି ଦରକାର ପଡ଼ିପାରେ ।

ସମୟ ବିତି ଚାଲିଛି । ଭଦ୍ରବ୍ୟକ୍ତି ମ୍ୟାଗାଜିନ ଓଲଟାଇ ଚାଲିଛନ୍ତି । ବାହାରେ

ଜମାଟ ବାନ୍ଧୁଥିବା ଅନ୍ଧାରକୁ ଟ୍ରେନ୍‌ର କାଚ ଝରକା ଦେଇ ଉଦାସ ଦୃଷ୍ଟିରେ ଚାହିଁ ରହିଛି ଛାୟା । ଭଦ୍ରବ୍ୟକ୍ତି ଗଳା ସଫା କରି କହୁଛନ୍ତି, ମୋ ନାଁ ତୀର୍ଥଙ୍କର । ଆର୍ମିରେ ତିନିବର୍ଷ ହେଲା ଡକ୍ଟର ଅଛି । ଆପଣଙ୍କ ନାଁ ?

ଛାୟା । ବାସ୍ ସଂକ୍ଷିପ୍ତରେ କଥାଟା ଶେଷ କରି ପୁଣି ବାହାରକୁ ଅନାଉଛି ସେ ।

କେଉଁ ଡିପାର୍ଟମେଣ୍ଟ ?

ଜୁଲୋଜି ।

ଜୁଲୋଜି !

ଭଦ୍ରବ୍ୟକ୍ତି ଯେପରି ଭାବରେ ଜୁଲୋଜି ଶବ୍ଦଟି ଉଚ୍ଚାରଣ କଲେ ଆଶ୍ଚର୍ଯ୍ୟ ହେଲା ଛାୟା ।

ଗୋଟେ କଥା କହିବି କିଛି ଭାବିବେନି ଯଦି...

ଛାୟା ଭାବିଲା, କଣ କହିବେ ସେ ? ଜଣେ ଆର୍ମି ଡକ୍ଟର ଆହ୍ଲାବାଦ ବିଶ୍ୱବିଦ୍ୟାଳୟର ଜୁଲୋଜି ଡିପାର୍ଟମେଣ୍ଟ ସଂପର୍କରେ ଏମିତି କଣ ଜାଣନ୍ତି ଯେ କହିବେ ?

ମ୍ୟାଡ଼ାମ ! ଆପଣଙ୍କ ଡିପାର୍ଟମେଣ୍ଟରେ ଏଚ୍.ଓ.ଡି. ଡକ୍ଟର ସାକ୍‌ସେନା ନା ?

ଚମକି ଉଠୁଛି ଛାୟା । ସର୍ବାଙ୍ଗ ଥରି ଉଠୁଛି । ଭୟାର୍ତ୍ତ ଆଖିରେ ତାକୁ ଚାହୁଁଛି । ତାକୁ କିଛି ସମୟ ଲକ୍ଷ୍ୟ କରି ତୀର୍ଥଙ୍କର କହୁଛନ୍ତି, ଡକ୍ଟର ସାକ୍‌ସେନା ଜଣେ ବିଖ୍ୟାତ ଜୁଲୋଜିଷ୍ଟ । ଲଣ୍ଡନରୁ ପି.ଏଚ୍.ଡି. କରି ଆସିଛନ୍ତି । ମୋଷ୍ଟ ଟ୍ୟାଲେଟେଣ୍ଟ ରିସର୍ଚ୍ଚର ଇନ୍ ଦା ୱାରଲଡ ।

ଜାଣେ, ତାଙ୍କ ଅଣ୍ଡରରେ ମୁଁ ରିସର୍ଚ୍ଚ କରୁଛି ।

ତାଙ୍କ ଅଣ୍ଡରରେ ? ସେ ପୁଣି ଥରେ ଚମକି ଉଠୁଛନ୍ତି ।

ଆଉଥରେ ଆଶ୍ଚର୍ଯ୍ୟ ହେଲା ଛାୟା ।

କିଛି ସମୟ ନିରବ ତା ପରେ ସେ କହିବା ଆରମ୍ଭ କରୁଛନ୍ତି, କିଛି ଭାବିବେ ନାହିଁ, ଓଡ଼ିଶାର ଝିଅ ବୋଲି କହୁଛି, ଡକ୍ଟର ସାକ୍‌ସେନା ଜଣେ ଓଲଡ଼ ଟ୍ୟାଲେଟେଣ୍ଟ ପ୍ରଫେସର ସତ କିନ୍ତୁ ଭୀଷଣ ଭାବେ ସେକ୍ସି । ତାଙ୍କ ପାଖରେ କୌଣସି ବୟସର ତାରତମ୍ୟ ନାହିଁ । ଅନେକ ଝିଅ ଜୀବନକୁ ସେ ନଷ୍ଟ କରିଛନ୍ତି । ପ୍ରଭାବଶାଳୀ ବ୍ୟକ୍ତିତ୍ୱ ଯୋଗୁଁ ସେ ସବୁଠି ସହଜରେ ମୁକୁଳି ଯାଉଛନ୍ତି । ମୋ ରହଣି ଭିତରେ ଦୁଇଦୁଇଟା କେସ୍ ହେଇଯାଇଛି । ଜଣେ ଝିଅ ତ ସେଇ ରାତିରେ ସୁଇସାଇଡ଼ କରିଦେଲା । ଆଉ ଜଣେ

କେଶ୍ କଲା ଯେ କିଛି ପ୍ରମାଣ ମିଳିଲାନି ବରଂତ ଝିଅଟି ତାଙ୍କୁ ବଦ୍‌ନାମ କରିବାକୁ ଚେଷ୍ଟା କରୁଥିଲା ବୋଲି ଓଲଟି ପଡ଼ିଲା । ସେ ଝିଅଟି ବାଧ ହେଇ ୟୁନିଭରସିଟି ଛାଡ଼ିଦେଲା । ଜାଣିଜାଣି କୁଆଡ଼େ ସେ ଝିଅମାନଙ୍କୁ ସନ୍ଧ୍ୟା ପର୍ଯ୍ୟନ୍ତ ଅଟକାଇ ରଖନ୍ତି ଆଉ ତାପରେ... ନାତୁଣୀ ବୟସର ବି... ଲୁଗା ବଦଳାଇଲା ଭଳି...

ଆଃ... ବନ୍ଦ କରନ୍ତୁ, ପ୍ଲିଜ୍ ବନ୍ଦ୍ କରନ୍ତୁ... ଚିତ୍କାର କରି ଉଠୁଛି ଛାୟା । ତାର ଚିତ୍କାରରେ ଡକ୍ଟର ସତକୁ ସତ ଚୁପ୍ ହେଇ ଯାଇଛନ୍ତି । ଛାୟା ଅସମ୍ଭବ ଶୀତରେ ଥରି ଉଠୁଛି । ଝରକା ବନ୍ଦ କରି ଚାଦର ଟାଣି ଆଖି ବନ୍ଦ କରି ନେଉଛି । ଅନୁତପ୍ତ ଚେହେରାକୁ ମ୍ୟାଗାଜିନ ଭିତରେ ଲୁଚାଇ ଦେଉଛନ୍ତି ଡକ୍ଟର ତୀର୍ଥଙ୍କର ।

ଡକ୍ଟର ସାକ୍‌ସେନା... ଏମ୍.ଏସ୍.ସି. ପଢ଼ିଲା ବେଳେ ତାଙ୍କ ନାଁ ଶୁଣିଥିଲି । ତାଙ୍କ ବହି ସେ ପଢୁଥିଲା । ଆହ୍ଲାବାଦରେ ତାଙ୍କ ଭଳି ଜଣେ ପ୍ରତିଭାଶାଳୀଙ୍କ ଅଣ୍ଡରରେ ରିସର୍ଚ୍ଚ କରିବାର ତାର ସ୍ୱପ୍ନ ଥିଲା । ସେ ସ୍ୱପ୍ନବି ସତ ହେଲା । ତାଙ୍କ ପାଖରେ ରିସର୍ଚ୍ଚ ଆସିଷ୍ଟାଣ୍ଟ ଭାବରେ ଯୋଗ ଦେଲାଦିନ ତାଙ୍କର ଶୁଭ୍ରାବଳ, ଉଜ୍ଜଳ ଦୀପ୍ତ ଆଖି ଓ ଗୋରା ତକ୍‌ତକ୍ ଚେହେରା ଦେଖି ତାର ମୁଣ୍ଡ ଆପେ ଆପେ ନଇଁ ଯାଇଥିଲା । ଗଦ୍‌ଗଦ୍ ହେଇ ଛାୟା ପ୍ରଣାମ କରିଥିଲା । ତାଙ୍କ ଉଦ୍ୟମରୁ ହଷ୍ଟେଲ ମିଳିଗଲା ଓ ସେ ନିଜ ରିସର୍ଚ୍ଚ କାମରେ ଲାଗି ପଡ଼ିଲା ।

ଦୁଇମାସ ଭିତରେ କେତେ କଥା ସେ ଶିଖାଇଛନ୍ତି । ବାପାଙ୍କ ଭଳି କେତେ କେତେ ଉପଦେଶ ଦେଇଛନ୍ତି, ଫୋନ୍ କରି ଭଲମନ୍ଦ ବୁଝିଛନ୍ତି । ଦଶଟାରୁ ପାଞ୍ଚଟା କାମ କଲା ଭିତରେ କେଇଥର କଫି ବନାଇବାକୁ ପଡ଼େ ତାକୁ । ବାସ୍ ! କାମ ଆଗେଇଯାଏ ଓ ନିଜକାମ ସାରି ସେ ହଷ୍ଟେଲ ଫେରି ଆସେ ।

ହେଲେ କାଲି.. ଶୀତେଇ ଉଠୁଛି ପୁଣି ଥରେ ଛାୟା । ସବୁଦିନ ଭଳି କାଲି ମଧ ସେ ଡ଼ିପାର୍ଟମେଣ୍ଟ ଯାଇଥିଲା । ଆଉ ଦୁଇଜଣ ରିସର୍ଚ୍ଚ ଆସିଷ୍ଟାଣ୍ଟ ଛୁଟିରେ ଥିଲେ । ସବୁଦିନ ଭଳି ପାଞ୍ଚଟା ନ ବାଜୁଣୁ ସେ ଫେରିବାକୁ ତରବର ହେଉଥିଲା । ଏ ଭିତରେ ପିଅନଟି ବି ଯେ କେତେବେଳେ ଚାଲି ଯାଇଥିଲା ଜାଣି ପାରି ନଥିଲା ସେ । ଫାଇଲପତ୍ର ଧରି ଉଠିଲାବେଳେ ସାର କହିଲେ କିଛି ଭାବିବନି ଆଉ କପେ ଯଦି କଫି କରିଦିଅନ୍ତ... ଆଜି ଅନେକ କାମ । ତମେ ଗଲାପରେ ସେସବୁ ସାରିବାକୁ ହେବ ।

ସେ ମନା କରିଥାନ୍ତା କିପରି ? ଅଗତ୍ୟା ଫାଇଲପତ୍ର ରଖି ଲାବୋରେଟରୀ ଭିତରେ ରହିଥିବା ଛୋଟ କିଚେନରେ ପଶିଗଲା ସେ । ପାଣି ବସାଇଲା ବେଳେ ବାହାରେ ଦ୍ୱାର ବନ୍ଦ୍ ହେବାର ଶବ୍ଦ ଶୁଣି ଚମକି ବାହାରି ଆସିଲା ବେଳକୁ ସାରଙ୍କ ସହିତ ତାର ଧକ୍କା ହେଲା । କିନ୍ତୁ... କିଛି ବୁଝିବା ଆଗରୁ ସେ ତାକୁ ଲାବୋରେଟରୀ ଭିତରେ ଥିବା

ଷ୍ଟୋର୍ ରୁମକୁ ଟାଣି ନେଉଥିଲେ । ଚିତ୍କାର କଲାବେଳକୁ ତା ମୁହଁ ସେ ବନ୍ଦ କରି ଦେଇଥିଲେ । ଭୟ ଆତଙ୍କରେ ଛାୟା ଜଡ଼ ପାଲଟି ଯାଇଥିଲା । ଏତେ ବୟସ୍କ ବ୍ୟକ୍ତି ଯେ ଭଲକି ଠିଆ ହେଇ ପାରନ୍ତି ନାହିଁ, ଅସୁର ଭଳି ବଳ ଥିଲା ତାଙ୍କ ପାଖରେ । ନିଜକୁ ମୁକୁଳାଇବାକୁ ଚେଷ୍ଟାକରି ମଧ ସେ ପାରି ନଥିଲା । କେତେ ରାତିରେ କିଭଳି ଅବସ୍ଥାରେ ସେ ହଷ୍ଟେଲରେ ପହଁଞ୍ଚିଥିଲା ବା ତାକୁ ପହଞ୍ଚାଇ ଦିଆ ଯାଇଥିଲା କିଛି ତାର ମନେ ନାହିଁ । କିନ୍ତୁ ଉପରୁ ଫୋନ୍ ଆସିଥିଲା ସୁପରିଟେଣ୍ଡେଣ୍ଟଙ୍କ ପାଖକୁ ଯେ ଚବିଶ ଘଣ୍ଟା ଭିତରେ ରୁମ୍ ଖାଲି କରିବାକୁ । ତାର ଅପରାଧ କଣ ସେ ଜାଣି ନଥିଲା । ସେହି ରାତିରେ ଫ୍ୟାନ୍‌ରେ ଝୁଲି ଆତ୍ମହତ୍ୟା କରିବାକୁ ସେ ଚେଷ୍ଟା କରିଥିଲା । କିନ୍ତୁ ଏଇ ଅଜଣା ସହରରେ ତାର ମୃତ ଦେହର ବୀଭତ୍ସ ଅବସ୍ଥା, ବଦ୍‌ନାମ ଓ ବାପାମାଙ୍କ କଥା ଭାବି ସେଥିରୁ ନିବୃତ୍ତ ହେଇଥିଲା ଆଉ ତାପରେ ନୀଳାଚଳ ଏକ୍ସପ୍ରେସରେ ଚଢ଼ିଥିଲା ।

କଫି ପିଇବେ ମ୍ୟାଡ଼ାମ ? ଡକ୍ଟର ଜଣକ ପଚାରୁଥିଲା ବେଳେ ଛାୟା ଚାଦର ତଳେ ତରଳି ଯାଉଥିଲା । ନିଜକୁ ସମ୍ଭାଳି ପାରୁନଥିଲା ସେ । ସେହି ରାତିରେ-ମନର ବେଦନାକୁ କେମିତି ଯେ ସେହି ଡକ୍ଟରଙ୍କ ଆଗରେ କହିଦେଇ ପାରିଥିଲା ଆଶ୍ଚର୍ଯ୍ୟ ହେଇଥିଲା ଛାୟା । ସ୍ତବ୍ଧ, ନିଶ୍ଚଳ ହେଇ ତୀର୍ଥଙ୍କର ଶୁଣୁଥିଲେ । କହୁଥିଲେ, ଆହା ମୁଁ ଆପଣଙ୍କୁ ରକ୍ଷା କରି ପାରିଲି ନାହିଁ । ଜାଣିଥାନ୍ତି ଯଦି ଓଡ଼ିଆ ଝିଅଟିଏ ଏଠି ଜୟେନ୍ କରିଛି ବୋଲି... । କୋର୍ଟ କଚେରି କରି କିଛି ଲାଭ ନାହିଁ । ଆପଣ ପ୍ରମାଣ କରି ପାରିବେ ନାହିଁ ।

ସେ ତାକୁ ସାନ୍ତ୍ୱନା ଦେଉଛନ୍ତି । ତାର ଠିକଣା ଟିପି ରଖୁଛନ୍ତି, ଭାଙ୍ଗି ନ ପଡ଼ିବାକୁ ଆଶ୍ୱାସନା ଦେଉଛନ୍ତି, ଏ ଘଟଣା କାହା ଆଗରେ ପ୍ରକାଶ ନ କରିବାକୁ କହୁଛନ୍ତି । କଟକ ଷ୍ଟେସନରେ ଡକ୍ଟର ଜଣକ ଓହ୍ଲେଇ ଯାଉଛନ୍ତି । ତାଙ୍କ ଠିକଣା ବୁଝିଲା ବେଳକୁ ସେ ଚାଲିଯାଇଛନ୍ତି । କିନ୍ତୁ ତା ପରଦିନ ତାକୁ ନିଜ ଡ୍ରଇଁ ରୁମ୍‌ରେ ଦେଖି ଚମକି ଉଠୁଛି ସେ । ତାକୁ ଡକ୍ଟର ଜଣକ ବିବାହ ପ୍ରସ୍ତାବ ଦେଉଛନ୍ତି । ଏହା କିପରି ସମ୍ଭବ ? ପ୍ରତିବାଦ କରି ଉଠୁଛି ଛାୟା । କିନ୍ତୁ ସମସ୍ତ ଯୁକ୍ତି ତାର ହାରମାନିଯାଇଛି । ତା ପରେ ହୁଳହୁଳି, ଶଙ୍ଖ, ବାଜା ଭିତରେ ସେ ବାହା ହେଇ ଯାଇଛି ।

ପୁଣି ତାଙ୍କ ସହ ସେହି ଇଣ୍ଟିମେଟ୍ ମୁହୂର୍ତ୍ତ... । ଅନ୍ଧାରରେ ବିଛଣାରେ ସବୁ ପୁରୁଷର ଏକ ପ୍ରକାରର । ସେ ସେହି ମୁହୂର୍ତ୍ତକୁ ଗ୍ରହଣ କରିନେଇ ପାରୁନି । ଚିତ୍କାର କରି ଉଠୁଛି ମୋତେ ଛାଡ଼ିଦିଅ, ପ୍ଲିଜ୍ ମୋତେ ଛାଡ଼ିଦିଅ । ତୀର୍ଥଙ୍କର ଝାଳେଇ ଯାଉଛନ୍ତି । ବୁଝାଉଛନ୍ତି, ମୁଁ ତମ ସ୍ୱାମୀ, ଏଇଟା ସ୍ୱାଭାବିକ ଛାୟା । ତମକୁ... । ସେ ଚମକି ତୀର୍ଥଙ୍କରକୁ ଚାହୁଁଛି । ତୀର୍ଥଙ୍କର ତାକୁ ପୁଣି ଟାଣି ନେଇଯାଉଛନ୍ତି ସେହି ଲାବୋରେଟରୀ ଭିତରେ ଥିବା ଷ୍ଟୋର୍ ରୁମ୍ ଭିତରକୁ ଆଉ... । ଛାୟା ଝାଳେଇ ଚିତ୍କାର କରି ବେହୋସ ହେଇ ଯାଉଛି । ଘର

ଲୋକ ଗଦେଇ ପଡୁଛନ୍ତି । ଲଜ୍ୟାରେ ମୁହଁ ପୋତି ଦେଉଛନ୍ତି ତୀର୍ଥଙ୍କର । ଦିନରେ ପୁଣି ସେ ସ୍ୱାଭାବିକ ହୋଇ ଉଠୁଛି । ଆପଣାର ଅତି ପାଖର ମଣିଷଟି ପାଇଁ ଭଲ ପାଇବା ତାର ଲହଡ଼ି ପାଲଟି ଯାଉଛି । ରାତିରେ ପୁଣି ସେହି ଘଟଣାର ପୁନରାବୃତ୍ତି ବେଳକୁ ସେ ପୁଣି ଆତଙ୍କିତ ହୋଇ ଉଠୁଛି ।

ତୀର୍ଥଙ୍କର ବାରମ୍ବାର ବୁଝାଇ ଭୁଲିବାକୁ ପରାମର୍ଶ ଦେଉଛନ୍ତି । ସେ କିନ୍ତୁ ପାରୁନାହିଁ । ପ୍ରଫେସର ଡକ୍ଟର ସାକ୍‌ସେନାଙ୍କୁ ସେ ଯେଉଁ ଅବସ୍ଥାରେ ଦେଖିଥିଲା ସେ ଅବସ୍ଥାରେ ତୀର୍ଥଙ୍କରଙ୍କୁ ସହି ପାରୁନାହିଁ । ଆଉ କେମିତି ଭୁଲିବ ? କେବେ ସମ୍ଭବ ? ସେମାନେ ସାଇକ୍ରିଆଟିଷ୍ଟ ପାଖକୁ ଯାଉଛନ୍ତି । ସେ ଦୁହିଁଙ୍କ ଠାରୁ ଅଲଗା ଅଲଗା ସାକ୍ଷାତ୍‌କାର ନେଉଛନ୍ତି । ସେକ୍ସ ଥେରାପିଷ୍ଟଜଣକ ତୀର୍ଥଙ୍କରଙ୍କ ଠାରୁ ସବୁ ଘଟଣା ଶୁଣି ତାକୁ ଡକାଉଛନ୍ତି । ତାର ସମସ୍ୟା କଣ ପଚାରୁଛନ୍ତି । ବୁଝାଉଛନ୍ତି ସ୍ୱାମୀସ୍ତ୍ରୀଙ୍କ ଭିତରେ ସେକ୍ସ ଗୋଟାଏ ବେସିକ ନିଡ୍ । ଇଟ୍ ଇଜ୍ ଡିଫରେଣ୍ଟ ଫ୍ରମ୍ ରେପ୍ । ପ୍ଲିଜ୍ କୋଅପରେଟ୍ ଉଇଥ୍ ୟୋର ହ୍ୟାଜ୍‌ବେଣ୍ଡ । ତୀର୍ଥଙ୍କରଙ୍କୁ କହୁଛନ୍ତି ଡୋଣ୍ଟ୍ ୱରି ମାଇଁ ୟଙ୍ଗ ବୟ, ଇଟ୍ ଉଇଲ ଟେକ୍ ଟାଇମ୍ । ତାଙ୍କ ଇଙ୍ଗିତରେ ତୀର୍ଥଙ୍କର ତାକୁ ଛାଡ଼ି ଉଠି ଯାଉଛନ୍ତି । ଏଥର ଛାୟାକୁ ତାର ବେସିକ୍ ସମସ୍ୟା ସେ ପଚାରୁଛନ୍ତି । ଛାୟା କହୁଛି ମୁଁ ତୀର୍ଥଙ୍କରଙ୍କୁ ଇଣ୍ଟିମେଣ୍ଟ ସମୟରେ ଭୀଷଣ ଭୟ କରୁଛି । ମୋର ମନେ ହେଉଛି କେହି ଯେମିତି ମୋତେ ଏକ ଅନ୍ଧାରି ଷ୍ଟୋର ରୁମ୍ ଭିତରକୁ ଘୋସାରି ନେଉଛି । ମୁଁ ଆତଙ୍କିତ ହୋଇ ଉଠୁଛି । ପୁଣି ମୋ ସ୍ୱାମୀର ଅତ୍ୟଧିକ ଭଲ ପାଇବା ମୋତେ ସନ୍ଦେହରେ ପକାଇ ଦେଉଛି । ମୋର ଧାରଣା ହେଉଛି ସେ ଯେମିତି ମୋତେ ଦୟା କରୁଛନ୍ତି । ମୋ ସହିତ ଏକାମ୍ ହେଲାବେଳେ ହୁଏତ କିଛି ହେଇନଥିବାର ଛଳନା କରୁଛନ୍ତି । ପଚାରିବାକୁ ମୋର ଇଚ୍ଛା ହେଉଛି ତମର ସତରେ କଣ କୌଣସି ମାନସିକ ଆନ୍ଦୋଳନ ହେଉନାହିଁ ? ସତରେ ପ୍ରଫେସର ସାକ୍‌ସେନାଙ୍କ କଥା ମନେ ପଡୁନି ? ମୁଁ ତାଙ୍କୁ ଏକଥା ପଚାରିପାରୁନି କି ତାଙ୍କର ଭଲପାଇବାକୁ ସହି ପାରୁନାହିଁ । ଏମିତି କଣ ମହାପୁରୁଷ ଅଛନ୍ତି ଯେଉଁମାନେ ନିଜ ସ୍ତ୍ରୀ ଉପରେ ହୋଇଥିବା ଏଭଳି ଘଟଣାକୁ ମାନିନେଇ ପାରନ୍ତି, ଭୁଲି ଯାଇ ପାରନ୍ତି ? ଏହା କେମିତି ସମ୍ଭବ ଡକ୍ଟର ? ସନ୍ଦେହକୁ ନେଇ ବଞ୍ଚିହୁଏ କିନ୍ତୁ ଦୟା, ସହାନୁଭୂତି ଯେ ମୋ ଲାଗି ଅସହ୍ୟ । ଅନୁକମ୍ପା ନେଇ ଜୀଇଁ ରହିବା ମୋ ପକ୍ଷରେ ସମ୍ଭବ ନୁହେଁ । ସେ କାନ୍ଦିବାକୁ ଆରମ୍ଭ କରୁଛି । ଥେରାପିଷ୍ଟ ଜଣକ ଏଥର ବିଭିନ୍ନ ଚିତ୍ର, ବିଭିନ୍ନ ପରାମର୍ଶ ଦେଇ ତାକୁ ଷ୍ଟଡ଼ି କରୁଛନ୍ତି ଓ ବୁଝାଉଛନ୍ତି ତମେ ସ୍ୱାମୀର ଭଲ ପାଇବାଟାକୁ ଦୟା ବୋଲି ମନେ କରନା ଛାୟାଦେବୀ । ମୁଁ ଭାବୁଛି ଧୀରେଧୀରେ ସବୁ ଆଡ୍‌ଜଷ୍ଟ ହେଇଯିବ ।

ଫେରି ଆସିଲାବେଳେ ଛାୟା କହୁଛି, ଏ ମୋର କଣ ହେଇଗଲା ତୀର୍ଥଙ୍କର ? ମୁଁ କିଆଁ ତମକୁ ମାନିନେଇ ପାରୁନାହିଁ ? ବିଶ୍ୱାସକର ମୁଁ ତମକୁ ଖୁବ୍ ଭଲପାଏ । ତମେ

ମୋତେ ଚୂଆଳକୁ ଦେଇଛ । ହେଲେ ମୁଁ ସ୍ତ୍ରୀ ହିସାବରେ ତମକୁ ଦେଇଛି କଣ ? ତମେ ମୋତେ ଡିଭୋର୍ସ କର । ଅନ୍ୟତ୍ର ବାହା ହେଇଯାଅ, ଭୁଲିଯାଅ ।

ତୀର୍ଥଙ୍କର ତା ପିଲାଳିଆମି ଦେଖି ହସୁଛନ୍ତି । ମୁଁ ସବୁ ଜାଣି ତମକୁ ବାହାହେଇଛି, ଡିଭୋର୍ସ କରିବା ଲାଗି ନୁହେଁ । ତାହାଲେ ତ ଯେଉଁ ସ୍ତ୍ରୀମାନଙ୍କ ଜୀବନରେ ଏଭଳି ଘଟଣା ଘଟିଯିବ ପୃଥିବୀର ସମସ୍ତ ସ୍ୱାମୀମାନେ ସେମାନଙ୍କୁ ଡିଭୋର୍ସ କରିଦେବେ । ମୁଁ ତମ ସ୍ଥାନରେ ଥିଲେ ତମେ କଣ ଏଇୟା କରିଥାନ୍ତ ?

ଛାୟା ଉତ୍ତର ଦେଇ ପାରୁନାହିଁ । ବ୍ୟଥିତ ସ୍ୱରରେ କିଛି ସମୟପରେ ପଚାରୁଛି, ଏମିତି କେତେ ଦିନ ଚାଲିବ ?

ଜାଣେନା

ତମେ ଅପେକ୍ଷା କରି ପାରିବ ?

ପାରିବି

ଆଉ ଯଦି ଆମେ ବୁଢ଼ାବୁଢ଼ୀ ହେଇଯାଉ

ତଥାପି ବି ଅପେକ୍ଷା କରିବି

ଗଡ଼ିଯାଏ ଦିନ, ମାସ, ବର୍ଷ ।

ପଡ଼ୋଶୀନୀ ପଚାରନ୍ତି, ବାହାଘର କେତେ ବର୍ଷ ହେଲା ? ତମର ପିଲାପିଲି ନାହିଁ ? କୌଣସି ଡାକ୍ତରଙ୍କ ପରାମର୍ଶ ନେଉନା ? ଛାୟା ଉତ୍ତର ଦେଇପାରେ ନାହିଁ । ଚାକରାଣୀ ତା ପିଲାକୁ କ୍ଷୀର ଖୋଇଲାବେଳେ ତା ନାରୀତ୍ୱ ହାହାକାର କରି ଉଠେ । ପୁରୁଷ ଘରଚଟିଆଟି ମାଈ ଘରଚଟିଆର ଥଣ୍ଟ ଭିତରେ ଥଣ୍ଟ ରଖି କିଚିରି ମିଚିରି ଶବ୍ଦ କଲାବେଳେ ସେ ଶିହରି ଉଠେ । ରାତିରେ ଅଲଗା ରୁମ୍‌ରେ ଶୋଉଥିବା ତୀର୍ଥଙ୍କରକୁ ଦେଖି ମନ ଓଦା ହୋଇଯାଏ । ମନେ ହୁଏ ଜୀବନ ଯେମିତି ଗୋଟିଏ ଜାଗାରେ ସ୍ଥିର ହୋଇଯାଇଛି ଓ ସମୟ ଜୀବନକୁ ପଛକରି ଆଗେଇ ଚାଲିଛି । ତାରି ଭିତରେ ରାତିପରେ ସକାଳ ଓ ସକାଳ ପରେ ରାତି ଆସେ । ଝରକା ସେପଟେ ଚଞ୍ଚୁରେ କୁଟାଖିଅ ଧରି ଘରଚଟିଆ ଘର ବନାଇବାର ଜାଗା ଖୋଜେ । ଫୁଲ ଉପରେ କାକର ପଡ଼େ, ତା ଉପରେ ଭଅଁର ବସେ । ଦୂର କାରଖାନାର ଚିମ୍‌ନୀରୁ ସବୁଦିନିଆ ବାଦାମି ଧୂଆଁ ଉଠି ଆକାଶକୁ ଛୁଏଁ, ମନ୍ଦିରରୁ ଘଣ୍ଟା ଶୁଭେ, ଗାଈର ହମ୍ବାରଡ଼ି ଓ କଅଁଳା ପିଲାର କାନ୍ଦଣାରେ ସକାଳ ତାଜା ହୁଏ । କଳରୁ ଝରି ପଡ଼େ ଝରଝର ହେଇ ପାଣି । ଛାୟା ଭାବ ପ୍ରବଣା ହୋଇଉଠେ । ଅନାଏ ତୀର୍ଥଙ୍କରକୁ । ତୀର୍ଥଙ୍କର କିନ୍ତୁ ବହି, ପତ୍ରିକା, ଗଜଲ ନିଜ ଭିତରେ ମସ୍‌ଗୁଲ ହେଇଥାନ୍ତି ।

ସବୁଦିନ ଭଳି ଦିନେ କିନ୍ତୁ ଫେରୁ ନାହାନ୍ତି ତୀର୍ଥଙ୍କର ଅଫିସରୁ । କେବେତ ବିଳମ୍ବ କରି ନାହାନ୍ତି କିମ୍ବା ନ କହି ରହି ଯାଇ ନାହାନ୍ତି । ଅପେକ୍ଷା କରୁଛି ଛାୟା । ପ୍ରଥମଥର ପାଇଁ ତୀର୍ଥଙ୍କରଙ୍କ ଅବର୍ତ୍ତମାନରେ ସହସ୍ର ବ୍ୟାକୁଳତାରେ ମନ ତାର ଭର୍ତ୍ତି ହେଇ ଯାଉଛି । ଘଣ୍ଟା କଣ୍ଟା ଆଗେଇ ଚାଲିଛି । ପରିଚିତ ପାଦଶବ୍ଦ ଶୁଭୁ ନାହିଁ । ଏପାଖ ସେପାଖ ହେଉଛି ସେ । କେଉଁଠି ବି ମନ ଲାଗୁନାହିଁ । ତୀର୍ଥଙ୍କର ବିନା ଘର ଏତେ ଏକୁଟିଆ ଲାଗେ ! ତୀର୍ଥଙ୍କର ବିନା ଯେ ବଞ୍ଚିହୁଏନା ଏଇ ପ୍ରଥମ ଥର ତାର ହୃଦୟଙ୍ଗମ ହେଉଛି । ସେତିକିବେଳେ ତାର ମନେ ହେଉଛି ତା ଅବର୍ତ୍ତମାନରେ ବଞ୍ଚିବା ପାଇଁ ଅବଲମ୍ବନ ଲୋଡ଼ା, ସାହାରା ଲୋଡ଼ା । ଆହା ସତରେ ଯଦି ପିଲାଟିଏ ଥାଆନ୍ତା ତାଙ୍କର ! ଛାୟାର ମନେ ହେଉଛି ବର୍ଷ ବର୍ଷ ଧରି ଗୋଟିଏ ଖିଆଲରେ ସେ ତୀର୍ଥଙ୍କରଙ୍କୁ ଅବହେଳା କରି ଆସିଛି । ନିଜକୁ ହିଁ ଗୁରୁତ୍ୱ ଦେଇଛି । କେବେବି ଚିନ୍ତା କରିନି ତା ହାତ ଧରିବା ମଣିଷଟି କେମିତି ବଞ୍ଚିଛି ବୋଲି ।

ଘଣ୍ଟା କଣ୍ଟା ଆଗେଇ ଚାଲିଛି ।

ଫେରୁ ନାହାନ୍ତି ତୀର୍ଥଙ୍କର ।

ସେ କଣ ଆଉ କାହା ପାଖରେ ଆଜି ରାତି... ଆଃ, ଏକଥା ଭାବୁଛି କଅଣ । ଛିଃ । ତୀର୍ଥଙ୍କରଙ୍କୁ ସେ ସନ୍ଦେହ କରୁଛି ।

ନା କିଛି ଦୁର୍ଘଟଣା ଘଟିଛି ? ହୁଏତ ଆଉ କିଛି ସମୟ ପରେ କଲିଂ ବେଲ ଟିପାହେବ ଓ ତାଙ୍କର ରକ୍ତାକ୍ତ ଶରୀରକୁ ଧରି କେତେଜଣ... ଆଃ ଅଜାଣତରେ ଚିତ୍କାର କରି ଉଠୁଛି ଛାୟା । ଅପେକ୍ଷା ସହି ହେଉନି । କାନ୍ଥ ଘଣ୍ଟା ଆଡ଼କୁ ଆଖି ଚାଲିଯାଉଛି ।

ସତରେ ଏ ଦୁଇଟା ଭିତରେ ଯଦି ଗୋଟାଏ ଘଟଣା ସତ ହେଇଯାଏ । ତାହାଲେ ?

ଛାୟା ଧାଇଁ ଯାଉଛି ତୀର୍ଥଙ୍କରଙ୍କ ଶୋଇବାଘରର ଟେବୁଲ ଉପରେ ଥୁଆ ହେଇଥିବା ତାଙ୍କର ଫଟୋ ପାଖକୁ । ହଠାତ୍ ଆଖିରେ ପଡୁଛି ଚାବିଦିଆ ଯାଇ ନଥିବା ଅଧା ଖୋଲା ଡ୍ରୟର ଉପରେ । ଡ଼ାଏରୀ । ଭୁଲରେ ଚାବି ନ ଦେଇ ଚାଲି ଯାଇଛନ୍ତି ଆଉ ଡ଼ାଏରୀଟି ରହିଯାଇଛି । ପଢ଼ିବାର ଲୋଭ ସମ୍ଭରଣ କରିପାରୁନାହିଁ ସିଏ । କୌତୂହଳ ଚାପି ନ ପାରି ପୃଷ୍ଠା ପରେ ପୃଷ୍ଠା ସେ ଓଲଟାଇ ଚାଲିଛି ।

ଗୋଟିଏ ପୃଷ୍ଠା ଉପରେ ଆଖି ସ୍ଥିର ହେଇ ଯାଇଛି, 'କେମିତି ବୁଝାଇବି ତମକୁ ମୋର ଭଲ ପାଇବାର କଥା ? କେମିତି ? ମୁଁ ଯେ ତମ ପାଇଁ ନିତି ଜଳି ଯାଉଛି ଛାୟା । ଆମେତ ବନ୍ଧୁ ବାନ୍ଧବୀ ହେବାକୁ ଚାହିଁ ନଥିଲେ । ସ୍ୱାମୀସ୍ତ୍ରୀର ସଂପର୍କକୁ ତମେ ଯଦି ଅସ୍ୱୀକାର କର ତେବେ ବାହା ହେବାର ଆବଶ୍ୟକତା କଣ ଥିଲା ଛାୟା ? ଭଲ ବନ୍ଧୁଟେ

ମୁଁ କଣ ତମର ହେଇ ପାରିନଥାନ୍ତି ? ତାହାଲେତ ପତିପତ୍ନୀର ଏଇ ଲୁଚକାଳିଖେଳ ଖେଳିବାକୁ ଆପାତତଃ ପଡ଼ି ନଥାନ୍ତା ।'

ପୃଷ୍ଠା ଓଲଟାଇଛି..., 'ଛାୟା ! ଆମ ବାହାଘର କେତେବର୍ଷ ହେଲା ? ତମେ ଆଜିଯାଏଁ କଣ କାହାରି ପରିପୂର୍ଣ୍ଣ ମାତୃତ୍ୱକୁ ଦେଖିନା ? ଆମର ପିଲାପିଲି ହେଇଥିଲେ ଆଜି କେତେ ବଡ଼ ହେଇଥାନ୍ତେ ? କଣ ନାମ ରଖିଥାନ୍ତେ ? ତମେ କଣ ସ୍ୱପ୍ନ ଦେଖା ଛାଡ଼ି ଦେଇଛ ? ସ୍ୱପ୍ନବିନା ବଞ୍ଚିହୁଏ ସତରେ ? ... ମୋ ବନ୍ଧୁ ସରୋଜ କହୁଥିଲା କଣ ଜାଣ, ତମେ କୁଆଡ଼େ ଗୋଟିଏ ବରଫ ମୁଣ୍ଡା । ତମକୁ ମୁଁ ତରଳାଇ ପାରୁ ନଥିବାରୁ ମୁଁ ବି କୁଆଡ଼େ ଏକ କାପୁରୁଷ । ଜୋରଜବରଦସ୍ତ କରିରେପ୍ କରାଯାଇପାରେ, କାହାଠୁ ଭଲ ପାଇବା ଆଦାୟ କରି ହୁଏନି ଏକଥା କେମିତି ବୁଝାଇଥାନ୍ତି ତାକୁ ? ତମେ ଆଜିବି କଣ ମୋ ଭଲ ପାଇବାଟାକୁ ସହାନୁଭୂତି ବୋଲି ଭାବ ? ମୋର କେମିତି ରାତି କଟେ ଜାଣିବାକୁ କେବେ ତମର ଇଚ୍ଛା ହୁଏନା ?'

ଆଉ ଗୋଟାଏ ପୃଷ୍ଠା... 'ଛାୟା । ତମେ ବୁଢ଼ାକାଳକୁ ବିଶ୍ୱାସ କର ? ଅନେକଥର ଇଚ୍ଛା ହେଇଛି ତମକୁ ଛାଡ଼ି କୁଆଡ଼େ ନା କୁଆଡ଼େ ପଳାଇବାକୁ । ପୁଣି ଭାବିଛି ମୋ ବିନା ଫେର୍ ତମେ କଣ କରିବ । ପୁଣି କେଉଁ ସାକ୍ସେନା ହାତରେ ଯଦି ପଡ଼... କେମିତି ତାହା ମୁଁ ସହିବି, ମୁଁ ଯେ ତମକୁ ଭଲ ପାଏ ଛାୟା...'

ଅପ୍‌ଥପ୍ ଲୁହ ଡ଼ାଏରୀ ପୃଷ୍ଠାରେ ପଡ଼ିଚାଲିଛି । ବାହାରୁ ବାଜିଚାଲିଛି କଲିଂ ବେଲ । କିଏ ବଜାଉଛି ? ତୀର୍ଥଙ୍କର ନା ତାଙ୍କର ବନ୍ଧୁ ? ସେମାନେ ଯଦି ତୀର୍ଥଙ୍କରଙ୍କର ରକ୍ତାକ୍ତ ଶରୀର ଧରି ଘଣ୍ଟିବଜାଉ ଥାନ୍ତି ? ହେ ଭଗବାନ ! ଡରି ଡରି କବାଟ ଖୋଲୁଛି ଛାୟା । ସାମ୍ନାରେ ଠିଆ ହେଇଛନ୍ତି ସେ । ପାଗଳୀ ଭଳି ତାଙ୍କୁ ସେ ଜଡ଼ାଇ ଧରି କହୁଛି, ନା ତମେ ମୋତେ ଛାଡ଼ି ଯାଅନା ତୀର୍ଥ ତମବିନା ମୁଁ ବଞ୍ଚିପାରିବିନି । ତମକୁ ବାଦ୍‌ଦେଇ ବଞ୍ଚିହୁଏନା । କଥା ଦିଅ, ମୋତେ ଛାଡ଼ି ଯିବନା ବୋଲି ।

ବୁଝିପାରୁନାହାନ୍ତି ତୀର୍ଥଙ୍କର । ଡରି ଡରି ଛାୟାର ମଥାରେ ହାତ ରଖୁଛନ୍ତି । ପିଠି ଉପରେ ଖେଳାଇ ପଡ଼ିଥିବା ବାଳ ଉପରେ ହାତ ବୁଲେଇ ଆଣୁଛନ୍ତି ଆଶ୍ୱାସନା ଭଙ୍ଗୀରେ । କିନ୍ତୁ କିଛି କହୁନାହାନ୍ତି । ସେ କଣ ଏ ଭିତରେ କହିବାର ସବୁ ଭାଷା ହଜେଇ ସାରିଛନ୍ତି ? ଛାୟା ହଜିଲାଧନ ପାଇଗଲା ଭଳି ଗଭୀର ଆଶ୍ଲେଷରେ ଜଡ଼ାଇ ଧରୁଛି ତାଙ୍କୁ । ତାର ଜୀବନର କୌଣସି ଦୁର୍ଘଟଣା ମନେ ପଡୁନାହିଁ । ମନଭରି ମଧୁର ସ୍ୱପ୍ନ ଦେଖିବାରେ ବିହ୍ୱଳ ହୋଇ ଯାଉ ଯାଉ ସେ ଭାବୁଛି ପୃଥିବୀ ଏ ଭିତରେ ଏଡ଼େ ସୁନ୍ଦର କେବେ ହେଲା ? କେମିତି ହେଲା ?



# ବନ୍ଧୁ ଆସୁଛନ୍ତି

ରଜନୀ ମଉସାଙ୍କ କଥା କହିଲା ବେଳେ ଖୁସୀରେ ଗଦଗଦେଇ ହେଇ ଉଠନ୍ତି ବାପା । କେମିତି ସେମାନେ ସାଙ୍ଗ ଥିଲେ, ଏକା କ୍ଲାସରେ ପଢୁଥିଲେ, ପୁଣି ହଷ୍ଟେଲରେ ଗୋଟିଏ ରୁମ୍‌ରେ ରହୁଥିଲେ ଇତ୍ୟାଦି ଇତ୍ୟାଦି । ଏକାଠି ଦୁହେଁ ଚାରିବର୍ଷ କଟାଇ ଥିଲେ । ବି.ଏ. ପରେ ଯେ ଯାହାର ଭାଗ୍ୟ ପରୀକ୍ଷା କରିଥିଲେ । ବାପା ବି.ଇଡ଼ି. କରି ହାଇସ୍କୁଲର ଶିକ୍ଷକ ହେଇଗଲେ ଆଉ ରଜନୀ ମଉସା ପଲିଟିକ୍ସରେ ପଶିଲେ । ଏମିତିବି କଲେଜର ସେ ପ୍ରେସିଡେଣ୍ଟ ଥିଲେ ଓ ପଢ଼ିଲାବେଳହୁଁ ରାଜନୀତି ପ୍ରତି ତାଙ୍କର ଏକ ପ୍ରକାର ଝୁଙ୍କ ଥିଲା । ଦିନେ ସେ ଯେ ମନ୍ତ୍ରୀ ହେବେ ଏହା ପଢ଼ିଲା ସମୟରୁ ଜଣାପଡ଼ି ଯାଇଥିଲା ।

ସତକୁ ସତ ଏ ଭିତରେ ରଜନୀ ମଉସା ଇଲେକ୍‌ସନରେ ଜିତି ରାଜ୍ୟର ଶିକ୍ଷାମନ୍ତ୍ରୀ ଆସନଟିକୁ ଅଳଂକୃତ କରିଛନ୍ତି । ଯେଉଁ ଦିନ ସମ୍ବାଦପତ୍ରରେ ଏ ଖବରଟି ଛପାଗଲା, ସେଦିନ ବାପା ଖୁସିରେ ଏକ ପ୍ରକାର ନାଚି ଉଠିଥିଲେ । ବୋଉକୁ କହିଥିଲେ, ହେଇଟି ଦେଖିଲଣି ମୋ ସାଙ୍ଗ ରଜନୀ ରାଜ୍ୟର ଶିକ୍ଷାମନ୍ତ୍ରୀ ହେଇଛି । ଆମେ ଦୁହେଁ ବଡ଼ ସାଙ୍ଗ ଥିଲୁ, ଓଡ଼ିଶାର ଶିକ୍ଷାମନ୍ତ୍ରୀ ତମ ସ୍ୱାମୀର ଖୋଦ୍ ବନ୍ଧୁ ।

କଥାଟା କେମିତି ଧୀରେ ଧୀରେ ପ୍ରଚାର ହେଇଗଲା । ଶିକ୍ଷାମନ୍ତ୍ରୀଙ୍କ ସାଙ୍ଗ ବୋଲି ବାପା ଯେମିତି ରାତାରାତି ବିଖ୍ୟାତ ହେଇଗଲେ, ସେମିତି ସ୍କୁଲରେ ବି ତାଙ୍କର ଏକ ପ୍ରଶଂସକ ଗୋଷ୍ଠୀ ତିଆରି ହେଇଗଲା । ଅନେକ ଭାବିଲେ ରଜନୀ ମଉସାଙ୍କ ସହିତ ବାପାଙ୍କର ଚିଠିପତ୍ରର ସଂପର୍କ ରହିଛି । ତେଣୁ ତାଙ୍କ ବିରୁଦ୍ଧରେ କିଛି କହିଲେ ହୁଏତ ବାପା ଲେଖି ଜଣାଇ ଦେବେ । ପୁଣି କିଛି ଭାବିଲେ ସୁଯୋଗ ଆସିଛି । ବାପାଙ୍କୁ ହାତ କରି ପାରିଲେ ସେ ମନ୍ତ୍ରୀଙ୍କୁ କହି ତାଙ୍କ ନାଁ ସୁପାରିଶ କରିଦେବେ ।

ସନ୍ଧ୍ୟାବେଳଟା ଯାପରେ ବାପାଙ୍କର କଲେଜ ଜୀବନର ସ୍ମୃତି ରୋମନ୍ଥନରେ କଟିଯାଉଥିଲା । କିଛି ଶ୍ରୋତାବି ଶୁଣିବା ପାଇଁ ଜୁଟି ଯାଉଥିଲେ । ରଜନୀ ମଉସାଙ୍କ ସହିତ ମାଛଧରା, ସିନେମା ଦେଖା ପ୍ରଭୃତି ବିଷୟରେ ଗପିଲା ବେଳେ ବାପା ସତେକି କଲେଜ ପିଲା ପାଲଟି ଯାଉଥିଲେ । ସ୍ମୃତି ରୋମନ୍ଥନ କରୁକରୁ ବାପା କହୁଥିଲେ ରଜନୀର ପିଲାଳିଆମି ଗୁଣ କହିଲେ ନସରେ । କେବେ କେବେ ରାତିରେ ନିଦ ନହେଲେ ରଜା ରାଣୀ ଗପ ଶୁଣିବା ଲାଗି ସେ ଜିଦ୍ କରି ବସେ । ତାଛଡ଼ା ଶାଗ, ପଖାଳ, ବଡ଼ିଭଜାରେ ତାର ଲୋଭ ଟିକେ ଅଧିକ । ଏଥିପାଇଁ ହୋଟେଲର ଖାନା ନ ପୋଷାଇବାରୁ ସେମାନେ

ହିଟର ଆଣି ନିଜେ ରନ୍ଧାରନ୍ଧି ଆରମ୍ଭ କରି ଦେଇଥିଲେ । ଯଦିଓ କେବେ କେବେ ଭାତ ଜାଉ ହେଇ ଯାଉଥିଲାତ ଡାଲି ଲୁଣିଆ, କେବେ ଶାଗ କଞ୍ଚାତ ତରକାରୀ ହଳଦିଆ । ଥରେ ତେଲ ନଥିଲା ଯେ ରଜନୀ ମଉସା କୁଆଡ଼େ ଘିଅରେ ମାଛ ଭାଜି ପକାଇଥିଲେ । କଥାଟା କହି ବାପା ଦମେ ହସିଥିଲେ । ସ୍ମୃତିତ ସବୁବେଳେ ରମଣୀୟ ପୁଣି ତା ଯଦି ଆହୁରି ମଧୁର ହେଇଥାଏ ତେବେ ରୋମନ୍ଥନରେ କେତେ ଯେ ଆନନ୍ଦ ମିଳେ ବାପାଙ୍କୁ ଦେଖିଲେ ଯେ କେହି ବୁଝିପାରିବ ।

ବାପା ହଳଦିଆ ପଡ଼ିଯାଇଥିବା କଲେଜ ଜୀବନକୁ ଚିହ୍ନାଇ ଦେଲାବେଳେ ଦେଖଣାହାରି ଆଗ୍ରହରେ ଫଟୋ ଉପରେ ଓଳାଡ଼ି ପଡ଼ନ୍ତି । ସେତିକିବେଳେ ବାପାଙ୍କର ଛାତି ଫୁଲିଉଠେ । ଖୋଦ୍ ଶିକ୍ଷାମନ୍ତ୍ରୀଙ୍କ କଲେଜ ସାଙ୍ଗ ସେ । ଫଟୋରେ ଦୁହେଁ ଧରାଧରି ହୋଇ ଠିଆ ହୋଇଛନ୍ତି । ସମସ୍ତେ ବାପାଙ୍କୁ ସାଧୁବାଦ ଜଣାନ୍ତି ଏଭଳି ବନ୍ଧୁଟେ ତାଙ୍କୁ ମିଳିଛି ବୋଲି ।

କ୍ରମେ ଦେଖାଗଲା ଦିନରାତି ଆମଘରେ କେହିନା କେହି ଚିହ୍ନା ଅଚିହ୍ନା ଆଗନ୍ତୁକ ପହଞ୍ଚିବାରେ ଲାଗିଲେ । କିଏ ବାପାଙ୍କୁ ଅନୁରୋଧ କଲାଣି ତା ପୁଅର ଚାକିରି ପାଇଁ ତ କିଏ ପାଶ୍ କରିବା ଲାଗି ଫେର୍ କିଏ ମନ୍ତ୍ରୀଙ୍କୁ ସେମାନଙ୍କର ଅବସ୍ଥା ଜଣାଇ ଦେବା ପାଇଁ । ବାପା ବି ପ୍ରତିଶ୍ରୁତି ଦେବାକୁ ପଛଉ ନ ଥିଲେ । କହୁଥିଲେ, ରଜନୀ ମନ୍ତ୍ରୀ ହେଉ କି ରାଷ୍ଟ୍ରପତି ହେଉ ସେ ମୋ ବନ୍ଧୁଟି । ଆମର କ୍ଷୀରନୀରର ସଂପର୍କ । ସାଙ୍ଗ ହେଇ ସାଙ୍ଗକଥା ରଖିବନି ?

ସ୍କୁଲରେ ବି ବାପାଙ୍କର ଖାତିର୍ ବଢ଼ିଗଲା । ହେଡ଼ମାଷ୍ଟରଙ୍କ ଶ୍ରଦ୍ଧା ବାପାଙ୍କ ପ୍ରତି ବଢ଼ିଯାଇଥିଲା । ବେଳ ଅବେଳରେ ସେ ବାପାଙ୍କର ପରାମର୍ଶ ନେବା ପାଇଁ ତାଙ୍କୁ ଡକାଇ ପଠାଉଥିଲେ । ବାପାଙ୍କ ମାଧ୍ୟମରେ ସ୍କୁଲର କିଛି ଉନ୍ନତି ହେଇପାରିବ ବୋଲି ହେଡ଼ମାଷ୍ଟରଙ୍କର ବି ଦୃଢ଼ ଧାରଣା ଜନ୍ମିଥିଲା । ବାପା ଏସବୁ କଥା ବୋଉ ଆଗରେ ଗପିଲାବେଳେ ମୁଁ ଲକ୍ଷ୍ୟକରେ ବୋଉ ବି ଆନନ୍ଦରେ ପିଇଯାଏ । ଥରେ ସେ କହିଲା, ତମର ଯଦି ରଜନୀ ଏତେ ସାଙ୍ଗ ବୋଲି କହୁଛ, ଥରେ ଡାକନ୍ତନି ଆମ ଘରକୁ । ତମେତ କହୁଥିଲ ସେ ଶାଗ, ପଖାଳ, ବଡ଼ିଭଜା ଖାଇବା ଲାଗି ଭାରି ଭଲ ପାଆନ୍ତି । ମୁଁ ତାଙ୍କ ମନମୁତାବକ ସବୁ ସଜେଇ ଦେବିମ । ମନ୍ତ୍ରୀକୁ ଆମ ଘରେ ଦେଖିଲେ ଗାଁରେ ପାଁଚଣଙ୍କ ଆଗରେ ଆମର ବି ଖାତିର ବଢ଼ିଯିବ । ଅନ୍ୟମାନଙ୍କ କାମବି ହେଇଯିବ । ବାପା ମୁରୁକି ହସା ଦେଇ କହିଲେ, ତମେ ଠିକ କହିଛ । ନ ଡାକିବି କାହିଁକି । ତେବେ ବେଳ ଆସୁ । ମୁଁ ବି ଏ ଗାଁ ବାଲାଙ୍କୁ ଦେଖାଇ ଦେବି । ଦେଖିବ ରଜନୀ କାନ୍ଧରେ ହାତ ପକାଇ କେମିତି ଛାତି ଫୁଲେଇ ଏ ଦାଣ୍ଡରେ ମୁଁ ଚାଲିବି । ବୋଉ ସେ ଦିବ୍ୟ ଦୃଶ୍ୟ କଳ୍ପନା କରି ସତେକି

କୁରୁଳି ଉଠୁଥିଲା । ତା ଆଖିଆଗରେ ହୁଏତ କୃଷ୍ଣ ସୁଦାମା, ରାମ ଲକ୍ଷ୍ମଣ ଯୋଡ଼ି ଆସି ଠିଆ ହେଉଥିଲେ ।

କିଛିଦିନ ପାଇଁ ଶୁଣାଗଲା ଶିକ୍ଷାମନ୍ତ୍ରୀ ରାଜ୍ୟର ବିଭିନ୍ନ ସ୍କୁଲ ଗୁଡ଼ିକ ନିଜେ ପରିଦର୍ଶନ କରୁଛନ୍ତି । ବାପାଙ୍କ ସ୍କୁଲକୁ ଆସିବା ପ୍ରୋଗ୍ରାମ ମଧ୍ୟ ଦିନେ ଆସିଗଲା । ସ୍କୁଲରେ ଚହଳ ଖେଳିଗଲା । ଆରମ୍ଭ ହେଲା ମନ୍ତ୍ରୀଙ୍କୁ ସ୍ୱାଗତ କରିବାର ପ୍ରାରମ୍ଭିକ ପର୍ବ । ବାପାଙ୍କୁତ ହେଡ଼ ମାଷ୍ଟର ପାଖରୁ ଛାଡ଼ୁ ନଥାନ୍ତି । କି ଦିନ କି ରାତି ସଜାସଜି, ପିଲାଙ୍କୁ ଶିକ୍ଷା ଦେବା ପ୍ରଭୃତିରେ ସମସ୍ତେ ଲାଗି ପଡ଼ିଥାନ୍ତି । ଘରେ ମୁଠାଏ ଖାଇବାକୁ କି ଭଲରେ ଟିକେ ଗାଧୋଇବାକୁ ବାପାଙ୍କର ଫୁରସତ ନଥାଏ । ପାଖ ଡାକବଙ୍ଗଳାରେ ମନ୍ତ୍ରୀ ଦ୍ୱିପହରେ ବିଶ୍ରାମ ନେବାର ଠିକ ହେଲା ଯଦିଓ ବାପା ଆପତ୍ତି କରିଥିଲେ ଆମ ଘରେ ବିଶ୍ରାମ ନେବା ପାଇଁ । ତେବେ ଯାହାହେଉ ଖାଇବାଟା ଆମଘରେ । ବୋଉର ବି କାମ ବଢ଼ି ଯାଇଥିଲା । ଘର ଓଳାଓଳି, ସଜାସଜି ସହିତ ଆଚାର, ପାମ୍ପଡ଼, ପଖାଳ, ଶାଗ, ଏମିତି କେତେ କଣ ପ୍ରସ୍ତୁତି । ଏହି ମଉକାରେ ନୂଆ ପର୍ଦ୍ଦାବି ଆମ ଝରକା କବାଟରେ ଲାଗି ଯାଇଥିଲା । ସ୍କୁଲରୁ ଦୁଇ ଚାରୋଟି ଚେୟାରବି ଅଣାଯାଇ ଡ୍ରଇଁ ରୁମ୍‌ରେ ପକା ଯାଇଥିଲା ।

ମନ୍ତ୍ରୀ ଆସିବା ଆଗଦିନ ତ ବାପାଙ୍କ ଆଖିରେ ଉତ୍ସାହ, ଉତ୍ତେଜନାରେ ନିଦ ନଥିଲା । ସକାଳୁ ଯାଇ ବାପା ବଜାରରୁ ତଟକା ରୋହୀମାଛ ଧରି ଆସିଥିଲେ ଓ ମସଲା ଗୋଳାଇ ଲାଲ୍‌ଲାଲ୍ ଭାଜିବାକୁ କହିଥିଲେ । ବୋଉବି ସକାଳୁ ସକାଳୁ କାମରେ ଲାଗି ଯାଇଥିଲା । ଅନେକ ଦିନପରେ ଘରେ ସେ ଭଲ ଶାଢ଼ୀଟେ ବାହାର କରି ପିନ୍ଧିବାର ମୁଁ ଦେଖିଲି । ବାପାବି ସେଦିନ ତାଙ୍କର ବେଶ ପୋଷାକରେ ନୂଆ ନୂଆ ଦିଶୁଥିଲେ । ଚପଲ ରଙ୍ଗମରା ଯାଇ ପାଲିସ୍ ହୋଇଥିଲା । ଧଳା ଇସ୍ତ୍ରୀଦିଆ ପଞ୍ଜାବୀକୁ ଶାନ୍ତିପୁରୀ ଧୋତି । ବୋଉ ଫୁସ୍‌ଫୁସ୍ କହୁଥିଲା, ଏହି ମଉକାରେ ରଜନୀକୁ ତମର ପ୍ରମୋଶନ କଥାଟା କହିବାକୁ ଭୁଲବନିମ । ବାପା ଡବାରୁ ଖିଲିପାନଟେ ଗୁଞ୍ଜି ହସି ହସି କହିଥିଲେ, ଦେଖୁଛି ତମେ ବି ପଲିଟିକ୍‌ସ କରିବାକୁ ଆରମ୍ଭ କରିଦେଇଲଣି ରମା ବୋଉ । ଗଲାବେଳେ କହୁଥିଲେ, ହଁ ବାସନକୁସନ ସବୁ ଚକ୍ ଚକ୍ କରି ରଖିବ ସେ କେବଳ ମୋ ବନ୍ଧୁ ନୁହେଁ, ରାଜ୍ୟର ମନ୍ତ୍ରୀଟି । ନିର୍ଦ୍ଦିଷ୍ଟ ସମୟରେ ମନ୍ତ୍ରୀଙ୍କ ଗାଡ଼ି ଗାଁ ଦାଣ୍ଡକୁ ଧୂଳି ଧୂସରିତ କରି ପହଞ୍ଚିଲା । ତା ସହିତ ଆଗପଛ ହେଇ ପୁଞ୍ଜାଏ ଗାଡ଼ି । ବାପା ଫୁଲ ତୋଡ଼ା ନେଇ ଧାଇଁଗଲେ । ମନ୍ତ୍ରୀ ଫୁଲତୋଡ଼ାଟି ଅନ୍ୟମନସ୍କ ଭାବେ ପି.ଏ.ଙ୍କୁ ବଢ଼ାଇ ଦେଲେ । ବୋଧହୁଏ ସେ ବାପାଙ୍କ ମୁହଁକୁ ଚାହିଁ ନଥିବାରୁ ଚିହ୍ନି ପାରିଲେ ନାହିଁ । ମନ୍ତ୍ରୀ ଓହ୍ଲାଇ ଓହ୍ଲାଇ ସିଧା ତିଆରି ହେଇଥିବା ମଣ୍ଡପକୁ ଭାଷଣ ଦେବା ପାଇଁ ଚାଲିଗଲେ ଓ ଦେଶକୁ ଉନ୍ନତି କରିବା ଲାଗି ଶିକ୍ଷାର ଆବଶ୍ୟକତା ସଂପର୍କରେ ଏକ ଦୀର୍ଘ ବକ୍ତୃତା ଦେଲେ । ଗୁରୁଛାତ୍ରର ସଂପର୍କ ସଂପର୍କରେ କହିଲାବେଳେ ସେ ଯେମିତି ଭକ୍ତିରେ ଗଦ୍‌ଗଦ୍ ହେଇଯାଉଥିଲେ । ବାପା ଆଗ ଧାଡ଼ିରେ

ବସି ସବୁ ପିଇଯାଉଥିଲେ ଯେମିତି । ଭାଷଣ ପରେ ହଠାତ୍ ଦେଖାଗଲା ପାହାଚରୁ ଓହ୍ଲାଇ ମନ୍ତ୍ରୀ ବାପାଙ୍କ ଆଡ଼କୁ ମୁରୁକି ହସା ଦେଇ ଆଗେଇ ଆସୁଛନ୍ତି । ଉତ୍ସାହ ଓ ଏକ ପ୍ରକାର ଉଠିପଡ଼ି ଆନନ୍ଦରେ ଦୁଇହାତ ପ୍ରସାରିତ କରି ଦେଲେ । ରଜନୀ ମଉସା ଏଇ ଯେମିତି ଆସି ବାପାଙ୍କୁ କୁଣ୍ଢାଇ ପକାଇ ପାଟିକରି ଉଠିବେ, 'କିବେ ତୁ ଏଇଠି । ଅଚିହ୍ନାଭଳି ବସି ରହିଛୁ କାହିଁକି ?' ଆଉ ବାପାଙ୍କ ଛାତି... କିନ୍ତୁ ଏକଣ ! ବାପାଙ୍କୁ ପାରି ହେଇ ରଜନୀ ମଉସା ଚାଲିଯାଉଛନ୍ତି, ଯେମିତି ସେ ଏ ଲୋକଟାକୁ ଚିହ୍ନନ୍ତିନି କି ଜାଣନ୍ତିନି । ତାଙ୍କ ପଛରେ ବଡ଼ିଗାର୍ଡ଼, କଲେକ୍ଟର, ମନ୍ତ୍ରୀଙ୍କ ପି.ଏ. ପ୍ରଭୃତି ଧାଇଁବା ଅବସ୍ଥାରେ ମନ୍ତ୍ରୀ ବାପାଙ୍କୁ ଦେଖି ମଧ ସେ ଯେମିତି କେବେ ଦେଖିନାହାନ୍ତି, ଜାଣିନାହାନ୍ତି ।

ରଜନୀ ମଉସାଙ୍କୁ କୁଣ୍ଢେଇ ଧରିବା ପାଇଁ ଲମ୍ବି ଯାଇଥିବା ବାପାଙ୍କର ହାତ ଦୁଇଟି ଆସ୍ତେ ଆସ୍ତେ ତଳକୁ ହେଇଗଲା । ଲଜ୍ୟା, ଅପମାନ ସବୁକିଛି ଏକାଠି ହେଇ ବାପାଙ୍କ ମୁହଁରେ ରଙ୍ଗ ବୋଳି ଦେଲେ ଯେମିତି । ଖୁସୀ ଓ ଆନନ୍ଦରେ ଭର୍ତ୍ତି ହେଇ ଉଠିଥିବା ଆଖି ଯୋଡ଼ାକ ତାଙ୍କର ଧୀରେ ଧୀରେ ନିସ୍ତେଜ ହେଇଗଲା । ତଥାପି ରଜନୀ ବୋଲି ଡାକି ଧାଇଁଗଲା ବେଳେ ବାଧାଦେଲେ ମନ୍ତ୍ରୀଙ୍କ ଅଙ୍ଗରକ୍ଷୀମାନେ । ମନ୍ତ୍ରୀ ଥରଟିଏ ଦୟାକଲା ଭଳି ବାପାଙ୍କୁ ଅନାଇ ମୁହଁ ଫେରାଇ ନେଲେ ଓ ଗାଡ଼ିରେ ବସି ଶୀଘ୍ର ଡାକବଙ୍ଗଳାରେ ପହଞ୍ଚିବା ଲାଗି ଡ୍ରାଇଭରକୁ ନିର୍ଦ୍ଦେଶ ଦେଲେ । ଡ୍ରାଇଭର ବି ସଙ୍ଗେ ସଙ୍ଗେ ତରତରରେ ଗାଡ଼ି ଷ୍ଟାର୍ଟ କରିଦେଲା । ଗାଁ ସ୍କୁଲ ପାରି ହେଇ ଗାଁର ନାଲି ସଡ଼କରେ ମନ୍ତ୍ରୀଙ୍କର ଚକ୍ ଚକ୍ ଗାଡ଼ି ପୁଣିଥରେ ଧୂଳି ଉଡ଼ାଇ ଚାଲିଗଲା ଆଉ ସବୁତକ ଧୂଳି ଯେମିତି ବାପାଙ୍କ ମୁହଁରେ ନେସି ହେଇଗଲା । ବାପା ତରତର ହେଇ ତାଙ୍କ ଚଷମାଟି ପିନ୍ଧିନେଲେ ।

ପଖାଳ, ଦହି, ମାଛଭଜା, ଶାଗ, ବଡ଼ି, ପାମ୍ପଡ଼, ଆଚାର ଧରି ବାପାଙ୍କ ଫେରିବା ବାଟକୁ ଚାହିଁ ରହିଥିଲା ବୋଉ । ବାପା କିନ୍ତୁ ଏକା ଫେରୁଥିଲେ । ରଜନୀ କାହିଁକି ଆସିଲେ ନାହିଁ ବୋଲି ଯେତେବେଳେ ପଚାରି ବସିଲା ବୋଉ, ଭିଜା ଗଳାରେ ବାପା କହିଲେ, ରଜନୀ ଆଉ ସାଧାରଣ ରଜନୀ ହେଇ ରହିନାହିଁ ରମାବୋଉ । ଏଡ଼େ ବଡ଼ ମନ୍ତ୍ରୀଙ୍କୁ ଶାଗପଖାଳ ଖାଇବା ପାଇଁ ଡାକିବା ଲାଗି ମୋର ସାହସ ହେଲାନାହିଁ । ବାପାଙ୍କ ଆଖିରେ ପାଣି ଆସିଗଲା ।

ଆରେ ! ପୋକଟା ଆଖି ଭିତରେ ଏତିକିବେଳେ ପଡ଼ିବାର ଥିଲା । ବାପା ଶୁଣାଇଲା ଭଳି କହିଲେ । ତାପରେ ଧୋତି କାନିରେ ଆଖି ପାଣିକୁ ପୋଛି ନେଲେ । ଜଣେ ସାଧାରଣ ଶିକ୍ଷକ ଘରକୁ ଓଡ଼ିଶାର ଶିକ୍ଷାମନ୍ତ୍ରୀ ଆସିବାଟା କେବେ ସମ୍ଭବ ? କେଉଁଠି ଘଟିଛି ? ବୋଉ ଯେମିତି ବୁଝି ପାରୁନଥିଲା । ଆଁଟା କରି ବାପାଙ୍କୁ ଚାହିଁ ରହିଥିଲା । ଭାବୁଥିଲା ବୋଧହୁଏ, ଯଦି ମନ୍ତ୍ରୀ ସାଙ୍ଗକୁ ଡାକିବାର ନଥିଲା ଏସବୁ ସଜ ଯୋଗାଡ଼

କରୁଥିଲି କାହିଁକି ?

ସକାଳେ ଘର ଓଳାଇଲାବେଳେ ବାପାଙ୍କ ଘରୁ ବାହାରିଥିଲା ଗୋଟେ ହଳଦିଆ ପଡ଼ିଯାଇଥିବା ଫେଟୋର କେଉଁ ଗୋଟି ଚିରାହୋଇଥିବା ଟୁକୁରା....



# ଦୁର୍ଗ

ଏଇ କସ୍‌ମୋପୋଲିଟାନ୍ ସିଟିକୁ ଆସିଲା ଦିନୁ କେମିତି ଏକ ନିର୍ଜନତା ଛାଇଯାଉଛି ତା ମନ ଭିତରେ । ଭୟ ହେଉଛି ଏହାହିଁ ବୋଧହୁଏ ତାର ଭାବିବାର, ସ୍ୱପ୍ନ ଦେଖିବାର ସବୁ ସୂକ୍ଷ୍ମଚେତନାକୁ ନଷ୍ଟ କରିଦେବ । ଏଇଠୁ ଯେମିତି ମୁକ୍ତି ନାହିଁ, ପଳାଇବାର ବାଟ ନାହିଁ ।

ଦିନଥିଲା ଯେତେବେଳେ ତା ସ୍ୱାମୀ କମ୍ ଦରମାର ଏକ ଚାକିରି କରୁଥିଲେ ଓ ଏ ସହରକୁ ଆସି ନଥିଲେ । ସେତେବେଳେ ଅଳ୍ପ ଦରମାରେ ଚଳିବାକୁ କଷ୍ଟ ହେଉଥିଲା । କାହାର ଦାମୀ ଗହଣା, ଭଳି କି ଭଳି ଶାଢ଼ୀ ଦେଖିଲେ ନିଜ ସ୍ୱାମୀର ଅର୍ଥନୈତିକ ଅବସ୍ଥା ତଥା ନିଜର ଦାରିଦ୍ର୍ୟ ସଂପର୍କରେ ଭାବି ସେ ଲଜ୍ଜିତା ହେଉଥିଲା । ପିଲାମାନେ ବି ଭଲ ସ୍କୁଲରେ ପଢ଼ିପାରୁ ନଥିଲେ । ସେମାନଙ୍କର ଭଲ ଡ୍ରେସ୍ ନଥିଲା । ଅତି ଛୋଟ ଭଡ଼ାଘରେ ରହୁଥିଲେ । ନିଅଣ୍ଟିଆ ବଜେଟ ଭିତରେ ଚଳିଲା ବେଳେ ଜୀବନର ସବୁ ସ୍ୱପ୍ନ ସତେକି ସୀମିତ ହେଇଯାଉଥିଲା ଡ଼ାଲି ଚାଉଳ ଭିତରେ । ଝିଅ ଥିଲାବେଳେ ତାର ସ୍ୱପ୍ନ ଥିଲା ତାର ଏକ ରାଜକୁମାର ଭଳି ସ୍ୱାମୀ ହେବ । ତାଙ୍କର ଏକ ସୁଦୃଶ୍ୟ ଘର ଥିବ । ଘର ସାମ୍ନାରେ ଗାଡ଼ି ଥୁଆ ହେଇଥିବ । ମାଳି ବାରମାସୀ ସୁନ୍ଦର ବଗିଚାଟିଏ ସଜାଡ଼ି ରଖିଥିବ । ହାତ ମୁଠା ଭିତରେ ପୃଥିବୀର ସବୁ ସୁନ୍ଦର ଜିନିଷକୁ ରଖି ହେଉଥିବ । କିନ୍ତୁ ବାହାଘର ପରେ ତାର ମନେ ହୋଇଥିଲା ବାସ୍ତବତା ସହିତ ସ୍ୱପ୍ନର ଅନେକ ଦୂରତ୍ୱ । ବାସ୍ତବରେ ସବୁ ସ୍ୱପ୍ନ ସତ ହୁଏନା ବୋଲି ହିଁ ସ୍ୱପ୍ନ ଏତେ ଲୋଭନୀୟ । ତେଣୁ ଦିନ ପୁରୁଣା ହେବା ସହିତ ସେ ବି ତା ଝିଅବେଳର ସ୍ୱପ୍ନ ଭୁଲିଗଲା ଓ କ୍ରମଶଃ ନିମ୍ନମଧ୍ୟବିତ୍ତ ପରିବେଶରେ ପିଲାମାନେ ବି ବଢ଼ି ଉଠିଲେ । କିନ୍ତୁ ହଠାତ୍ ଦିନେ ଭୁଲି ଯାଇଥିବା ସ୍ୱପ୍ନ ସବୁ ସତହେବା ଲାଗି ହାତ ବଢ଼ାଇଲେ । ପୁଣି ମଉଳି ଯାଇଥିବା ସ୍ୱପ୍ନ ଆଶାର ଡ଼ାଳସବୁ ତା ଚାରିପଟେ କଅଁଳିବାକୁ ଆରମ୍ଭ କଲେ ।

ସ୍ୱାମୀ ଥିଲେ ଉଦ୍ୟୋଗୀ ପୁରୁଷ । ତେଣୁ ଏକ ଜର୍ମାନ କମ୍ପାନୀର ଆଡ଼ମିନିଷ୍ଟ୍ରେଟିଭ ଅଫିସର ପଦବୀ ପାଇଗଲେ । ଫ୍ରି କ୍ୱାଟର୍ସ, ଗାଡ଼ି ସର୍ଭିସ, ଅଡ଼ରଲି, ଡ୍ରାଇଭର, ମାଳି ସବୁକିଛି । ସଂପୂର୍ଣ୍ଣ ସହରୀ ପାଲଟି ନଥିବା ମଫସଲୀ ଜାଗାରୁ ଚାକିରି ଛାଡ଼ି ମୋଟା ଦରମାରେ କମ୍ପାନିର ଚାକିରୀରେ ଜୟେନ କରି ସେମାନେ ଏହି କସ୍‌ମୋପୋଲିଟାନ୍ ସିଟିକୁ ଭୁଲି ଆସିଲେ । ଯେମିତି ରାତାରାତି କୌଣସି ଯାଦୁଗର ଆସି ସେମାନଙ୍କର ଭାଗ୍ୟ ବଦଳାଇ ଦେଲା । ଏହା ଚମତ୍କାର ନଥିଲା ତ ଆଉ କଣ ?

ଆସିଲାବେଳେ ନିଜର ଇପ୍‌ସିତ ସ୍ୱପ୍ନ ସାକାର ଦେବାର ଆକର୍ଷଣରେ ପୁରୁଣା ସହରରେ ରହିଥିବା ହିତାକାଂକ୍ଷୀ ବନ୍ଧୁ ବାନ୍ଧବ, ସାଇ ପଡ଼ିଶା, ଆତ୍ମୀୟ ସ୍ୱଜନ ସବୁ କିଛିକୁ ଛାଡ଼ି ଆସିଲାବେଳେ ସେମିତି କିଛି ତା ମନରେ କଷ୍ଟ ହେଉ ନଥିଲା । ନୂଆ ଦୁନିଆର ଲୋଭରେ ଓ ଆକର୍ଷଣରେ ସେ ଆତ୍ମହରା ହୋଇ ଉଠିଥିଲା । ପିଲାମାନଙ୍କ ସାମ୍ନାରେ ସହରର ଚାକଚକ୍ୟର ଏକ ଭରପୂର ଚିତ୍ର ସେ ମେଲାଇ ଧରିଥିଲା ।

ନୂଆ କ୍ୱାଟର ସାମ୍ନାରେ ଟ୍ରକ ଠିଆ ହେଲାପରେ ସେ ଆଶ୍ଚର୍ଯ୍ୟରେ ଚାହିଁ ରହିଥିଲା । ବାପ୍‌ରେ ଏତେ ବଡ଼ ଘର । କେତେ ମହଲା ? ସ୍ୱାମୀ କହିଥିଲେ ଏଇଟା ଫ୍ଲାଟ ଘର । ଦଶ ନମ୍ବର ଫ୍ଲାଟଟା ଆମର । ଲିଫ୍‌ଟରେ ଉପରକୁ ଯିବାକୁ ହେବ ।

ନିଜ ଫ୍ଲାଟରେ ପହଞ୍ଚି ଆଖି ତାର ଖୋସି ହୋଇଯାଇଥିଲା । ସଂପୂର୍ଣ୍ଣ ଫରନିସ୍‌ଡ଼ କ୍ୱାଟର । ଦାମି ପର୍ଦ୍ଦା ଝୁଲୁଥିଲା । ତିନୋଟି ବଡ଼ ବଡ଼ ବେଡ୍‌ ରୁମ୍‌ । ଗୋଟିଏ ସୁନ୍ଦର ସଜ୍ଜିତ ଡ୍ରଇଁ ରୁମ୍‌ । ରୋଷେଇ ଘର ପେଡ୍‌ ଏଡ଼େ ସୁନ୍ଦର ହୋଇପାରେ । ପୁଣି ଦୁଇଦୁଇଟା ବାଥ୍‌ରୁମ୍‌, ଲାଟ୍ରିନ୍‌ । ଘର ପଛ ପଟେ ଛୋଟ ଲନ୍‌ । ତିନି ଚାରିଟା ଚେୟାର ପକାଇ ବସି ପାରିବ । ସେଠୁ ଦିଶୁଛି ରେଖାଙ୍କିତ ପାହାଡ଼ । ପାହାଡ଼ର ଦେହକୁ କାଟି ଟ୍ରେନ୍‌ ଲାଇନ । ବାଃ ସୁନ୍ଦର, ଅତି ସୁନ୍ଦର ସେ କହି ଉଠିଥିଲା ।

ସେମାନଙ୍କର ସେହି ଇପ୍ସିତ ଘର ଦିନେ ଦୁଇଦିନ ଭିତରେ ଠିକ୍‌ ଠାକ୍‌ ହୋଇ ଜିନିଷପତ୍ର ରହିଯାଇଥିଲା । କେତୋଟି ଦିନ ଭିତରେ ପଥକ୍ଳାନ୍ତି ବି ସଂପୂର୍ଣ୍ଣ କଟିଗଲା । ଚବିଶଘଣ୍ଟା ତା ମୁହଁରୁ ଅର୍ଡ଼ର ଶୁଣିବା ପାଇଁ ଅଡ଼ରଲିଟିଏ ଖଞ୍ଜା ହୋଇଥିଲା । ରନ୍ଧାବଢ଼ା କାମ ପାଇଁ ବି ଖାନ୍‌ସାମାଟିଏ । ସୁଖ ପେଡ୍‌ ଆସେ ଏମିତି ? ଏଭଳି ଭାବରେ ହାତୀ ସୁନାକଳସ ଢ଼ାଳେ ।

ସୁଖେନ୍ଦୁ ସାଢ଼େ ଆଠଟା ସୁଦ୍ଧା ଟିଫିନ୍‌ ଖାଇ ବାହାରି ଯାଉଥିଲେ । ଫେରୁଥିଲେ ରାତି ଆଠଟାରେ । ଅଡ଼ରଲି ମଧ୍ୟାହ୍ନ ଭୋଜନ ଟିଫିନ ଅଫିସକୁ ନେଇ ଯାଉଥିଲା । ତେଣୁ ଆଗ ଚାକିରିରେ ସୁଖେନ୍ଦୁ ଯେମିତି ଖରାବେଳେ ଆସି ପାରୁଥିଲେ ଏବଂ ସେ ଓ ସୁଖେନ୍ଦୁ ଦୁଃଖସୁଖ ହୋଇ ଏକାଠି ଖାଉଥିଲେ ତାହା ଆଉ ସମ୍ଭବ ହେଲାନାହିଁ । ଏକାଠି ଲଞ୍ଚ୍‌ ଖାଇବାରେ ସେ ଏତେ ଅଭ୍ୟସ୍ତ ହୋଇଯାଇଥିଲା ଯେ ପ୍ରଥମେ ପ୍ରଥମେ ତାକୁ ଏକା ଏକା ଖାଇବାରେ ଭାରି ଖରାପ ଲାଗୁଥିଲା । ଆସ୍ତେ ଆସ୍ତେ ଏହା ଅଭ୍ୟାସ ହୋଇଗଲା । ପିଲାମାନେ ସ୍କୁଲ ଚାଲିଗଲା ପରେ ସାରା ଖରାବେଳ ସେ ଏକା ହୋଇଯାଉଥିଲା । ବୁଣାବୁଣି, ଟି.ଭି. ଦେଖା ଭିତରେ ବି ଯେମିତି ସମୟ କଟୁନଥିଲା ।

କ୍ରମଶଃ ସେ ଉପଲବ୍ଧି କଲା ଏଇ ଜାଗାରେ ସେ ବଡ଼ ଏକୁଟିଆ ହେଇ ପଡ଼ିଛି ।

ସାମ୍ନା ଫ୍ଲାଟ୍‌ରେ କିଏ ରହିଥିଲା ଜାଣିବାର ଉପାୟ ନଥିଲା । ସ୍ୱାମୀ ବାରମ୍ବାର ତାଗିଦ୍ କରିଥିଲେ ଏଇଟା ଅତ୍ୟାଧୁନିକ ସିଟି । ସମସ୍ତେ ପ୍ରେଷ୍ଟିଜ୍ ଜଗନ୍ତି । କେହି କାହା ଘରକୁ ଯାଆନ୍ତି ନାହିଁ । ଅଯଥା ହସିହସି କଥା ହୁଅନ୍ତି ନାହିଁ । ସବୁ ମାପିଚୁପି ଚଳିବାକୁ ପଡ଼େ । ତମର ଯେଉଁ ଅଭ୍ୟାସ ନା, ସାଙ୍ଗସାଥି ଜୁଟେଇବ, ସେମିତି ହେଲେ ପର୍ସନାଲିଟି ଲୁଜ୍ ହେଇଯାଏ । ଯଦି ବି କେହି ଆସନ୍ତି ତମେ ପ୍ରଗଲଭା ହେଇ ଗପିବ ନାହିଁ, ହଁ କି ନାଁରେ କାମ ସାରିଦେବ । ଏଠି ପାର୍ଟି କି କ୍ଲବ୍‌ରେ ହିଁ ଦେଖାହେଲେ ଜାଣିବ କିଏ କେଉଁ ନମ୍ବରରେ ରହେ ।

କଥାଟା କେମିତି ତାକୁ ଅଡୁଆ ଲାଗୁଥିଲା । ମଣିଷ ଏତେ ଫେର୍ ମାପିଚୁପି ବଞ୍ଚିପାରେ ? କେମିତି ? ଏକାଠି ଗୋଟିଏ ଛାତ ତଳେ ରହିବ ଅଥଚ କେହି କାହାଘରକୁ ଯିବ ନାହିଁ ପ୍ରେଷ୍ଟିଜ୍ ଲୁଜ ହେବ ବୋଲି ? ଦେଖାହେଲେ ପୁଣି ହସିକି ପଦେ କଥା ହେବନାହିଁ ପ୍ରେଷ୍ଟିଜ୍ ପଳାଇବ ବୋଲି ? ଦୁଃଖସୁଖରେ, ବେଳଅବେଳରେ ଠିଆ ହେବ ନାହିଁ ? ଏ କେମିତି କଥା । ଚାକିରିଆ ଜୀବନରେ ସଭିଏଁ ଆପଣା ଘରଦ୍ୱାର ଛାଡ଼ି ପରଦେଶୀ ହୋଇଥାନ୍ତି । ସାଇପଡ଼ିଶାହିଁ ହୁଅନ୍ତି ମା'ବାପା, ଭାଇଭଉଣୀ, ଆତ୍ମୀୟ ସ୍ୱଜନ । ସେମାନଙ୍କ ସହିତ ହିଁ କଟିଯାଏ ଅଧାଜୀବନ । ଅଥଚ ଏଠି ପଡ଼ିଶା କହିଲେ କେବଳ ପାର୍ଟିକ୍ଲବ ଭିତରେ ସୀମିତ ରହିବ । ତାଛଡ଼ା ପ୍ରେଷ୍ଟିଜ୍ ଜିନିଷଟା କେମିତି ଯେ ଓ କେଉଁଥିରେ ତିଆରି ହୋଇଥାଏ ଟିକିଏ ଟିକିଏରେ ଢ଼ିଲା ହୋଇଯାଏ ଏଠି ?

କିଛିଦିନ କଟାଇଲା ପରେ ତାର ମନେ ହେଲା ସ୍ୱପ୍ନ ଏକ ସୁନ୍ଦର ବାଲିହରିଣ । ତାକୁ ପାଇବି ପାଇ ହୁଏ ନାହିଁ । ନିଜର ଇପ୍‌ସିତ ସ୍ୱପ୍ନ ସାକାର ହେଲାବେଳକୁ ସେ ଆପଣା ଘରେ ହିଁ ବନ୍ଦୀ ହୋଇଯାଇଛି । କେବଳ ସ୍ୱାମୀ ଓ ପିଲାଦୁଇଟିକୁ ନେଇ ଏଇଠି ବର୍ଷ ବର୍ଷ କଟାଇବା କଥାଟା ଭାବି ଦେଲାମାତ୍ରେ ସେ ଉଦାସ ହୋଇଗଲା । ଡ୍ରଇଁ ରୁମ୍ ଫୋନ୍ ଦେଖିତ ପ୍ରଥମେ ସେ ଖୁସୀ ହୋଇଯାଇଥିଲା, ଯାହା ହେଉ ବନ୍ଧୁତ୍ୱ ଜମିଗଲେ କାହାସହ ମନଭରି ଗପିପାରିବ, ଭଲମନ୍ଦ ପଚାରି ବୁଝିପାରିବ, ଭଲ ତରକାରୀ କି ପିଠାପଣା କଲେ ଡ଼ାକି ହେବ । ବୋର ଲାଗିବନି, ମିଷ୍ଟର କିନ୍ତୁ ତାଗିଦ୍ କରିଦେଲେ ଆରମ୍ଭରୁ ସେ ଭୁଲ କରିବନି । ଏଟା ସେ ଅଧାମଫସଲୀ ଜାଗା ନୁହେଁ । ତମେ ଜଣେ ଉଚ୍ଚପଦସ୍ଥ ଅଫିସରର ସ୍ତ୍ରୀ । ପରସନାଲିଟିକୁ ଜଗିବ । ସ୍ତ୍ରୀ ଲୋକମାନେ ଖରାବେଳେ ପଶିଆସି ଢ଼କାଯଡି କରିବାର ଦୃଷ୍ଟାନ୍ତ ଏଠି ବିରଳ ନୁହେଁ । ତାଛଡ଼ା ନିଜ ଘରକୁ ସଜାଡ଼, ସମ୍ଭାଳ ଅନ୍ୟମାନଙ୍କ ଭଳି ।

ନିଜ ଘର ? ଏଟା ଘର ନା ଦୁର୍ଗ । ଏଇ ପାରାଭାଡ଼ି ଭିତରେ ତାର ପିଲାମାନେ

ବଢ଼ିବେ । ଏଇଠି କୈଶୋର, ଯୌବନ ତାଙ୍କର କଟିବ । ସେମାନେ ଗାଁ ଜାଣିବେନି, ବନ୍ଧୁତ୍ୱ ଜାଣିବେନି, ପଡ଼ିଶା ଜାଣିବେନି । ପାଞ୍ଚଜଣଙ୍କ ସହ ମିଶିବେନି । ନିଜ ଘର ନିଜ ପରିବାର ଭିତରେ ବଢ଼ି ଅତି ସ୍ୱାର୍ଥପର ହୋଇଯିବେ । କେବଳ ନିଜ ବଞ୍ଚିବାର, ସୁଖ ଖୋଜିବାର ଶିକ୍ଷା ପିଲାବେଳୁ ଶିଖିବେ । ବଡ଼ ହୋଇ ଏମାନେ କିଭଳି ନାଗରିକ ହେବେ ? ଦେଶ ଜାତି ସମାଜର କେଉଁ କାମରେ ଆସିବେ ? ପୁଣି ଏଭଳି ପରିବେଶରେ ବଡ଼ ହେଇ ସେମାନେ ସେମାନଙ୍କର ପିଲାମାନଙ୍କୁ କଣ ଶିଖାଇବେ ? ତାହେଲେ ଏହିଭଳି ଭାବରେ ଦିନେ ଲୋପ ପାଇଯିବ ସାଙ୍ଗସାଥି, ବନ୍ଧୁତ୍ୱ, ପଡ଼ିଶା ବା ସମାଜ ? କେବଳ ପରିବାର ଭିତରେ ରହିଯିବ ଭାରତବର୍ଷର ଭବିଷ୍ୟତ ? ଜୀବନ ଖାଇବା, ପିନ୍ଧିବା, ସୁଖ ଖୋଜିବା ଓ ପ୍ରେଷ୍ଟିଜ୍ ଜଗିବା, ପର୍ସନାଲିଟି ବଢ଼ାଇବା ଭିତରେ ଶେଷ ହୋଇଯିବ । ଆସ୍ତେ ଆସ୍ତେ ସାହିତ୍ୟ, ସଂଗୀତ, ନୃତ୍ୟ, ସମାଜସେବା, ସାଂସ୍କୃତିକ ଚେତନାର ସବୁ ସୂକ୍ଷ୍ମଭାବ ସରିଯିବ । ଏଭଳି ଏକ ଅଲଟ୍ରାମଡ଼ର୍ଣ୍ଣ ଅଧ ବିଲାତି ଜୀବନର ଭବିଷ୍ୟତ କ'ଣ ? ତାର ଭାବାନ୍ତର ଦେଖି ସ୍ୱାମୀ କହିଲେ ପାଗଳାମି ଛାଡ଼ ଶାନ୍ତା । ଏସବୁ ଆଦର୍ଶ ଫାଦର୍ଶ ବହିର ବାଜେ ଶବ୍ଦ । ଜୀବନରେ କଣ ହେଲା, ହେବା ଦରକାର ଭାବି ଲାଭ କଣ, ନିଜ ସୁଖରେ ରହ ଆଉ ସ୍ୱାମୀ ଛୁଆପିଲାଙ୍କୁ ସୁଖରେ ରଖ ।

ସୁଖେନ୍ଦୁ ଏଠାକୁ ଆସି ବେଶ୍ ବଦଳି ଯାଇ ପାରିଛନ୍ତି । ନୂଆ ପରିବେଶ ସହିତ ଆଡ଼ଜଷ୍ଟ କରି ସାହେବ ପାଲଟିବାରେ ତାଙ୍କୁ ବେଶି ସମୟ ଲାଗିନାହିଁ । କିନ୍ତୁ ସେହିଁ ପାରିନାହିଁ । ତା ଜୀବନର, ତା ଚାରିପଟର ପ୍ରବଳ ପରିବର୍ତ୍ତନର ସିଥର ବହୁପଛରେ ସେ ପଡ଼ିଯାଇଛି । ଏଠି ସେ କେବଳ ସାଇପଡ଼ିଶା ହରାଇନି, ବନ୍ଧୁବାନ୍ଧବଙ୍କୁ ହରାଇନି, ସୁଖେନ୍ଦୁକୁ ବି ହରାଇ ଦେଇଛି । ଆଗେ ସେମାନଙ୍କ ହାତରେ ପ୍ରଚୁର ସମୟ ଥିଲା, ସାଢ଼େ ପାଞ୍ଚଟା ସୁଦ୍ଧା ସୁଖେନ୍ଦୁ ଅଫିସରୁ ଫେରି ଆସୁଥିଲା । ଶାନ୍ତିରେ ଚା ପିଆ ହେଉଥିଲା । କେବେକେବେ କିଚେନରେ ପଶି ସୁଖେନ୍ଦୁ ଚପ୍ ବନାଇବା, ଉପମା କରିବା ପାଇଁ ଆଗଭର ହୋଇ ନିଜେ ବସିପଡୁଥିଲେ । ମନ୍ଦିର କେବେ ତ ପାର୍କ କେବେ ପିଲାମାନଙ୍କୁ ଧରି ଯାଉଥିଲେ ଓ ହୋଟେଲରେ ଖାଇ ଆସୁଥିଲେ । ରବିବାରଟା ସଂପୂର୍ଣ୍ଣ ଛୁଟି ଥିଲା । ପିଲାମାନଙ୍କର ପଢ଼ା, ବଗିଚା କାମ, ଘରସଫା ସୁଖେନ୍ଦୁ ନିଜେ କରୁଥିଲେ । ସେମାନେ ମିଶି କିଚେନ୍ ବନାଉଥିଲେ । ଭଲ ଟିକେ ଛୁଟି ଦିନରେ ଖାଇବା ପାଇଁ ବରାଦ କରୁଥିଲେ । ପୁଣି ଆତ୍ମୀୟସ୍ୱଜନଙ୍କ ଘରକୁ ବୁଲି ଯାଉଥିଲେ । ପିଲାମାନଙ୍କ ସହିତ ବସି ଦୁଃଖସୁଖ ହେଉଥିଲେ । ବନ୍ଧୁବାନ୍ଧବଙ୍କ ପାଖକୁ ଚିଠି ଲେଖାଯାଉଥିଲା । ହେଲେ ଏଠି ସେ ଅତୀତର ସୁଖେନ୍ଦୁକୁ କ୍ରମଶଃ ହଜାଇ ଦେଇଛି । ଘରର ସବୁ ଦାୟିତ୍ୱ ତା ଉପରେ ଦେଇ ସୁଖେନ୍ଦୁ ନିଶ୍ଚିନ୍ତ । ଦିପଦ ଚିଠି କାହାକୁ ଲେଖିବାତ ଦୂରର କଥା, ଛୁଆପିଲା ସ୍ତ୍ରୀ ସହିତ ଗପିବାକୁ ବି ବେଳ ନାହିଁ । ଦିନରାତି ଖାଲି କାମ କାମ । ଟୁର । ପ୍ରଚୁର ପଇସା ଓ ଆରାମଦାୟକ

ଜୀବନର ଉପହାର ଦେଇ ସୁଖେନ୍ଦୁ ତାର ହାତଛଡ଼ା ହେଇଯାଇଛନ୍ତି । ମନ୍ଦିର କି କୁଆଡ଼େ ଯିବା କଥାଟାତ ସେ ଭୁଲି ଗଲାଣି । କହିଲେ ଉତ୍ତର ମିଳିବ ଗାଡ଼ି ଅଛି, ଡ୍ରାଇଭରକୁ କହିଦେବି ନେଇଯିବ । ସେତେବେଳେ ତା ଆଖିରେ ପାଣି ଆସିଯାଏ । ତାଙ୍କର ସେ ସ୍କୁଟର ଆଉ ଅଧା ମଫସଲୀ ଜାଗାର ଛୋଟ ଘରଟି କଥା ମନେ ପଡ଼ିଯାଏ । ଯେଉଁ ସବୁକୁ ଛାଡ଼ି ଆସିବାରେ ତାର ଆଦୌ ଦୁଃଖ ହୋଇ ନଥିଲା ଦିନେ ।

ଏଠି ତା ଜୀବନ ସ୍ଥିର ହୋଇଗଲାବେଳକୁ ସୁଖେନ୍ଦୁଙ୍କର ସୁପରଫାଷ୍ଟରେ ଧାଇଁଛି । ସବୁ ତରତର । ଖାଇବା, ଗପିବା, ପିନ୍ଧିବା, ଗାଧୋଇବା । ଉଠୁ ଉଠୁ ଚା ପିଇ ଟି.ଭି.ର ନିଉଜ ଶୁଣି ସାରି ସେ ଗାଧୋଇ ପଡ଼ନ୍ତି । ବ୍ରେକ୍‌ଫାଷ୍ଟ ଖାଇବା ପରେ ଆଟେଚି ଫାଇଲ ରେଡ଼ି କରି ବାହାରି ଯାଆନ୍ତି ଯେ ଆସିବାର ଠିକଣା ନାହିଁ । ବାପାଙ୍କ ବିନା ଲଞ୍ଚ, ଡ଼ିନର ଖାଇବାରେ ପିଲାମାନେ ପ୍ରଥମେ ପ୍ରଥମେ ରାଜି ହେଉ ନଥିଲେ । ଏବେ ସେମାନେ ବି ଆଡ଼୍‌ଜଷ୍ଟ କରି ଗଲେଣି । ଡ୍ରାଇଭରଙ୍କୁ ଧରି ତାକୁ ମାସିକିଆ ସଉଦା କିଣିବାକୁ ପଡ଼େ । ପିଲାମାନଙ୍କର ସ୍କୁଲ ଯାଇ ଦରମା ଦେବା, ସେମାନଙ୍କର ବହିପତ୍ର କିଣିବା ଓ କାହାରି ବିବାହ ବ୍ରତରେ ଯୋଗଦେବା, ଚିଠିଲେଖିବା, ବନ୍ଧୁବାନ୍ଧବ ଆସିଲେ ଚର୍ଚ୍ଚା କରିବା ସବୁକିଛି ତା ଉପରେ । ଏଠି ଅଫିସଟା ସୁଖେନ୍ଦୁଙ୍କ ଲାଗି ଘର ହେଇଯାଇଛି ଓ ଘରଟା ତା ନିଜ ପାଇଁ ବନ୍ଦୀଶାଳା ପାଲଟି ଯାଇଛି । ଦିନସାରା ସେ ଯେତେ ଅଭିଯୋଗ, ପ୍ରଶ୍ନ ଭାବି ରଖିଥାଏ କ୍ଲାନ୍ତ ସୁଖେନ୍ଦୁକୁ ଦେଖିଦେଲେ ମନରେ ଦୟା ଆସେ । ସବୁ ଅଭିମାନ ମିଳାଇଯାଏ । କିଛି କହିବାକୁ ଯଦି କେବେ ସେ ଚେଷ୍ଟା କରେ ବିଛଣା ଧରୁଧରୁ ସୁଖେନ୍ଦୁ ନିଘୋଡ଼ ନିଦରେ ଶୋଇଯାଇଥାନ୍ତି । ସକାଳୁ ଦାନ୍ତ ବ୍ରସ୍, ଗାଧୁଆ, ଠିଆ ଠିଆ ଜଳଖିଆ ଖାଇବା ଭିତରେ ତର ସହେ ନାହିଁ । ଯଦି ତଥାପି କିଛି କହିଲ ଉତ୍ତର ମିଳେ ତମେ ଶିକ୍ଷିତା ହୋଇ ଏମିତି କଣ ହେଉଛ ? ଟଙ୍କା ଅଣ୍ଟୁନି ବୋଲି ଦିନେ ବସେଇ ଉଠେଇ ଦେଉ ନଥିଲ ଏବେ କଣ ନା ବୋର ହେଉଛ । ଯଦି ଭଲ ଲାଗୁନି କ୍ଲବର ମେମ୍ବର ହୋଇଯାଅ, ବିଉଟି ପାର୍ଲର ଯାଅ । ମଡ଼ର୍ଣ୍ଣ ନାରୀମାନଙ୍କୁ ନେଇ ଏଠିତ ବିଭିନ୍ନ ଅର୍‌ଗାନାଇଜେସନ ସବୁ ଅଛି । ସେଇଠି ସାମିଲ ହୋଇଯାଅ ଏମିତି କେତେ କଥା । ଚୁପ୍ ହୋଇଯାଏ ଶାନ୍ତା । ସେ ବୁଝେ ଆଉ ଜାଣେ ଏ ଜୀବନରୁ ତାର ମୁକ୍ତି ନାହିଁ । ସେହି ଯେଉଁ ରାଜକୁମାରୀ ବୁଢ଼ୀ ଅସୁରୁଣୀର ମାୟାଜାଲରେ ପଡ଼ିଥିଲା । ସାତ ତାଳ ପଙ୍କ ତାରି ଭିତରେ ଦୁର୍ଗଭଳି ରାଜ ଉଆସ । ସେଠୁ ମୁକ୍ତି କାହିଁ ? ଅନ୍ତତଃ ଏ ଏ ଜୀବନରେ ନୁହେଁ ।

ଥରେ ସେ କ୍ଲବ୍ ଯାଇଥିଲା । ତା ମନରେ ଅଶେଷ କୌତୁହଳ ଥିଲା । ଯାହାହେଉ କିଛି ଚିହ୍ନାପରିଚୟ ହେଲେ ମନଭରି ଗପିପାରିବ । ଫୋନ୍ ନମ୍ବର ଟିପି ଆଣିବ । ସୁଖେନ୍ଦୁ ବାରଣ କଲେବି ନିମନ୍ତ୍ରଣ କରିବ । ଦି ଚାରି ଥର ଯିବାଆସିବା ହେଇଗଲେ ତାକୁ କିଏ ଅଟକାଇବ । ହେଲେ କ୍ଲବ୍‌ରେ ପହଞ୍ଚି ପ୍ରାଚୁର୍ଯ୍ୟ ଓ ମଣିଷର ବିଳାସ ଦେଖି ସେ ଆଶ୍ଚର୍ଯ୍ୟ

ହୋଇଗଲା । ଅନ୍ୟ ପୁରୁଷ ଅଣ୍ଟାରେ ହାତ ଦେଇ ନାଚିବା, ହାଲ୍‌କା ଡ୍ରିଙ୍କସ୍ କରିବାର ପ୍ରଥମ ସୋପାନରେ ସେ ହାରି ଯାଇଥିଲା । କିନ୍ତୁ ସୁଖେନ୍ଦୁକୁ ସଫଟ ଡ୍ରିଙ୍କସ୍ କରିବା ଓ ନାଚିବା ଦେଖି ଆଖି ତାର ଖୋସି ହୋଇଯାଇଥିଲା । ଏତେ ମାଡ଼ି ପଡ଼ିଥିଲା, ଏତେ ଏକୁଟିଆ ଲାଗିଥିଲା ଯେ ସେ ଯେମିତି କାନ୍ଦି ପକାଇବ । ସୁଖେନ୍ଦୁ ଯେ ଏ ଭିତରେ ତା ଠାରୁ ଦୂରକୁ ଚାଲିଯାଇଛନ୍ତି ତାହା ତାର ବିଶ୍ୱାସ ହେଉ ନଥିଲା । କ୍ଲବରେ ଯେଉଁ ତଥାକଥିତ ମଡ଼ର୍ଣ୍ଣ ଲେଡ଼ିଜମାନଙ୍କୁ ଭେଟିଲା ସେମାନଙ୍କ ମୁହଁରୁ ଦାମୀଶାଢ଼ୀ, ଗହଣା, ବ୍ୟାଙ୍କ ବାଲାନ୍ସ, କାହାର କେତେ ତାଲା ଘର, କେଉଁ ମଡ଼େଲର ଗାଡ଼ି, କାହାର ଫରେନ୍‌ରେ କେତେ ସଂଖ୍ୟାରେ ରିଲେଟିଭସ ଅଛନ୍ତି, କିଏ କେଉଁ ପରଫ୍ୟୁମ ବ୍ୟବହାର କରେ, କେଉଁ ବିଉଟି ପାର୍ଲରକୁ ଯାଏ ପୁଣି ସପ୍ତାହରେ କେତେ ଥର, କାହା ଘରେ କେଉଁ ଜାତିର କୁକୁର ଅଛି, କିଏ କେଉଁ କ୍ରିକେଟ ଖେଳାଳୀର ଫ୍ୟାନ୍, କିଏ କେଉଁ ଆକ୍ଟର ସହ ଫଟୋ ଉଠାଇଛି ଇତ୍ୟାଦି ଇତ୍ୟାଦି । ଏଠି ହ୍ୟାଲୋ-ହାୟର ସଂପର୍କ । ଏଭଳି ଏକ ପ୍ରିୟମ୍ବଦାର-ସ୍ୱର୍ଗ-ପୁରୀରେ ପାଦ ଦେଇ ସେ ଉପଲବ୍ଧି କରିଥିଲା ତାଭଳି ମଣିଷର ସ୍ଥାନ ଏଠି ନାହିଁ । ଭାବିଥିଲା ଭାରତଭଳି ଏକ ଗରିବ ଦେଶ ଯେଉଁଠି ଅନାହାରରେ ଲୋକେ ମୃତ୍ୟୁ ବରଣ କରନ୍ତି, ଚାକିରି ନ ପାଇ ବେକାର ଶିକ୍ଷିତ ଆତ୍ମହତ୍ୟା କରେ, ଟଙ୍କା ଅଭାବରୁ ପୁଅ ବାପାମାଙ୍କର ବା ବାପା ମା, ବେମାର ପୁଅର ଚିକିତ୍ସା ନ କରାଇ ପାରି ମରଣ ମୁଖକୁ ଠେଲି ଦିଅନ୍ତି, ମରୁଡ଼ିବାତ୍ୟାରେ ଲୋକେ ମରନ୍ତି, ସେଠି ପୁଣି ଏତେ ବିଳାସ ଭିତରେ ମଖମଲୀ ଶେଯରେ ମଣିଷ ଜୀବନ ବିତାଏ ? ବିତାଇ ପାରେ ?ତାହେଲେ ଯାହା ସେ ସମ୍ବାଦପତ୍ରରୁ ପଢ଼େ ଓ ଦେଖେ, ଜାଣେ ସେସବୁ ଭୁଲ ? ଭାରତଠାରୁ ଅଲଗା ଏହା କେଉଁ ପ୍ରାଚୁର୍ଯ୍ୟ ନଗରୀ ? ଦି ମୁଠା ଭଲକି ପେଟକୁ ଖାଇବାକୁ ଦିନରାତି କାମ କରିବା ସତ୍ତ୍ୱେ ଯେଉଁଠି ମଜୁରିଆ ପାଏ ନାହିଁ, ଅଭାବ ଯୋଗୁଁ ଯେଉଁ ଦେଶରେ ସ୍କୁଲ ଯାଇପାରେନି ପିଲା, ଛୋଟ ବେଳୁ ରିକ୍ସା ଚଲାଏ, ବସ୍‌ର ହେଲ୍‌ପର ସାଜେ, ହୋଟେଲରେ ଅଇଁଠା ପ୍ଲେଟ ଧୁଏ, ଭିଟାମିନ ଅଭାବରେ ଯେଉଁ ଦେଶର ଶିଶୁ ଅନ୍ଧାରକଣା ରୋଗ ଭୋଗ କରେ, ଯୁବକର ଅକାଳ ବାର୍ଦ୍ଧକ୍ୟ ଆସିଥାଏ, ସେ ଦେଶରେ ବି କିଛି ମଣିଷ ସୁନାଚାମଚ ରୂପା ପ୍ଲେଟ ବ୍ୟବହାର କରନ୍ତି, ମହଲ ଭଳି ଘରେ ରହନ୍ତି, ସୁଇସ୍ ବ୍ୟାଙ୍କରେ ଟଙ୍କା ରଖନ୍ତି, ସଉକ ଲାଗି ଘୋଡ଼ା ରେସ୍‌ରେ ପାଣି ଭଳି ଟଙ୍କା ବାଜି ଲଗାନ୍ତି । ସେଦିନ କ୍ଲବ ଘରେ ଅଧାଖିଆ କେକ୍‌କୁ ସୌଖୀନ ମଣିଷ ଫିଙ୍ଗି ଦେଉଥିଲା ବେଳେ ତା ଆଖିରେ ନାଚି ଯାଇଥିଲା ଅଇଁଠା ପତ୍ର ପାଖରେ ମଣିଷ ଓ କୁକୁରର ଲଢ଼େଇ ଦୃଶ୍ୟ । ତାର ମନ ବିଦ୍ରୋହ କରି ଉଠିଲା । ସେଦିନ ସେ ଉପଲବ୍ଧି କରିଥିଲା ସଭ୍ୟତା ଯେତେ ଆଗଉଛି, ମଣିଷ ଯେତେ ମଡ଼ର୍ଣ୍ଣ ହେଉଛି ସେତେ ସଂଖ୍ୟାରେ କୁକୁର ବିଲେଇଙ୍କର ମୂଲ୍ୟ ବଢ଼ି ଯାଉଛି । ମଣିଷ ପଶୁ ପାଳୁଛି । ଦେଶ ଯେତେ ଶିକ୍ଷିତ ହେଉଛି ମନ ସେତେ ସଂକୀର୍ଣ୍ଣ ହେଉ

ଚାଲିଛି ।

ସେଦିନ ଫେରି ଆସିଲା ପରେ, ସେ ଭାବିଥିଲା ଏଠି ସେ କେବଳ ସଙ୍ଗହୀନ ହୋଇ ଯାଇନାହିଁ, ଅବାଞ୍ଛିତ ବି ହୋଇଯାଇଛି ଏଠିକା ସାମାଜିକ ଚଳଣି ଓ ପରିବେଶ ମଧ୍ୟରେ । କୋଠା ଚାକଚକ୍ୟର ଯେଉଁ ସୁଖ ସ୍ୱପ୍ନ ତା ଭିତରେ ଜୀଇଁଥିଲା ତାହାର ମୂଲ୍ୟ ତା ପାଖରେ ଫିକା ପଡ଼ିଯାଇଛି । ନିଅଣ୍ଟିଆ ବଜେଟରେ ଚଳୁଥିବା ସେ ଜୀବନରେ କେତେ ଯେ ଶାନ୍ତି, ତୃପ୍ତି ଥିଲା ତାହା ଭାବି ସେ ଝୁରି ହେଉଥିଲା । ମଣିଷ ଯେତେ ଉପରକୁ ଉଠେ ସେତେ ସେ ଏକୁଟିଆ ହୋଇଯାଏ, ଏକଥାତ ଜଣା ନଥିଲା । ମଣିଷ ଏଠି ପ୍ରାଚୁର୍ଯ୍ୟ, ଆଭିଜାତ୍ୟ, ବିଳାସ, ଅହଂକାରର ଏକ ଦୁର୍ଗ ତିଆରି କରିଛି ତା ଚାରିପଟେ । ତାକୁ ଫଟାଇ ଭିତରକୁ ଯିବାର ସାଧ ତାର ନାହିଁ ।

ହେଲେ ଏପରି କେତେଦିନ ଚାଲିବ ? ସକାଳ ସଞ୍ଜ ଧାଇଁ, ଟଙ୍କା ରୋଜଗାର କରି କରି ଜୀବନର ମୂଲ୍ୟବାନ ସମୟଟା କମ୍ପାନିର ଉନ୍ନତିରେ ଖର୍ଚ୍ଚ କରି ଦିନେ ସୁଖେନ୍ଦୁ ବୁଢ଼ା ହୋଇଯିବେ । ସେ ବି ଖାନ୍‌ସାମାକୁ ପ୍ରତିଦିନର ରୋଷେଇ ମେନ୍ୟୁ ଦେଇ ନିଜକୁ ସଜେଇ ଓ ମଡ଼ର୍ଣ୍ଣ ସୋସାଇଟିର ରୀତିନୀତି କାୟିଦାକୁ ଆପଣାର କରୁ କରୁ ବୁଢ଼ୀ ହୋଇଯିବ । ପିଲାମାନେ ବି ବଡ଼ ହୋଇ ବାହାସାହା ହେଇ କିଏ କେଉଁଆଡ଼େ ରହିବେ । ଆଜିର ପିଲାମାନଙ୍କୁ କଣ ଭରସା ଅଛି ? ସୁଖେନ୍ଦୁ ରିଟାୟାର କଲାପରେ ପାଖରେ ପ୍ରଚୁର ସମୟ ଥିବ ଅଥଚ ଜୀବନକୁ ଉପଭୋଗ କରିବାର ବଜେଟ ସରିଯାଇଥିବ । ଏମିତି ଜୀବନକୁ ନେଇ ବଞ୍ଚିବାରେ କିଛି ମାନେ ଅଛି ? ହେଲେ ଏକଥା ସେ କାହାକୁ ବୁଝାଇ ପାରିବ ? ନା ସୁଖେନ୍ଦୁକୁ ନା ଗାଡ଼ି ମଡ଼େଲ, ବିଉଟିପାର୍ଲରର ହିସାବ ରଖୁଥିବା ତଥାକଥିତ ଆଧୁନିକ ମଣିଷକୁ ? ନିଜେ ଯେମିତି ବୁଝିହୁଏ, ଅନୁଭବ କରିହୁଏ ତାହା କଣ ଅବିକଳ ଭାବରେ କାହାରିକୁ ବୁଝାଇ ହୁଏ ନା ନିଜର ଅନୁଭବକୁ ଠିକ୍ କି ପ୍ରକାଶ କରିହୁଏ ?

ନିଜକୁ ସାନ୍ତ୍ୱନା ଦେବା ପାଇଁ ସେ କେବଳ ଝରକା ଖୋଲି ରେଖାଙ୍କିତ ପାହାଡ଼କୁ ଚାହିଁ ରହେ । ପାହାଡ଼ କେବେ ସବୁଜ ତ କେବେ ଧୂସର । ଟ୍ରେନ ହୁଇସିଲ ମାରି ଯେତେବେଳେ ଯାଏ ତାର ମନେ ହୁଏ ଟ୍ରେନ ସହ ମଣିଷର ସଂପର୍କ ଖୁବ୍ ପୁରୁଣା । ଟ୍ରେନ ତଳେ ସତେକି ତାର କୁଆଁରୀ ଜୀବନର ସ୍ୱପ୍ନ ପେଷି ହୋଇଯାଏ । ସେତିକି ବେଳେ ସେ ଭାବେ ସୁଖେନ୍ଦୁକୁ ପଚାରିବ, ପାଇବା ସହିତ ଏତେ ହରାଇବା ରହିଥାଏ କାହିଁକି ? ଏଇ ହରାଇବା ପାଇଁ କଣ ମଣିଷ ପାଗଳ ଭଳି ଗୋଡ଼ାଇ ଥାଏ ?

ଏହିଭଳି ଭାବରେ ଦିନ ବର୍ଷ କଟିଚାଲେ । ପିଲାମାନେ ସ୍କୁଲ ଛାଡ଼ି, କଲେଜରେ ପାଦ ଦିଅନ୍ତି । ସୁଖେନ୍ଦୁ ସେମିତି ଅଧିକରୁ ଅଧିକ କାର୍ଯ୍ୟବ୍ୟସ୍ତ ମଣିଷ ହୋଇ ରହିଥାନ୍ତି । ସାମ୍ନା ଫ୍ଲାଟ୍‌ର ପର୍ଦ୍ଦା ବଦଳେ, ନେମ୍ ପ୍ଲେଟ, ଗାଡ଼ିର ମଡ଼େଲ ବଦଳେ । ଯେ ଯାହାର

ବନ୍ଦ କୋଠରି ଭିତରେ ଜୀବନକୁ ଖର୍ଚ୍ଚ କରି ଚାଲନ୍ତି ଆପଣା ଢ଼ଙ୍ଗରେ, ଆପଣା ରୁଚିରେ । ସେ ମଧ୍ୟ ଝରକା ଦେଇ ସେହି ପୁରୁଣା ପାହାଡ଼, ଟ୍ରେନ୍‌କୁ ଚାହିଁ ରହେ । ସେହିଭଳି ପ୍ରଶ୍ନ ପରେ ପ୍ରଶ୍ନ ନିଜକୁ ପଚାରି ଚାଲିଥାଏ । ଶାନ୍ତା ! ମଣିଷ କେବେଠାରୁ ଦୁର୍ଗ ପାଲଟି ଗଲା ? କେବେ ?



## ବାପା

କେମିତି ସାମ୍ନା କରିବ ସେ ବାପାଙ୍କୁ ? ବାପାଙ୍କ ଆଖି ସହ ନିଜ ଆଖି ମିଶିଗଲା ବେଳେ କଣ ଦେଖିବ ସେଠି ? ଭାଙ୍ଗି ପଡୁଥିବେ ବାପା ? ନିଜର ଯୁବତୀ ଝିଅର ବିଧବା ରୂପକୁ ଏ ବୁଢ଼ା ବୟସରେ ସାମ୍ନା କରିବା ତାଙ୍କ ପକ୍ଷରେ କେତେ ବେଦନାଦାୟକ ନ ହେବ ? ମୁହଁ ବୁଲାଇ ନେବେ ସେ ? ଥପ୍ ଥପ୍ ହେଇ ନିଗିଡ଼ି ପଡୁଥିବ ଲୁହ । ତା କାନ୍ଧ ଉପରେ ନିଜ ହାତ ରଖି ସେ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲାବେଳେ ଆଖିର ପାଣିକୁ ଅଟକାଇ ପାରୁ ନଥିବେ ।

ଟ୍ରେନ୍ ଦ୍ରୁତ ଗତିରେ ଆଗେଇ ଚାଲିଛି । ଆଉ ଘଣ୍ଟେ ଦି ଘଣ୍ଟା ପରେ ତା ପରିଚିତ ସହର ପହଞ୍ଚିବ, ବାପା ଷ୍ଟେସନ ଆସିଥିବେ ନିଶ୍ଚେ । ଜିନିଷପତ୍ର ଓହ୍ଲାଇଲାବେଳେ ତାର ସାଦା କପାଳ, ଖାଲି ହାତକୁ ଅନାଇ ଦୀର୍ଘଶ୍ୱାସକୁ ସେ ପ୍ରାଣପଣେ ଚାପି ଧରିବାକୁ ଚେଷ୍ଟା କରୁଥିବେ । ହରିଚାଚା ବି କିଛି ନ ହେବାର ଅଭିନୟ କରି ଜିନିଷପତ୍ର ଗାଡ଼ିରେ ସଜାଡ଼ି ରଖୁଥିବେ ।

ଦି ବର୍ଷ ତଳେ ବାହାହୋଇ ସେ ଏଇ ଷ୍ଟେସନରେ ବାପା, ହରିଚାଚା ଓ ଆତ୍ମୀୟମାନଙ୍କଠାରୁ ବିଦାୟ ନେଇଥିଲା । ବଧୂ ବେଶରେ ଗହଣା ଓ ଜରିଶାଢ଼ୀରେ ବେଢ଼େଇ ହୋଇ କେତେ କେତେ ସ୍ୱପ୍ନ ନେଇ ଯାଇଥିଲା । ଅନିମେଷଙ୍କ ସହିତ ପ୍ରଥମେ ଯେତେବେଳେ ସେ ଜ୍ୟାଇଁ ଡାକରା ବେଳେ ଆସିଥିଲା ସେଦିନ ବାପାଙ୍କ ଛାତି ଖୁସିରେ ଫାଟିପଡୁଥିଲା । ତାଙ୍କର ନିଃସଙ୍ଗ ଘରେ ଆନନ୍ଦ ସବୁ ଜୁଡ଼େଇ ପଡୁଥିଲା । ବାପା ତ ଝିଅ ଜ୍ୟାଇଁ ଆସିଛନ୍ତି ବୋଲି ବାରଣ ନ ମାନି ନିଜେ ମାଛ ପରିବା କିଣିବାକୁ ଯାଇଥିଲେ । ଅନିମେଷ ତାଙ୍କ ହରିଚାଚା ଓ ବାପାଙ୍କୁ ନେଇ ଫଟୋ ଉଠାଇବାରେ ବ୍ୟସ୍ତ ଥିଲେ ସେଥର । ଆଲ୍‌ବମ୍ ଭର୍ତ୍ତି ଫଟୋ । ଦୁହେଁ ବ୍ୟାଡ଼ମିଟନ ଖେଳିଲାବେଳେ ବାପା ଚେୟାର ପକାଇ ତାଙ୍କ ଦୁହିଁଙ୍କୁ ପରିତୃପ୍ତ ଆଖିରେ ଦେଖୁଥିଲେ । ସନ୍ଧ୍ୟାବେଳେ ତିନିହେଁ ଲନ୍‌ରେ ବସି ଗପ ଜମାଇ ଦେଲାବେଳେ ହରିଚାଚା ଗରମ ପକୋଡ଼ି, ଚା ଦେଇଯାଉଥିଲେ । ସେତେବେଳେ ବାପାଙ୍କ ଘର ଭିତରେ ବାହାରେ ପରିତୃପ୍ତିର, ଆନନ୍ଦର ଅନ୍ତରଙ୍ଗ ସବୁ ଯେମିତି ବିଛାଇ ଯାଇଥିଲା ଯାହାକୁ ଆଞ୍ଜୁଳା କରି ନେଲାବେଳେ ବାପା ଖୁସିରେ ଆତ୍ମହରା ହୋଇ ଯାଉଥିଲେ । ମା' ଗଲାବେଳେ ଓ ଏକମାତ୍ର ପୁଅକୁ ଇଞ୍ଜିନିୟରିଂ କଲେଜ ଦଙ୍ଗାରେ ସବୁଦିନ ପାଇଁ ହଜାଇ ଦେଲାପରେ ବାପାଙ୍କ ଚେହେରାରେ ଯା ପରେ ସେ ଆଉ ଏଭଳି ଖୁସି ଦେଖି ନଥିଲା ।

ପୁଣି କିଛିଦିନ ରହିଲା ପରେ ସେମାନେ ଫେରି ଯାଇଥିଲେ । ଏହିଭଳି ଦୁଇବର୍ଷ ଭିତରେ ସେମାନେ ଯେତେଥର ଆସିଯାଇଛନ୍ତି ସବୁଥର ରେଲୱେ ଷ୍ଟେସନକୁ ବାପା ଛାଡ଼ିବାକୁ ଆସିଛନ୍ତି ଅସୁସ୍ଥତା ସତ୍ତ୍ୱେ । ନିଜର ୱାକିଂ ଷ୍ଟିକ୍‌ରେ ଭରାଦେଇ ବାପା ହାତ ହଲାଇ ଚାଲିଥାନ୍ତି ସେମାନେ ଅଦୃଶ୍ୟ ହେବାଯାଏଁ । ଦୁଇଟା ବର୍ଷ କେମିତି କେତେ ସଅଳ ଯେ ଚାଲିଗଲା କିଛି ଜଣାପଡ଼ିଲା ନାହିଁ । ବାପାଙ୍କର ନିଃସଙ୍ଗ ଜୀବନରେ ସେମାନଙ୍କ ଉପସ୍ଥିତି ନବବସନ୍ତର ସ୍ପର୍ଶ ଆଣିଦେଇଥିଲା । ଯେମିତି ବୈଶାଖର ଡହ ଡହ ଖରା ପରେ ଅସରାଏ ଶୀତଳ ବର୍ଷା । ଏଭଳି ଖୁସି ଖୁସିର ଜୀବନର ପୂର୍ଣ୍ଣଛେଦ ପଡ଼ିଗଲା ସବୁଦିନ ପାଇଁ... । ଅନିମେଷ ଏକୁଟିଆ କରି ବିଦାୟ ଘେନିଗଲେ । କେମିତି ହଠାତ୍ ସବୁ ଓଲଟିଗଲା, ଉଜାଡ଼ି ହୋଇଗଲା ସ୍ୱପ୍ନର ଘର, ଭୁଷୁଡ଼ି ଗଲା କେତେ କଣ କଳ୍ପନା ଜଳ୍ପନା । ମନେହେଲା ଏ ଦି'ବର୍ଷ ଦିବାସ୍ୱପ୍ନ ଥିଲା । ଚଳଚ୍ଚିତ୍ରର କୌଣସି ସୁନ୍ଦର ଦୃଶ୍ୟ ଥିଲା । ବାସ୍ତବତା ସହ ତାର କୌଣସି ସାମଞ୍ଜସ୍ୟ ନଥିଲା ।

ଟେଲିଗ୍ରାମ ମାଧ୍ୟମରେ ବାପାଙ୍କୁ ତା ଶାଶୁଘରବାଲା ଏ ଖବର ଜଣାଇ ଦେଇଥିଲେ । ବାପା ସେ ଦାରୁଣ ସମ୍ବାଦଟିକୁ କେମିତି ପଢ଼ିଥିବେ କେଜାଣି । ଆଉ ତା'ପରେ କେମିତି ଏତେ ବଡ଼ ନିଃସଙ୍ଗ ଘରେ ନିଜକୁ ସମ୍ଭାଳିଥିବେ । ହରିଚାଚାକୁ କାମ ଦିନରେ ବାପା ପଠାଇଥିଲେ । ହରିଚାଚା ଘରର ଚାକର ହେଇ ଯେମିତି କାନ୍ଦୁଥିଲା ସେଥୁ ସେ ଅନୁମାନ କରିଥିଲା ବାପାଙ୍କର ଅବସ୍ଥା । ହରିଚାଚା ହାତରେ ବାପା ଲେଖିଥିଲେ, 'ତୁ ଯଦି ଉଚିତ୍ ମନେକରିବୁ ତେବେ ପରିସ୍ଥିତି ଦେଖି ସବୁଦିନ ପାଇଁ ମୋ କୋଳକୁ ଫେରିଆସିବୁ । ତୋ ବୁଢ଼ା ବାପା ତୋ ବାଟ ଚାହିଁ ରହିଛି । ଭାବିବୁ ଏଇଟା ଗୋଟାଏ ଦୁର୍ଘଟଣା ଥିଲା । ଯାହାକୁ ଭୁଲିଯିବା ହିଁ ଭଲ ।'

ଅପା ! ଷ୍ଟେସନ ଆସିଗଲାଣି । ଚନ୍ଦ୍ରାଛନ୍ନ ଭାବାବେଶ ଭିତରୁ ବାସ୍ତବ ଦୁନିଆକୁ ଫେରିଆସିଲା ବେବୀ । ସେହି ଷ୍ଟେସନ୍ । ମନେହେଉଛି ଅନେକ ବର୍ଷରୁ ଆସିନାହିଁ । ସେମିତି ବିକାକିଣାର ବିକଟ ଚିତ୍କାର । ବିଭିନ୍ନ ବିଜ୍ଞାପନର କର୍ଣ୍ଣଫଟା ମାଇକ ସ୍ୱର । ସେମିତି ରହିଛି ଷ୍ଟେସନାରୀ ଦୋକାନ ଲାଗି କଫି ହାଉସ । ଏଇଠି ଯେତେଥର ସେ ଆସିଛି ବିବାହ ପୂର୍ବରୁ ଓ ପରେ ଅନିମେଷ ସହିତ କଫି ପିଇଛି । ଏଇ ଜାଗାଟା ଅନିମେଷଙ୍କର ଖୁବ୍ ପ୍ରିୟ ଥିଲା । ଅନିମେଷ ଘରକୁ ଗଲାବେଳେ ପଢ଼ିଲାବେଳେ ସେ ଯେତେଥର ଷ୍ଟେସନ ଆସିଛି ଏଇ କଫି ହାଉସରେ ବସି ହିଁ ସେମାନେ ଟ୍ରେନକୁ ଅପେକ୍ଷା କରିଛନ୍ତି । ହେଲେ ସେହି ଜାଗାଟା ଆଜି ଏତେ ଅଚିହ୍ନା ଲାଗୁଛି କାହିଁକି ? ଯେଉଁ ଷ୍ଟେସନ ତା ପାଇଁ ଏତେ ପୁରୁଣା ଆଜି ଏତେ ଅଜଣା ଲାଗୁଛି କାହିଁକି ? ଏ ଭିତରେ କ'ଣ ସତରେ ସବୁ କିଛି ବଦଳି ଯାଇଛି ? ନା କିଛି ବଦଳିନି, ସେ ନିଜେହିଁ ବଦଳି ଯାଇଛି । ନିଜର ସ୍ୱପ୍ନ ସମ୍ଭାବନାର ଦୁନିଆ ଭାଙ୍ଗିଗଲେ କଣ ଏମିତି ଦୃଷ୍ଟିକୋଣ ବି ବଦଳି ଯାଏ ?

ଆରେ ! ମାଇଁ ଲିଟିଲ୍ ବେବୀ ! ତୋତେ ସେପଟୁ ମୁଁ ଖୋଜି ଆସିଲିଣି । ବାପା ! ଓଳଗି ହେଲା ! ସେ ତାକୁ କୁଣ୍ଢେଇ ଧରିଲେ ସବୁଥର ଭଳି । ଯେମିତି କିଛି ହେଇନାହିଁ । ସେମିତି ପ୍ରଫୁଲ୍ଲ ହସ ହସ । ବଢ଼ାଇଦେଲେ କାଡ୍‌ବରିଜ ।

ସେ ଆଶ୍ଚର୍ଯ୍ୟରେ ଅନାଇଲା । ଏବେବି ସେ ବାପାଙ୍କ ଆଖିରେ ଲିଟିଲ୍ ବେବୀ । ତେଣୁ ପିଲାଦିନେ ଯେମିତି ତା ଲାଗି କାଡ୍‌ବରିଜ ଆଣୁଥିଲେ ଏବେବି ଆଣିବାକୁ ଭୁଲିନାହାନ୍ତି । ଅନିମେଷ ସେଥିପାଇଁ ଚିଡ଼ାଉଥିଲେ ଯେ ତମେତ ତମ ବାପାଙ୍କ ଆଖିରେ ଛୋଟ ବେବୀଟେ ଆଉ ତମର ଯେତେବେଳେ ଲିଟିଲ୍ ବେବୀଟେ ହେବ ସେତେବେଳେ ?

ଆଉ ଠିଆ ହୋଇ ରହିଲୁ କାହିଁକି ମା ? ହରି ଜିନିଷପତ୍ର ସବୁ ଗାଡ଼ିରେ ରଖି ସାରିଲାଣି । ବାପା ତା କାନ୍ଧରେ ହାତ ପକାଇ ଧରି ଧରି ତାକୁ ନେଇଯାଉଥିଲେ । ରାସ୍ତାରେ ଗପିବାକୁ ଆରମ୍ଭ କରିଥିଲେ, ଆଉ ମୋର ବୋର ହେବାର ନାହିଁ । ତୁ ତ ଆସିଗଲୁ । ଦେଖିବୁ ଚାଲ୍ ତୋ ପାଇଁ କେତୋଟି ସର୍‌ପ୍ରାଇଜ୍ ରଖିଛି । କେମିତି ଘର ସଜାଇ ଦେଇଛି । ତୋ ରୁମ୍ ସେମିତି ଅଛି । ତୋ ବିନା ତ ରୁମ୍‌ଟା ଖାଲି ଖାଲି ଲାଗୁଥିଲା । ତୁ ଗୋଲାପଜାମ୍ ଭଲପାଉ ବୋଲି ଫ୍ରେସ୍ ତିଆରି କରାଇ ଆଣି ଫ୍ରିଜ୍‌ରେ ରଖିଛି । ସକାକୁ ବଢ଼ିଆ ମାଛଟେ ରଖିଛି । ତୁ ରାନ୍ଧିବୁ । ହରି ହାତରୁ ତ ନିତି ଖାଉଛି । ତୁ ଷୋରିଷ ଆମ୍ବୁଲ ଦେଇ କରିବୁ ତ ମା । ଦେଖିବୁ ଚାଲ୍ କହି ଏ ଭିତରେ କେତେ ପ୍ରକାରର ଗଛ କୁଣ୍ଡରେ ଲଗାଇଛି । ତୁ ତ ଛଅମାସ ହେଲା ଆସିନାହୁଁ ନା । ଦୁଇଟା ସୁନ୍ଦର କ୍ୟାକ୍‌ଟସ ଆଣିଛି । ତୋର ମନେଅଛି ମୋ ଫ୍ରେଣ୍ଡ ଶୁଭେନ୍ଦୁ କଥା ? ଶୁଭୁଅଙ୍କଲ ମ । ସେହିଁ ଦିଲ୍ଲୀରୁ ପଠାଇଛି...

ବାପା ଗପିଚାଲିଥିଲେ । ପାଟିରେ ବାଟୁଳି ପଡୁନଥିଲା । ସେ ଫେର୍ ଏତେ ପ୍ରଗଳ୍ଭ ହେଇପାରନ୍ତି ? ସେ ଖୁସି ରହିଥିବାର ଅଭିନୟ କରୁନାହାନ୍ତି ତ । କେଜାଣି ।

ଫାଟକ ଖୋଲି ଦାଣ୍ଡ ପିଣ୍ଡାରେ ପାଦ ଦେଲାମାତ୍ରେ ସତରେ ସର୍‌ପ୍ରାଇଜ୍‌ଟିଏ ଅପେକ୍ଷା କରିଥିଲା । ପିଞ୍ଜରା ଭିତରୁ ମଇନାଟି ସ୍ୱାଗତ ଜଣାଇଲା, ବେବୀ ଅପା, ବେବୀ ଅପା ।

ହସି ଉଠିଲେ ବାପା ! ଦେଖିଲୁନା ! କେମିତି ତୋତେ ଚିହ୍ନିଲା ଭଳି ୱେଲ୍‌କମ୍ କଲା ।

କିନ୍ତୁ ବାପା ମୋ ନାଁ...

ମୁଁ ତାକୁ ଶିଖାଇ ଦେଇଛି । ମାତ୍ର ତିନିମାସ ହେଲା ସେ ଆମ ଘରକୁ ଆସିଛି । ମୁଁ ଲାଗିପଡ଼ି କେତୋଟି କଥା ତାକୁ ଶିଖାଇଛି ।

ଘର ଭିତରର ଦୃଶ୍ୟ ସେମିତି ଅଛି । ନିଜ ରୁମ୍‌ରେ ପଶି ସେ ଆଶ୍ଚର୍ଯ୍ୟ ହେଲା ।

ସେ ଯେଉଁ ଖଟରେ ଶୋଉଥିଲା ତା ଉପରେ ସୁନ୍ଦର ଚାଦରଟେ ବିଛାହୋଇଛି ଓ ତା ଉପରେ ଗିଟାରଟେ ରଖାଯାଇଛି । ସେ ପାଖକୁ ଗଲା, ଗିଟାର ଉପରେ ଛୋଟ କାର୍ଡ଼ଟେ ଲଗାଯାଇ ଲେଖା ଯାଇଥିଲା, 'ପ୍ରେଜେଣ୍ଟେଡ୍ ଟୁ ବେବୀ, ୟୋର ଲଭିଂ ଡ଼ାଡୀ ।'

ସେ ଫେରି ଚାହିଁଲା ବେଳକୁ ଦ୍ୱାର ମୁହଁରେ ମୁରୁକି ହସୁଥିଲେ ବାପା । କହିଲେ ଦିସ୍ ଇଜ୍ ଅଲସୋ ଏ ସରପ୍ରାଇଜ୍ । କଲେଜରେ ପଢ଼ିଲା ବେଳେ ଗିଟାରର ଝୁଙ୍କ୍ ତୋର କେତେ ଥିଲା ନୁହେଁ ? ସେ ଗିଟାରଟା ଭାଙ୍ଗିଗଲା ପରେ ଆଉ ତୋର କିଣାଯାଇ ପାରି ନଥିଲା । ତୋର ସମୟ କାଟିବା ପାଇଁ....

ବାପା କଣ କହିବାକୁ ଯାଇ ଅଟକି ଗଲେ ପୁଣି ପ୍ରକୃତିସ୍ଥ ହୋଇ କହିଲେ ତୁ ଗାଧୋଇ ପଡ଼ତ । ମୋତେ ବି ଭୋକ ହେଲାଣି । ତୋତେ ଅପେକ୍ଷାକରି ମୁଁ ବି କିଛି ଖାଇନାହିଁ ।

ଗାଧୁଆ ଘରେ ସାୱାର ତଳେ ସେ ମନଭରି ଭିଜୁଥିଲା । ଅନେକ ଦିନରୁ ଏଭଳି ଗାଧୁଆ ହୋଇ ନଥିଲା । ଛୋଟ ଥିଲାବେଳେ ତାକୁ ସାୱାର ଖୋଲି ଦେଇ ତଳେ ଠିଆ ହେବାକୁ ବେଶ୍ ଭଲ ଲାଗୁଥିଲା । ଏମିତି କି ଥଣ୍ଡା ଧରି ଦୁଇ ତିନିଟା ଛିଙ୍କ ହୋଇଯାଏ । ବୋଉ ପାଟିକରେ, ଆଖି ଦେଖାଏ । ଆଜି ମନଭରି ସେ ଗାଧୋଉଥିଲା । ଅଳ୍ପଦିନ ତଳେ ଘଟିଯାଇଥିବା ଦୁର୍ଘଟଣା ସେ ଯେମିତି ଏଇଠି ସାୱାରର ଝିରି ପାଣିରେ ଭସାଇ ଦେଉଥିଲା । ସେମାନେ ତାର ଚୁଡ଼ି ଭାଙ୍ଗି ଦେଲେ । ମଥାର ସିନ୍ଦୁର ପୋଛିଦେଲେ । ଅଲକ୍ଷଣୀ ଆସି ଆମଘର ଭସାଇ ଦେଲା କହି ଶାଶୁ ନଣନ୍ଦ ବାହୁନି କାନ୍ଦୁଥିଲା ବେଳେ ତା ଆଖିରେ ଲୁହ ନଥିଲା । ଆଶ୍ଚର୍ଯ୍ୟ ଆଉ ଭୟରେ ସେ ଜଡ଼ ପାଲଟି ଯାଇଥିଲା । ଏବେ କିନ୍ତୁ ସାୱାର ତଳେ ଆଖିର ପାଣି କଳ ପାଣି ମିଶି ବୋହି ଯାଉଥିଲା । ମନଭରି କାନ୍ଦିବାର ନିରୋଳା ସମୟ ସେ ପାଇନାହିଁ । ଅନିମେଷଙ୍କ ଲାଗି । କେତେ ସମୟ ଏମିତି ଗଡ଼ିଯାଇଥିଲା କେଜାଣି ଅତୀତର କେତେ ସବୁ ସ୍ମୃତି ଭିତରେ ସେ ହଜି ବବୁରି ଯାଉଥିବା ବେଳେ ବାପା କବାଟ ବାଡ଼େଇଲେ । ବେବୀ, କେତେ ଗାଧୋଇବୁ । ଶର୍ଦ୍ଦି ଧରିବ । ପୋଛିପାଛି ହୋଇ ସେ ବାହାରିଲା ବେଳକୁ ଡ଼ାଇନିଂ ଟେବୁଲ ପାଖରେ ବାପା ବସି ସାରିଥିଲେ । ହରି ଚାଚା ଗରମ ଇଡ୍‌ଲି, ସମ୍ବର, ସିମେଇଁ ରଖିସାରିଥିଲେ । ବାପା ଯେଉଁ ପରିମାଣରେ ଖାଇଲେ ତାହା ଦେଖି ସେ ପୁଣି ଆଶ୍ଚର୍ଯ୍ୟ ହେଲା । ଏମିତିତ ସେ ଖାଆନ୍ତି ନହିଁ । ଡାଇନିଂ ଟେବୁଲରେ ବି ତାଙ୍କର ଅଛିଣ୍ଡାଗପ ଆଉ ପ୍ରଗଳ୍ଭ ଭାବ । ଡ୍ରଇଁ ରୁମରେ ପଶିଲା ବେଳକୁ କ୍ୟାରମ୍ ଉପରେ ଆଖି ପଡ଼ିଲା । ବାପା ତା ପିଉ ପିଉ କହିଲେ ଘରେ ଆଉ କଣ କରିବା । ଏଇଟା ସମୟ ଗଡ଼ାଇଦେବ । ତା ପରେ ମନେ ପଡ଼ିଗଲା ଭଳି ସେ ଉଠିଯାଇ ଦୁଇଟା ବ୍ୟାଡ଼ମିଟନ୍ ରାକେଟ୍ ନେଇ ଆସିଲେ ।

ଏ କଣ ହେବ ?

କାହିଁକି ତୁ ମୁଁ ଖେଳିବା ।

ତମେ ଖେଳିବ ?

ଇଏସ୍ । ତୁ କଣ ଭାବିଲୁ ତୋ ବାପା ବୁଢ଼ା ହେଇଯିବା ସଙ୍ଗେ ସଙ୍ଗେ ଅକାମି ହୋଇଗଲେ ବୋଲି ? ତୋର ବ୍ୟାଡ୍‌ମିଟନ୍ ପ୍ରତି ଅସମ୍ଭବ ଝୁଙ୍କ୍ ମୁଁ ଜାଣେ । ପାର୍ଟନର ଦରକାର ତ । ମୁଁ ଅଛି । ଡାକ୍ତର ବି କହିଛନ୍ତି ଏକ୍ସସରସାଇଜ୍ କରିବା ଲାଗି ।

ଦିନ ପୁରୁଣା ହେବାକୁ ଲାଗିଲା । ବାପା ତାକୁ ସବୁବେଳେ ଗାଇଡ୍ କରିବାକୁ ଆରମ୍ଭ କରି ଦେଇଥିଲେ । ଯେମିତି ସେ ଏକୁଟିଆ ନ ବସେ । କିଛି ପଛ ଦିନକୁ ମନେ ନ ପକାଏ । ତାକୁ ଖୁସିରେ ରଖିବା ଲାଗି ବାପାଙ୍କର ଯତ୍ନ କିଛି କମ୍ ନଥିଲା । ସକାଳୁ ଉଠି ଯଦି ଝରକା ଦେଇ ସେ ନିର୍ଜନ ରାସ୍ତାକୁ କିମ୍ବା ବଡ଼ ବଡ଼ ଦେବଦାରୁ ଗଛକୁ ଚାହିଁ ରହୁଥିଲା, ବାପା ବ୍ୟସ୍ତ କରୁଥିଲେ ମର୍ଣ୍ଣିଓ୍ୱାକରେ ଯିବାକୁ । କହୁଥିଲେ କାମ୍‌ଅନ୍ ବେବୀ । ବି ସ୍ମାର୍ଟ । ସକାଳ ଭଲକି ପାଇନଥାଏ । କୁହୁଡ଼ି ଛାଡ଼ି ନଥାଏ । ବାପା ଜୋତା ମୋଜା ପିନ୍ଧି ଟୋପି ଲଗାଇ ସତରେ ଖୁବ୍ ସ୍ମାର୍ଟ ଲାଗନ୍ତି । କେବେକେବେ ତାକୁ ନେଇ ପାର୍କ ଯାଆନ୍ତି ଆଉ ସେଠୁ ଚାଲି ଚାଲି ଆସିଲାବେଳେ ପାଖ ଝୁମ୍ପୁଡ଼ିରେ ଠିଆ ହୋଇ ଚା ପିଇବାକୁ ମଧ କହନ୍ତି । ଦିନ ଥିଲା ରାସ୍ତାଘାଟରେ କିଛି ଖାଇବାକୁ କି ପାଣି ଟିକେ ପିଇବାକୁ ବାପା ବାରଣ କରୁଥିଲେ । ଗାଳି ଦେଉଥିଲେ । ଆଜି କାଲି ଆଉ ସେ ଆକଟ ନାହିଁ । କେବଳ ସେତିକି ନୁହେଁ ନାସ୍ତିକ ବାପା ତାକୁ ଖୁସ୍ ରଖିବା ଲାଗି ମନ୍ଦିରକୁ ଯାଆନ୍ତି, ମାର୍କେଟିଂକୁ ଗଲାବେଳେ ବି ବାହାରେ ଘେରାଏ ବୁଲିଆସିବାକୁ ବି ତାକୁ ବାଧ କରନ୍ତି । ଭଲ ଭଲ ବହି କିଣିଆଣି ଦିଅନ୍ତି । ପାଖ ଲାଇବ୍ରେରୀରେ ମେମ୍ବର କରିବା ସହିତ ସାଙ୍ଗମାନଙ୍କ ଘରକୁ ଯାଇ ଗପସପ କରି ଆସିବାକୁ କହନ୍ତି । ବାହାଘରର ଫଟୋ ଆଲବମ୍ କାଢ଼ି ଯଦି କେବେ ସେ ପୃଷ୍ଠା ଓଲଟାଏ ତ ଅତୀତର ସେହି ସୁନ୍ଦର ଦିନ ଗୁଡ଼ିକ ସହିତ ହଜି ଯାଇଥାଏ ଅଥବା ବେଦୀ କାମ, ସିନ୍ଦୁର ଦାନର ବିଭିନ୍ନ ଫଟୋ ଉପରେ ଆଖି ସ୍ଥିର ହୋଇ ଯାଇଥାଏ । ତେବେ ବାପାଙ୍କର ଆଖିରେ ତାହା ଯଦି ପଡ଼ିଯାଏ ଧାଇଁଆସି ଆଲ୍‌ବମ୍ ବନ୍ଦ କରି ଦିଅନ୍ତି, କହନ୍ତି ସେ ନିର୍ଜୀବ ଫଟୋରୁ କଣ ମିଳିବ ବେବୀ ? ଆ ସପିଂ କରି ଯିବା । ଦେଖିବା ତୁ ମାଛ କିଣି ଜାଣିଛୁ ନା ନାହିଁ । ସବୁ ବୁଝେ ସେ । ବାପା କଣ ଜାଣନ୍ତିନି ଆଲ୍‌ବମ୍ ବନ୍ଦ କରି ଦେଲେବି ତା ଛାତି ଭିତରେ ଅନିମେଷ ବସି ରହିଛନ୍ତି ବୋଲି ଯାହାକୁ କେବେ ଭୁଲାଯାଇ ପାରେନା । ଅଥଚ ଛୋଟ ପିଲାକୁ ଚକୋଲେଟ୍ ଦେଇ ଭୁଲାଇ ଦେଲାଭଳି ସେ ତାକୁ ମାଛ ପ୍ରସଙ୍ଗ ଉଠାଇ ଭୁଲାଇବାକୁ ଚେଷ୍ଟା କରନ୍ତି । ସେ ବି ଭୁଲିଯାଇଛି ଅଭିନୟ କରି ଫିକ୍‌କିନା ହସି ଉଠିପଡ଼େ ମାର୍କେଟିଂରେ ଯିବାଲାଗି ।

ଦିନେ ସେ ଓ ବାପା ଚେୟାର ପକାଇ ବସିଥିଲା ବେଳେ ପଞ୍ଜୁରିରେ ଥିବା ପୋଷା ମଇନାଟା ଡାକି ଉଠିଲା ବେବୀଅପା-ଅନିମେଷ ଭାଇ-ବେବୀ ଅପା... ଆଉ କଣ କହିଥାନ୍ତା କେଜାଣି ବାପା ଚମକି ଧଡ଼ାସ୍‌କି ଉଠିପଡ଼ି ମଇନାଟାକୁ ଆକଟି ପକାଇଲେ । ବିଚାରୀ ମଇନା ଯେମିତି ବୁଝିବ, କଣ କହିବା ତା ପକ୍ଷରେ ଉଚିତ ଅନୁଚିତ ବୋଲି ? ତାହେଲେ ବାପା ଏଇ ତିନିମାସ ଧରି ଅକ୍ଳାନ୍ତ ପରିଶ୍ରମ କରି ଏ ଦୁଇଟି ନାମ ସେମାନଙ୍କର ସ୍ୱାଗତ ପାଇଁ ମଇନାକୁ ଶିଖାଇଥିଲେ । ଆଜି ଯେ ଅନିମେଷ ନାଁଟି ଅକାମି ହୋଇଯାଇଛି ନିର୍ବୋଧ ମଇନା ବୁଝିବ କେମିତି । ସେତେବେଳେ ସେ ଲକ୍ଷ୍ୟ କରିଥିଲା, ବାପାଙ୍କର ମୁହଁ ନାଲି ପଡ଼ିଯାଇଛି । ତାଙ୍କୁ ଏଭଳି ଅପ୍ରିତିକର ପରିସ୍ଥିତିରୁ ରକ୍ଷା କରିବା ଲାଗି ସେ ଯେମିତି ମଇନା କଣ୍ଠରୁ ଅନିମେଷ ନାଁଟା ଶୁଣିନାହିଁ ସେମିତି ପ୍ରଗଳଭା ହୋଇ ଚିତ୍କାର କରି ଉଠିଲା, ଦେଖତ ବାପା, ସେ ଗଛଟାରେ କେମିତି ଏତେଗୁଡ଼ାଏ ବଗ ବସିଛନ୍ତି । ଗଛ ସାରା ଭର୍ତ୍ତି । ମୁଁ ତ ଭାବିଲି ବଡ଼ ବଡ଼ ଧଳା ଫୁଲ ଫୁଟିଛି ବୋଲି । ବାପା ପଞ୍ଜୁରି ପାଖରୁ ମୁହଁ ଫେରାଇ ଗଛଟା ଆଡ଼େ ଅନାଇ କହି ଉଠିଲେ ସତେ ତ ! କେତେ ସୁନ୍ଦର ଦେଖାଯାଉଛି ।

ସେହି ସୁନ୍ଦର ଦୃଶ୍ୟ ଭିତରେ ତାର ମନ ହେଲା ଦୁଇଟି ହୃଦୟ କି ସୁନ୍ଦର ଭାବରେ ଧରା ନପଡ଼ିବାର ଅଭିନୟ କରିଗଲେ ।

ବାପା ଦିନେ ପ୍ରସ୍ତାବ ଦେଲେ, ଆମେ କୌଣସି ପିକ୍‌ନିକ୍ ସ୍ପଟ୍‌କୁ ଗଲେ କେମିତି ହୁଅନ୍ତା ? ଏଇ କୌଣସି ହିଲ ଷ୍ଟେସନ୍, ଗେଷ୍ଟ ହାଉସ୍ । ମୋର ବି ବୁଲାହୁଅନ୍ତା, ତୋତେ ବି ଭଲ ଲାଗନ୍ତା । ମୋର ଜଣେ ସାଙ୍ଗ ଅଛି ମଶୋରିର ହିଲ ଷ୍ଟେସନ୍‌ରେ । କୌଣସି ଏକ ଗେଷ୍ଟହାଉସର ମ୍ୟାନେଜର । ସ୍ନୋଫଲ୍ ଆଉ ସ୍କେଟିଂକୁ ତୁ ତ ପସନ୍ଦ କରିବୁ । ବାପାଙ୍କ କଥା ଶୁଣି ତାର ହଠାତ୍ ମନେ ପଡ଼ିଗଲା କାଶ୍ମୀରର ସ୍ନୋଫଲ କଥା । ଅନିମେଷ ଛ ମାସ ଟ୍ରେନିଂରେ ଥିଲାବେଳେ ସେ ତାଙ୍କ ସହ ଯାଇଥିଲା । ନୂଆ ନୂଆ ବାହାଘର ହୋଇଥାଏ । ସେଇଠି ସେମାନେ ସ୍କେଟିଂ ଶିଖିଥିଲେ । ବାପା ହିଲଷ୍ଟେସନ୍ ଯାଇ ପିକ୍‌ନିକ୍ କରି ଅତୀତକୁ ଭୁଲିଯିବାର ଯୋଜନା କଲାବେଳେ ଜାଣି ପାରିଲେନି ଯେ ତାଙ୍କ ଝିଅର କୌଣସି ଏକ ମଧୁର ସ୍ମୃତିକୁ ମନେ ପକାଇଦେଲେ ବୋଲି ।

ଥରେ ସେ ବାପା ଉଠିବା ଆଗରୁ ଉଠିପଡ଼ି ଛାତ ଉପରେ ବୁଲୁଥିଲା । ଭଲକି ସକାଳ ହୋଇ ନଥିଲା । ରାସ୍ତାରେ କାଁଭାଁ ଲୋକ ଚଲାବୁଲା କରୁଥିଲେ । ଶ୍ୟାମଳ ଚୁପ୍ ଚାପ୍ ଆକାଶ ଆଉ ଧୂସର ପାହାଡ଼ । ତାକୁ ଲାଗି ଟ୍ରେନ୍ ଲାଇନ୍ । ଏଇ ଛାତ ଉପରେ ସେ ଆଉ ଅନିମେଷ କେତେଥର ଏମିତି ସକାଳ ଉପଭୋଗ କରିଛନ୍ତି । ଜୋର କି ସେ ତାକୁ ଉଠାଇ ଛାତ ଉପରକୁ ଆସିବାକୁ ବାଧ କରୁଥିଲେ । ବେଶ୍ ଭଲ ଲାଗୁଥିଲା କଅଁଳ

ସକାଳ ଆଉ ସୂର୍ଯ୍ୟୋଦୟ । ହରି ଚାଚା ଚା ନେଇ ଆସିଥିଲା । ସେମାନେ ଗପ ଭିତରେ ମସ୍‌ଗୁଲ ହୋଇ ଚା କୁ ଥଣ୍ଡା କରି ଦେଉଥିଲେ ।

ଆରେ ତୁ ଏଇଠି ବେବୀ । କଣ କରୁଛୁ ?

ଆକାଶ ଦେଖୁଛି । ଦେଖନା କେତେ ସୁନ୍ଦର । ମନେ ହେଉଛି ସିଡ଼ି ଲମ୍ବାଇ ଛୁଇଁବାକୁ ।

ଧାତ୍ ପାଗଳୀ । ତୋର ପିଲାଳିଆମି ଗଲାନାହିଁ । ତୋର ସ୍କୁଲର ସେ ଝିଲାପି ଦୌଡ଼ କଥା ମନେ ଅଛି ? ହାତବନ୍ଧା ହେଇଥିବା ପଛଆଡ଼େ ଡ଼େଇଁ କି ମୁହଁରେ ଛୁଇଁବା । ଜିଭ ବଢ଼ାଇଲା ବେଳେ ଝିଲାପି ବନ୍ଧା ହୋଇଥିବା ସୂତା ଉପରକୁ ଚାଲି ଯାଉଥିବ । ତୁ ମାଙ୍କଡ଼ ଭଳି ଡେଉଁଥାଉ ଆଉ... ବାପା ଗପିବାକୁ ଆରମ୍ଭ କରି ଦେଇଥିଲେ । ସେ ବୁଝି ପାରିଥିଲା ଅନେକ କଥା ମନେ ରଖିଛନ୍ତି ବାପା । ଯିଏ ଏଡ଼େ ଛୋଟ ଛୋଟ ଘଟଣା ଭୁଲି ପାରନ୍ତି ନାହିଁ ସେ... ସେତିକି ବେଳେ ବେଦନାର ଲହଡ଼ି ତା ଭିତରୁ ଉଠି ଆସିଲା । ମନେ ପଡ଼ିଗଲା ବୋଉ, ନାଚି ଉଠିଲା ସାନ ଭାଇଟିର ଚେହେରା, ଠିଆହେଲେ ଆସି ଅନିମେଷ ଆଉ ସମସ୍ତଙ୍କୁ ପଛକରି ସାମ୍ନାରେ ବାପା । ଗପିଚାଲିଥିଲେ ତାର ସ୍କୁଲ ଜୀବନର ଦୁଷ୍ଟାମି ସଂପର୍କରେ । ଦୁହେଁ ହସି ହସି ପାହାଚରୁ ଓହ୍ଲାଇ ଥିଲେ । ଏଭଳି ଭାବରେ ଦିନ ପୁରୁଣା ହେବାକୁ ଆରମ୍ଭ କରୁଥିଲା ।

ସେ ଦିନ ଘର ଝାଡୁ ଝାଡୁ ହଠାତ୍ ବାପାଙ୍କର ଡ଼େଲି ନୋଟଖାତା ଉପରେ ଲେଖା ଯାଇଥିବା କେତୋଟି ଧାଡ଼ି ଉପରେ ତାର ଆଖି ସ୍ଥିର ହୋଇଗଲା । ଲେଖା ଥିଲା- 'ମୋରି ଆଗରେ ଏତେ ଅଳ୍ପ ବୟସରେ ବେବୀ ବିଧବା ହୋଇଗଲା । ତାର ପିଲା ପିଲି ହେଲେ ଗୋଟେ ହୋଇଥାନ୍ତା ତା ମୁହଁ ଚାହିଁ ଦିନ କାଟି ଦେଇଥାନ୍ତା । କେତେ ଦୁଃଖିନୀ ଝିଅଟି ମୋର । ମାକୁ ଖାଇଲା, ସାନଭାଇଟି ବି ଚାଲିଗଲା, ଶେଷରେ ଅନିମେଷ ବି । ମୁଁ ତ ପାଚିଲା ପଳ । ମୋ ପରେ କେମିତି ଜୀବନ କାଟିବ ଗେହ୍ଲାଝିଅ ମୋର ? କିଏ ତାକୁ ସାନ୍ତ୍ୱନା ଦେବ ? ସାହାରା ହେବ ? ତାକୁ ଖୁସି କରିବା ଲାଗି ମୋ ଭଳି କିଏ ପ୍ରତିଦିନ ଜୋକର ସାଜିବ ? ବାପାଟିଏ ଝିଅ ଆଗରେ ଜୋକର ସାଜିବ, ଏ ବିଡ଼ମ୍ବନା ବି ଭାଗ୍ୟରେ ଥିଲା । କାହାକୁ କହିବି ? କାହାକୁ ବୁଝାଇବି ଯେ ମୋ ଝିଅ ପାଇଁ ମୁଁ ଏବେ ମରିବାକୁ ଚାହେନା ବୋଲି ? ବେବୀ ମୋର ! ତୁ କହ ମୁଁ କଣ କରିବି ? କେତେଦିନ ମୁଖା ପିନ୍ଧି ତୋ ପାଖରେ ଏମିତି ଡ଼େଉଁଥିବି ?'

# ଜଣେ ନଡ଼ିଆ କୋରା ବିକୁଥିବା ପିଲା ସଂପର୍କରେ

ନଡ଼ିଆ କୋରା ଖାଇବାର ମୋର କେବେ ନଥିଲା । ଅଫିସ୍ ଗଲାବେଳେ ନିର୍ଦ୍ଦିଷ୍ଟ ସମୟରେ ନଡ଼ିଆକୋରା ଧରି ପିଲାଟି ମୁଁ ଯାଉଥିବା ଟାଉନ୍ ବସ୍‌ରେ ଚଢୁଥିଲା ଆଉ ନଡ଼ିଆକୋରା, ତାଜା ନଡ଼ିଆ କୋରା ବୋଲି ବସର ଏମୁଣ୍ଡରୁ ସେମୁଣ୍ଡକୁ ବୁଲି ବୁଲି ଡାକୁଥିଲା । କିଏ ବା ନିତିଦିନ ଅଫିସ୍ ଗଲାବେଳେ ନଡ଼ିଆ କୋରା କିଣିବ । ତାର ସିଲ୍‌ଭର ଥାଳିଆ ଉପରେ ସଜା ହୋଇଥିବା ନଡ଼ିଆକୋରା, କାଖ ପାଖରେ ଚିରି ଯାଇଥିବା ସାର୍ଟ, କରୁଣ ପେଙ୍କୁଆ ଆଖି ଯୋଡ଼ାକ ଦେଖି କାହିଁକି କେଜାଣି ଟଙ୍କାଟିଏ ବଢ଼ାଇ ଦେଇ ନଡ଼ିଆକୋରା ଯୋଡ଼ାଏ ଆଣୁଥିଲି । କ୍ରମଶଃ ଏଇଟା ମୋର ନିତିଦିନିଆ ଅଭ୍ୟାସରେ ପରିଣତ ହୋଇଗଲା ଓ ପିଲାଟିର ମୁଁ ସବୁଦିନିଆ ଗରାଖ ପାଲଟି ଗଲି । ସେ ବି ମୋ ଭଳି ଗ୍ରାହକ ପାଇ ଆଶା ଓ ଆଗ୍ରହ ନେଇ ସେ ବସ୍‌ରେ ପ୍ରତିଦିନ ଚଢୁଥିଲା । ଧୀରେ ଧୀରେ ଆମର ପରିଚୟ ବଢ଼ିଲା । ମୁଁ ତା ସହିତ ଟିକେ ଦୁଃଖସୁଖ ହେବାକୁ ଆରମ୍ଭ କଲି । ତାର ମଧ ମୋ ପାଖରେ ସଙ୍କୋଚ କଟିଗଲା ଆସ୍ତେ ଆସ୍ତେ । ଘରେ ତାର ବିଧବା ମା, ସାନ ଭାଇ ଭଉଣୀ ଓ ଆଖିକୁ ଭଲ ଦିଶୁ ନଥିବା ଜେଜେମା । ଗାଁରେ ଅଳ୍ପ ଜମି । ବର୍ଷସାରା ଚଳେନି । ସେ ଅଷ୍ଟମ ଶ୍ରେଣୀରେ ପଢୁଥିଲା ବେଳେ ହିଁ ବାପା ଚାଲିଗଲେ । ତାପରେ ମା' ତାକୁ ଆଉ ସ୍କୁଲ ପଠାଇଲା ନାହିଁ । ଦିନରେ ନଡ଼ିଆକୋରା ବିକିବା ଓ ରାତିରେ ଠୁଙ୍ଗା ତିଆରି ଶିଖିବା ଭିତରେ ସ୍କୁଲର ପାଠ ବଡ଼ ଅଦରକାରୀ ମନେହେଲା । ଆଉ ବି ସେ କଣ କରିଥାନ୍ତା ।

କଥା ପ୍ରସଙ୍ଗରେ ପଚାରିଥିଲି, ତୋର ସତରେ ପଢ଼ିବାକୁ ଇଚ୍ଛା ହୁଏନା ?

ହଠାତ୍ ସେ କିଛି କହି ପାରି ନଥିଲା । ସ୍କୁଲ ବ୍ୟାଗ ପିଠିରେ ଝୁଲାଇ ସେହି ବସ୍ ଭିତରେ ଆଇରନ୍ ସାର୍ଟପ୍ୟାଣ୍ଟ ପିନ୍ଧି ଠିଆ ହୋଇଥିବା ପିଲାଟି ଉପରେ ତାର ଆଖି ସ୍ଥିର ହୋଇ ଯାଇଥିଲା । ସହାନୁଭୂତିରେ ମନଟା ମୋର ଆର୍ଦ୍ର ହୋଇ ଉଠିଲା । ଆହା ! ବାପ ଥିଲେ ସେ ବି ଏମିତି ବହିବସ୍ତାନି ଧରି ସ୍କୁଲ ଯାଇଥାନ୍ତା । ଏମିତି ସ୍କୁଲ ଯିବା ରାସ୍ତାରେ କାହାଠାରୁ ନଡ଼ିଆ କୋରା କିଣି ସେ ଖାଇଥାନ୍ତା ।

ଦିନେ ସେ ମୋତେ ପଚାରିଥିଲା, ବାବୁ ! ଆପଣଙ୍କର ପୁଅ ଅଛି ? ମୁଁ କହିଲି, ହଁ ତୋରି ଭଳି ।

ସ୍କୁଲରେ ପଢ଼େ ?

ହସିଲି । ସ୍କୁଲରେ ନ ପଢ଼ି ଆଉ କରିବ କଣ ?

ନାଇଁ ଯେ...

ସେ ଯେମିତି କଣ ପଚାରିବାକୁ ଚାହୁଁଥିଲା । ମୁଁ ତାକୁ ବାରମ୍ବାର ପ୍ରଶ୍ନ କରିବାରୁ ଥଙ୍ଗେଇ ଥଙ୍ଗେଇ କହିଲା, ନାଇଁଯେ... ଯଦି ମୋ ବାପା ଭଳି ଆପଣ ବି ହଠାତ୍ ମରିଯାଆନ୍ତେ ତାହାଲେ ଆପଣଙ୍କ ପୁଅ କଣ ପାଠ ନ ପଢ଼ି ମୋ ଭଳି ନଡ଼ିଆକୋରା ବିକିବ ?

ମୁଁ ଏକ ପ୍ରକାର ଚମକି ପଡ଼ିଲି । ବିରକ୍ତ ଓ କ୍ରୋଧରେ ମନ ଭରିଗଲା । ପରକ୍ଷଣରେ ନିଜକୁ ପ୍ରକୃତିସ୍ଥ କରି ନେଲି । ସତେତ, କେତେ ବଡ଼ ପ୍ରଶ୍ନଟେ ନ ପଚାରିଛି ସେ । ଯାହା ତା ସହିତ ବା ତା ଜୀବନରେ ଘଟିଛି ତାହା ଅନ୍ୟର ଜୀବନରେ ପୁନରାବୃତ୍ତି ହୁଏନାହିଁ ବୋଲି କେତେ ସରଳ ଭାବରେ ଜାଣିବାକୁ ନ ଚାହିଁଛି ପିଲାଟି । ତା ସହିତ ଯେଉଁ ଅନ୍ୟାୟ ହେଇଛି ତାହା ସମସ୍ତ ବାପା ନ ଥିବା ପିଲାମାନଙ୍କ ଜୀବନରେ ଘଟେ କି ନାହିଁ ବୋଲି ଜାଣିବାଲାଗି ବ୍ୟାକୁଳତାର ଯେମିତି ଶେଷ ନାହିଁ ତାର । ବିଚରା କେମିତି ଜାଣିବ ଯେ ଦାରିଦ୍ର୍ୟ ତା ପାଇଁ ସବୁଠୁ ବଡ଼ ଅଭିଶାପ ବୋଲି ।

ସେ ମୋ ମୁହଁକୁ ବଲବଲ ଚାହିଁ ରହିଥିଲା । ମୁଁ ତା ପ୍ରଶ୍ନର ଗୋଟିଏ କିଛି ଉତ୍ତର ହଠାତ୍ ଦେଇ ପାରି ନଥିଲି । ସେ କିଛି ସମୟ ଅବାକ ହେଇ ମୋତେ ଚାହିଁ ରହିଲା ପରେ ସତେକି ଛାଏଁ ଛାଏଁ ଉତ୍ତର ପାଇଗଲା । ନଡ଼ିଆକୋରା ପସରା ଉଠାଇ ନେଲାବେଳେ ସେ କହିଥିଲା; ଆମେ ବହୁତ ଗରିବ ନା ବାବୁ । ସେଇଥିପାଇଁ ଗରିବ ପିଲାର ବାପ ମରିଗଲେ ସେ ପଢ଼ି ପାରେନା । ତାକୁ ପଢ଼ା ବୟସରେ ନଡ଼ିଆ କୋରା ବିକିବାକୁ ହୁଏ, ଠୁଙ୍ଗା ତିଆରି କରିବାକୁ ପଡ଼େ । ହେଲେ ମୋର ବହୁତ ପାଠ ପଢ଼ିବାକୁ ଇଚ୍ଛା ଥିଲା । ଚାକିରି କରିଥାନ୍ତି । ମା'ର ଗହଣା ମୁକୁଳାଇ ଆଣିଥାନ୍ତି । ଆମ ବନ୍ଧକ ଜମି ଆମେ ଫେରି ପାଇଥାନ୍ତୁ । ବାପା ଥିଲାବେଳେ ପାଠପଢ଼ି ବାବୁ ବନିବାକୁ ସବୁ ବେଳେ କହୁଥିଲେ । କିନ୍ତୁ କିଛି ହେଲା ନାହିଁ । ବାବୁ ହେବି କଣ ନଡ଼ିଆ କୋରା ବିକିଲି । ତା କଣ୍ଠ କେମିତି ଭାରି ଭାରି ଶୁଭିଲା । ମଇଳା ଗାମୁଛାରେ ଆଖି ପୋଛି ନେଲା ସେ । 'ନଡ଼ିଆ କୋରା ନେବ, ନଡ଼ିଆ କୋରା, ତାଜା ନଡ଼ିଆ କୋରା' ଡାକି ଡାକି ସେ ବସରୁ ଓହ୍ଲାଇ ଗଲା । ସତେକି ତା ଜୀବନରେ ନିଷ୍ଠୁର ବାସ୍ତବତାକୁ ସେ 'ତାଜା ନଡ଼ିଆ କୋରା' ଡାକ ଭିତରେ ହଜାଇ ଦେବାକୁ ଚାହୁଁଥିଲା । ସେହି ଡାକ ଭିତରେ ତା କିଶୋର ଜୀବନର ସବୁ ସ୍ୱପ୍ନ, ସମ୍ଭାବନା ଅଜାଣତରେ ଚାପି ହେଇ ଯାଉଥିଲା ।

ଦିନେ ସେ ସବୁଦିନ ଭଳି ନଡ଼ିଆ କୋରାର ପୁଡ଼ିଆଟି ମୋ ହାତକୁ ବଢ଼ାଇ ଦେଉ ଦେଉ କହିଥିଲା, ଜାଣନ୍ତି ବାବୁ ! ମୁଁ ସିନା ପଢ଼ି ପାରିଲିନି କିନ୍ତୁ ଦେଖିବେ ଏଇ

ନଡ଼ିଆ କୋରା ବିକି ମୁଁ ମୋର ସାନ ଭାଇକୁ ଖୁବ୍ ପଢ଼ାଇବି, ଖୁଉବ୍ । ବାପା ଯେମିତି ମୋତେ ବାବୁ କରିବେ ବୋଲି କହୁଥିଲେ ମୁଁ ବି ମୋ ସାନ ଭାଇକୁ ବାବୁ ବନାଇବି । ମୁଁ କଣ ପାରିବି ନାହିଁ ବାବୁ ? ତା ମୁହଁରେ ସ୍ୱପ୍ନ ଭଉଁରୀ ସୃଷ୍ଟି କରିଥିଲା ।

ହଁ, ନିଶ୍ଚେ ପାରିବୁ, ନିଶ୍ଚେ । ଚେଷ୍ଟା ଥିଲେ ସବୁ କିଛି ସମ୍ଭବ ହୁଏରେ । ମୋ କଥା ଶୁଣି ତାର ଶୁଖିଲା ଓଠରେ ମେଞ୍ଚାଏ ହସ ଖେଳାଇ ପଡ଼ିଲା । କେମିତି ଏକ ଭାବ ବିହ୍ୱଳତା, କେମିତି ଏକ ସ୍ୱପ୍ନର ଛାପିଛାପିକା ରଙ୍ଗ ବୁଣି ହୋଇଗଲା । ମୁଁ ମୁଗ୍ଧ ହେଇ ତାକୁ ଅନାଇ ରହିଥିଲି । ସ୍ୱପ୍ନର ଛବି କିଶୋର ମୁହଁରେ ଏଡ଼େ ସୁନ୍ଦର ଦିଶେ । ଏତେ ମନଲୋଭା ସତରେ ଭାବର ଦୁନିଆ !

ଏମିତି ଭାବରେ ଗଡ଼ିଯାଏ ଦିନ, ମାସ, ବର୍ଷ । ଯାରି ଭିତରେ ପିଲାଟି ମୋତେ ତା ନଡ଼ିଆ କୋରା ସହିତ ଅଜାଣତରେ କେତେ କେତେ ସ୍ୱପ୍ନ ବିକି ଚାଲେ । ମୁଁ ଯେପରି ସଂସାରରେ ତା ପାଇଁ ଏକମାତ୍ର ଶ୍ରୋତା । ଯାହା ପାଖରେ ସେ ମନଖୋଲି ନିରୋଳାରେ କିଛି ଗପି ପାରିବ । ସେଥିଲାଗି ସେ ଗୋଟିଏ ଦିନ ବ୍ୟବଧାନରେ ମୋ ପାଇଁ ଗୋଟିଏ ବର୍ଷର ଭାବିବାର ଖୋରାକ ଆଣି ଯୋଗାଉଥିଲା । ଆମ ଭିତରେ ବୟସ-ବ୍ୟବଧାନର ପାଚେରି ଉଠି ଯାଇଥିଲା । ବୟସ, ଶିକ୍ଷା, ସାମାଜିକ ଷ୍ଟାଟସର ସବୁ କିଛି ତାରତମ୍ୟ ଭାଙ୍ଗି ଚୁରମାର ହେଇ ଯାଇଥିଲା । କେଉଁ ଏକ ଅଜଣା ଆକର୍ଷଣର ଡ଼ୋରରେ ଆମେ ବାନ୍ଧିହୋଇ ଯାଇଥିଲୁ ।

ଦିନେ କିନ୍ତୁ ହଠାତ୍ ଏକ ଅଘଟଣ ଘଟିଲା । ବସ୍‌ରୁ ଓହ୍ଲାଉ ଓହ୍ଲାଉ ବସ୍ ଷ୍ଟାର୍ଟ ଦେଇ ସାରିଥିଲା । ନଡ଼ିଆକୋରାର ଥାଳୀ ସମେତ ଖସି ପଡ଼ିଥିଲା ସେ । ବସର ପଛଚକ ତା ଉପରେ ମାଡ଼ି ଯାଇ ଅନ୍ତଃବୃକୁଳାତକ ପଦାକୁ ବାହାରି ପଡ଼ିଥିଲା । ରକ୍ତ ଜୁଡ଼ୁବୁଡ଼ୁ ହେଇ ଖେଳାଇ ଯାଇଥିଲା ନଡ଼ିଆକୋରା, ଖୁଚୁରା ପଇସା ଆଉ ତା ଜୀବନର ସବୁତକ ସ୍ୱପ୍ନ । ଟିକିଏ ଆଗରୁ କାଗଜରେ ଗୁଡ଼ାଇ ବଢ଼ାଇ ଦେଇଥିବା ପୁଡ଼ିଆଟି ସେ ପର୍ଯ୍ୟନ୍ତ ମୋ ହାତରେ ଥିଲା ।

ଭିଡ଼ ଠେଲି ତା ପାଖକୁ ଯେତେବେଳେ ଗଲି ସେ ଦୃଶ୍ୟ ଦେଖିବା ସମ୍ଭବ ହେଇ ନଥିଲା ମୋ ପକ୍ଷରେ । ପାଟିତୁଣ୍ଡ, ଡ୍ରାଇଭରକୁ ମାଡ଼, ଆହା ଆହା ଭିତରେ ଜନତାର ଭିଡ଼ ଯେତେବେଳେ ଲମ୍ବି ଯାଉଥିଲା, ସେଠୁ ମୁଁ ଖସି ଚାଲି ଆସିଥିଲି । ଯେମିତି ନିଜ ପୁଅଟିକୁ ମୁଁ ସବୁଦିନ ଲାଗି ହଜାଇ ଦେଲି । କେତେ ଶୀଘ୍ର ଜଣକର ସ୍ୱପ୍ନ-ରାତି ପାହିଗଲା ! ନଡ଼ିଆକୋରା ପୁଡ଼ିଆଟି ଉପରେ ଠପ୍ ଠପ୍ ହେଇ ଖସି ପଡ଼ିଲା ଆଖିର ପାଣି । ସେ ପିଲାଟି ସହିତ ମୋର ସଂପର୍କ କ'ଣ ? କେଉଁ ଜନ୍ମରେ କଣ ଥିଲା ସେ ମୋର ?

ତା ପରଦିନ ବସ୍‌ରେ ପିଲାଟିକୁ ନେଇ ଚର୍ଚ୍ଚା ଆରମ୍ଭ ହେଇ ଯାଇଥିଲା ବେଳେ

ମୁଁ ତାର ଦେଖି ନଥିବା ବିଧବା ମା, ବୁଢ଼ୀ ଜେଜେମା, ଛୋଟ ଛୋଟ ଭାଇ ଭଉଣୀଙ୍କ କଥା ମନେ ପକାଉଥିଲି । ନଡ଼ିଆକୋରାର ପୁଡ଼ିଆଟେ ବଢ଼ାଇ ଦେବାକୁ କେହି ନଥିଲେ । କେମିତି ଏକ ଖାଲି ଖାଲି ଭାବ ମୋତେ ମାଡ଼ି ଧରିଥିଲା । କେହି ଫେରିବାଲା ବସ୍‌ରେ ଉଠିଲେ ଓ ଗଳା ଫଟାଇ ଜିନିଷ ବିକିଲା ବେଳେ ଅତୀତରେ ଜଣକର ଛାଇ ସେହି ଜାଗାରେ ଦେଖି ମୁଁ ଚମକି ଉଠୁଥିଲି ।

କିଛି ଦିନ ପରେ ମୁଁ 'ତା ନଡ଼ିଆକୋରା'ର ଡାକ ଶୁଣି ହଠାତ୍ ଚମକି ପଡ଼ିଲି । ତାଠାରୁ ଅପେକ୍ଷାକୃତ ସାନ ପିଲାଟିଏ । ହାତରେ ସିଲଭର ଥାଳି, ସଜାହୋଇ ରହିଛି କିଛି ନଡ଼ିଆକୋରା । ସେମିତି ମଇଳା ସାର୍ଟ, କାଖଚିରା, ତାଳିପକା ପ୍ୟାଣ୍ଟ ଆଉ କାନ୍ଧରେ ଗାମୁଛା । ପିଲାଟି ପ୍ରଥମଥର ପାଇଁ ସେହି ବସ୍‌ରେ ଉଠିଥିଲା ଆଉ ତାର ଅନଭ୍ୟସ୍ତ କଣ୍ଠରେ ଡାକ ଛାଡୁଥିଲା ।

କଣ୍ଡକ୍ଟର ମୋ ପାଖକୁ ଘୁଞ୍ଚି ଆସି କହୁଥିଲା, ଯା ଆଗରୁ ଯେଉଁ ପିଲାଟି ନଡ଼ିଆକୋରା ବିକୁ ନଥିଲା, ଇଏ ତାର ସାନଭାଇ ।

କଣ୍ଡକ୍ଟରର କଥା ଶୁଣି ମୁଁ କେଉଁ ଏକ ଦୃଶ୍ୟର କଳ୍ପନା କରି ପୁଣି ଥରେ ଚମକି ପଡ଼ିଲି ।



# ଅଥଚ ମାତୃତ୍ୱ

ଆଶା ମାଉସୀ ପ୍ରାୟ ସନ୍ଧ୍ୟାରେ ଆମ ଘରକୁ ବୁଲି ଆସନ୍ତି । ଆସିଲା ମାତ୍ରେ ମଜାଳିଆ ଗପ ଆଉ ଥଟ୍ଟା ପରିହାସ ଭିତରେ ଆମର ଡାଇନିଙ୍ଗ୍ ଟେବୁଲ ଜମି ଉଠେ । ଆସିବା ସମୟକୁ କାହିଁକି ଅପେକ୍ଷା କରିବା ଆମର ଏକ ପ୍ରକାର ନିତିଦିନିଆ ଅଭ୍ୟାସରେ ପରିଣତ ହେଇଗଲାଣି । କୌଣସି ଦିନ ଅସୁବିଧାବଶତଃ ଯଦି ସେ ନ ଆସନ୍ତି ତେବେ ତାଙ୍କର ଅନୁପସ୍ଥିତିକୁ ଆମେ ସମସ୍ତେ ଅନୁଭବ କରିଥାଉ । ମାଉସୀ ଆସିବା ସମୟରେ ଆମେ କେହି ଯଦି ପଢ଼ାଟେବୁଲ ପାଖରେ ଦୁର୍ଭାଗ୍ୟବଶତଃ ଥାଉ ତେବେ ବହି ଭିତରୁ ହିଁ ଉଙ୍କି ମାରୁ ଓ ମାଉସୀଙ୍କର ପ୍ରତିଟି କଥାକୁ କାନ ଡ଼େରୁ । ମାନିବାକୁ ହେବ ଆଶା ମାଉସୀ ଖୁବ୍ ସ୍ନେହୀ ଆଉ ବହୁତ ବହୁତ ମଜା ଗପ କହି ପାରନ୍ତି ।

ଆଶା ମାଉସୀ ଅବଶ୍ୟ ଆମର ନିଜ ମାଉସୀ ନୁହନ୍ତି । ତଥାପି ଅତି ଆକସ୍ମିକ ଭାବରେ ତାଙ୍କ ସହିତ ଆମ ପରିବାରର ଘନିଷ୍ଠତା ଆସି ଯାଇଛି । ଦିଲ୍ଲୀରେ ମୋ ବଡ଼ ମାଉସୀ ରହନ୍ତି । ସେଠିକାର ପଡ଼ୋଶିନୀ ହିସାବରେ ମା ଦୁର୍ଗାପୂଜାରେ ଯିବା ଅବସରରେ ଆଶା ମାଉସୀଙ୍କ ସହିତ ପରିଚୟ ହେଇଥିଲା । ପୁଣି ସେ ଯେତେବେଳେ ରିଟାୟାର୍ଡ଼ ପରେ ଆମ ସହରକୁ ଚାଲି ଆସିଲେ ଏବଂ ଘର ଖଣ୍ଡିଏ କଲେ ସେ ପରିଚୟ ଘନିଷ୍ଠତାର ରୂପ ନେଲା ।

ଆଶା ମାଉସୀଙ୍କର ଆକର୍ଷଣୀୟ କଥାବାର୍ତ୍ତା, ସ୍ନେହୀଭାବ ଆମକୁ ତା଼ଙ୍କ ପାଖକୁ ଟାଣିନିଏ । ତାଙ୍କର ପ୍ରତିଟି କଥାକୁ କ୍ଷୀର ପିଇଗଲା ଭଳି ଆମେ ପିଇଯାଉ । ବିଶେଷକରି ଛୋଟ ପିଲାମାନଙ୍କୁ ସେ ବହୁତ ଆଦର କରନ୍ତି । ଏପରିକି ମୋ ସାନଭାଇକୁ ଆସିଲେ କେବେକେବେ କୋଳରେ ଗୀତ ବୋଲି ଶୋଇ ପକାନ୍ତି । ଯେଉଁଦିନ ଟ୍ୟୁସନ ସାର ଶୀଘ୍ର ଆସି ଯାଇଥାନ୍ତି ଓ ମାଉସୀ ପରେ ଆସନ୍ତି, ସେଦିନ ଜାଣିବ ଆମ କପାଳରେ ଚଡ଼କ ପଡ଼ିଛି । ମନ ତ ପିତା ହେଇଯାଏ । ଭଗବାନଙ୍କୁ ମାଢ଼ା ଗାଳିଦେଉ ପୁଣି ଅବସବୁ ଯେତେ କଲେବି ଭୁଲ ହେଇଯାଏ ମନକୁ ମନ ।

ମାଉସୀଙ୍କର ବଡ଼ପୁଅ ବୁର୍ଲାରେ । ଚାକିରି ସହିତ ସେ ଜଣ ରିସର୍ଚ୍ଚ କରୁଛନ୍ତି । ତା ତଳ ପୁଅଟି କୁଆଡ଼େ କେଉଁ ପଞ୍ଜାବୀ ଝିଅକୁ ବାହାହେଇ କାନାଡ଼ାରେ ରହୁଛି । ଚିଠି ଖଣ୍ଡିଏ ବି ଦିଏନି । ମାଉସୀ ସେଥିପାଇଁ ଅନେକ ଦୁଃଖ କରନ୍ତି । କହନ୍ତି, ଆଜିକାଲି ପୁଅଝିଅ ଉପରେ କିଛି ହେଲେ ଭରସା ନାହିଁ । ମୁଣ୍ଡକୁ ହାତ ପାଇଲେ କିଏ କାହାର ? ଗର୍ଭ ଯନ୍ତ୍ରଣା ସହି ଜନ୍ମ କରିବ, କେତେ କଷ୍ଟରେ ପାଳିବ, ମଣିଷ କରିବ । ଅଥଚ ଡେଣା ଲାଗିଲେ

ସେମାନେ ଉଡ଼ିଲେ । ସ୍ତ୍ରୀ ହିଁ ଜୀବନର ସର୍ବସ୍ୱ ହେଇଯାଏ । ସେତେବେଳେ ମା' କଥା ଆଉ ମନେ ପଡ଼େନାହିଁ ।

ମାଉସୀଙ୍କ ବଡ଼ଝିଅ ବମ୍ବେରେ ପୁଅଝିଅ ନେଇ ବେଶ୍ ସୁଖରେ ଅଛି । ଜୋଇଁ ବି ତାଙ୍କର ସବା ସାନଝିଅ ସ୍ୱାତୀ ବାଣୀବିହାରର ହଷ୍ଟେଲରେ ରହି ପଢୁଛି । ଏଇଟା ତାର ଶେଷ ବର୍ଷ । ତେଣୁ ପିଲାପିଲି ଏତେ ଥିଲେ ବି ଆଶା ମାଉସୀ ଆଉ ମଉସା ତାଙ୍କର ବରହମ୍ପୁରସ୍ଥ ଘରେ ଏକୁଟିଆ । ତେବେ ପିଲାମାନେ ଭଲ ପଢ଼ନ୍ତି । ନିଜ ଗୋଡ଼ରେ ମଧ ଠିଆ ହେଲେଣି । ଦୁଇପୁଅ ଆଉ ଦୁଇଝିଅଙ୍କୁ ନେଇ ତାଙ୍କର ସୁନାର ସଂସାର । ତଥାପି ଘର ତାଙ୍କର ଖାଲି । ଏକୁଟିଆ ମନ ଲାଗେନି ଓ ସେତେ ଚିହ୍ନାପରିଚୟ ନ ଥିବାରୁ ମାଉସୀ ଦୂର ହେଲେବି ରିକ୍ସାକରି ଆମ ଘରକୁ ନିତି ଚାଲି ଆସନ୍ତି । ଏ ବୁଢ଼ା ବୟସରେ ଏତେ ପୁଅ ଝିଅ ଜନ୍ମ କରି ବି ମଉସା ଶୀତରେ, ଖରାରେ, ବର୍ଷାରେ ଥୁରୁ ଥୁରୁ ହୋଇକି ମାର୍କେଟ କରନ୍ତି, ହସ୍ପିଟାଲ ଯାଆନ୍ତି, ଭଲମନ୍ଦ ବୁଝନ୍ତି । ତାଛଡ଼ା ଆଜିକାଲି ସମୟରେ ବିଶ୍ୱସ୍ତ ଚାକର ପିଲାଟେ ମିଳିବା କାଠିକର ପାଠ ।

ମାଉସୀ ବେଳେବେଳେ କେମିତି ଉଦାସ ଲାଗନ୍ତି । ମା'ଙ୍କୁ କହନ୍ତି, ପୁଅଝିଅ ଜନମ କଲେ କଣ ହେଲା ଦେଖୁଛତ ମୋ ଅବସ୍ଥା । ପର୍ବପର୍ବାଣି, ଭଲମନ୍ଦ ଦିନ ଗୁଡ଼ାକରେ କିମ୍ୱା ଘରେ ଭଲ ତରକାରୀଟେ, ପିଠାଟେ କଲେ ହାତ ଅଟକି ହୋଇଯାଏ । ପେଟକୁ ଦାନା ଯାଏ ନାହିଁ । ପିଲାମାନଙ୍କ କଥା ମନେ ପଡ଼େ । କେଉଁଠି କ'ଣ ଖାଉଥିବେ କେଜାଣି !

ଦିନେ ମାଉସୀ ଆସି କହିଲେ, ସ୍ୱାତୀ ଚିଠି ଦେଇଛି ସେ ତା'ର ବାଣୀବିହାରରେ ମନମୁତାବକ ସାଥିଟିଏ ଠିକ କରିଛି । ମଉସା କୁଆଡ଼େ ଆଦୌ ଦୁଃଖ କଲେ ନାହିଁ । ଓଲଟି କହିଲେ ସ୍ୱାତୀ ଯଦି ଠିକ୍ କରିଛି ଆମର କର୍ତ୍ତବ୍ୟ ହେଲା ତାକୁ ବାହା କରିଦେବା । କାରଣ ଏଇ ଯୌତୁକ ବଜାରରେ ଉପଯୁକ୍ତ ପାତ୍ରର ଅଭାବ ହେଲାଣି । ତାଛଡ଼ା ଯୁଗ ବଦଳିଲାଣି । ଆମେ ଯଦି ଅରାଜି ହେବା କେବେ ହୁଏତ ଟେଲିଗ୍ରାମ ମିଳିବ ସେମାନେ ପୁରୀ ମନ୍ଦିରରେ କିମ୍ୱା ରେଜେଷ୍ଟ୍ରି ମ୍ୟାରେଜ୍ କରିଛନ୍ତି ।

ମାଉସୀଙ୍କ କଥା ଶୁଣି ମା କହିଲେ, ସତକଥା ! ଆପଣ ରାଜି ହୋଇଯା'ନ୍ତୁ । ନଚେତ୍ ମଝିଆଁ ପୁଅ କାନାଡ଼ାରେ ରହିଲା ଭଳି ସ୍ୱାତୀ ମଧ ଯାଇ କେଉଁଠିନା କେଉଁଠି ରହିବ ଯେ ଦେଖିବା ଦୂର କଥା । ଚିଠି ଖଣ୍ଡେ ବି ପାଇବେନି । ଏ ବୁଢ଼ା ବୟସରେ ଅଯଥାରେ କାହିଁକି ଲୁହ ଗଡ଼ାଇବେ ? ବରଂଚ ପିଲାଟାକୁ ଥରେ ଯାଇ ଦେଖି ଆସନ୍ତୁ । ମାଉସୀ ମା'ଙ୍କ କଥାରେ ସଙ୍ଗେ ସଙ୍ଗେ ରାଜି ହୋଇଗଲେ । ମା' କେତେଥର ସ୍ୱାତୀ ଅପା ତଥା ପିଲାମାନଙ୍କର ଫୋଟୋ ମାଗିଲାଣି । ଆଶା ମାଉସୀ ପ୍ରତିଥର ହସି ହସି କହନ୍ତି, ଫୋଟୋ କାହିଁକି ଦେଖିବ । ସ୍ୱାତୀ ଓ ବଡ଼ ପୁଅ ଆସିଲେ ମୁଁ ତ ନିଜେ ସେମାନଙ୍କୁ

ବୁଲାଇ ଆଣିବି । ବଡ଼ ଝିଅ ବି ଆସିବାର ଅଛି । ମୋ ସ୍ୱାତା ସତ କହୁଛି ଗୋଟିଏ ଚାଉଳରେ ଗଢ଼ା । ବଡ଼ ପୁଅ ତ ତା ବାପର ଅବିକଳ ନକଲ । ମଝିଆଁ ଯେମିତି ଅଲଗା, ସେମିତି ଅଲଗା ହେଇଗଲା ।

ଆଶା ମାଉସୀ ଆମ ଘରେ ପ୍ରାୟ ଏକ ଆଲୋଚନାର ବସ୍ତୁ । ପାଠପଢ଼ା କଥାରେ ବାପା ମା' ଦୁହେଁ ମାଉସୀଙ୍କର ପିଲାମାନଙ୍କର ଦ୍ୱାହି ଦିଅନ୍ତି । ବାପା ଉପଦେଶ ଦିଅନ୍ତି ସେମ୍ତି ଭଲ ପଢ଼ିଲେ ବଡ଼ ବଡ଼ ଜାଗାରେ ନାଁ ଲେଖାଇବ, ବଡ଼ ଚାକିରି କରିବ ଆଉ ସୁଖରେ ରହିବ ।

ସେଦିନ ମାଉସୀ ସଞ୍ଜବେଳେ ନ ଆସି ଖରାବେଳେ ପହଞ୍ଚିଗଲେ । ମା'କୁ କହିଲେ, ତା' ବାପା କହୁଛନ୍ତି ବଡ଼ ପୁଅ ଓ ସ୍ୱାତାର ବାହାଘର ଏକ ସଙ୍ଗେ ସାରି ଦେବାକୁ । ସେ କଟକ ଯାଇ ଝିଅଟିକୁ ଦେଖି ଆସିଛନ୍ତି । ତାଇ ଆମେ କାଲି ଯିବା । ଯଦି ହୁଏ ତ ନିର୍ବନ୍ଧ ପକ୍କା କରି ଆସିବା । ମା' ରବିବାରରେ ଯିବାକୁ ରାଜି ହୋଇଗଲେ ।

ଆମକୁ ବିଭିନ୍ନ କାମରେ ବରାଦ କରି ମା' ଓ ଆଶା ମାଉସୀ କଟକ ବାହାରି ଗଲେ । ଫେରିଲା ପରେ ମା' କହିଲେ ମାଉସୀ କୁଆଡ଼େ ଝିଅକୁ ଖୁବ୍ ପସନ୍ଦ କରିଛନ୍ତି । ଦେଖିଲାମାତ୍ରେ ନିଜ ହାତର ମୁଦିଟାକୁ କାଢ଼ି ଝିଅଟାକୁ ପିନ୍ଧାଇ ଦେଲେ । ମା' କହୁଥିଲେ ବାଣୀବିହାର ଯାଇ ସ୍ୱାତାକୁ ଦେଖି ଆସିବାକୁ । ଯେତେବେଳେ କଟକ ଆସିଛୁ । ମାଉସୀ କିନ୍ତୁ ଆଦୌ ରାଜି ହେଲେନାହିଁ । କହିଲେ, ଏଇନା ତାର ପରୀକ୍ଷା ସମୟ । ତା ଅଝଟଗୁଣ ମୁଁ ଜାଣେ । ନାକକାନ୍ଦୁରୀ । ଆମକୁ ଦେଖିଲାମାତ୍ରେ ଆସିବାକୁ ଗୋଡ଼ କାଢ଼ିବ ନଚେତ୍ ପିଲାଙ୍କ ଭଳି ଝର ଝର ହେଇ କାନ୍ଦିବ । ଯେତେହେଲେ ମା' ମନ । ଗୋଳେଇ ଘାଣ୍ଟି ହେବ । ସହଜେତ ସେ ସପ୍ତାହରେ ଦୁଇଟା ଚିଠି ଲେଖୁଛି ମୋତେ ଏଠି ଭଲ ଲାଗୁନି, ଘର କଥା ମନେ ପଡୁଛି, ଦେହ ଭଲ ରହୁନାହିଁ ଇତ୍ୟାଦି । ମାଉସୀଙ୍କର ଆପରି ଶୁଣି ମା' ଆଉ ଯିବା କଥା ଧରିଲେ ନାହିଁ । ଭାବିଲେ ପିଲାଙ୍କୁ ଶାସନ କରି ରଖିଛନ୍ତି ବୋଲିତ ତାଙ୍କର ପିଲାମାନେ ଆଜି ମଣିଷ ହେଇ ପାରିଛନ୍ତି । ସତକଥା ପିଲାମାନଙ୍କୁ ସ୍ନେହକର ହେଲେ ଗେହ୍ଲା କରି ସେମାନଙ୍କ ପାଠପଢ଼ିବାଟାକୁ ହେଳା କରିଦିଅ ନାହିଁ । ମାଉସୀ ଧୈର୍ଯ୍ୟ ଧରିଛନ୍ତି ବୋଲି ସିନା ଆଜି ତାଙ୍କର ସବୁ ପିଲା ଯୋଗ୍ୟ ହେଇ ଠିଆ ହେଇଛନ୍ତି । ମା' ପ୍ରତିଥର ମାଉସୀଙ୍କ ଘରକୁ ଯିବେ ଯିବେ ବୋଲି କହି ଯାଇ ପାରିନାହାନ୍ତି । ଏମିତିକି ମାଉସୀଙ୍କର ଆସିବାଟା ବର୍ଷେ ପାଖାପାଖି ପୂରିଲାଣି । ମାତ୍ର ମାଉସୀଙ୍କର ଘରଟା ମା ଦେଖି ନାହାନ୍ତି । ଘରର ଦୁନିଆ ଜଞ୍ଜାଳ, ତା ଛଡ଼ା ବାହାରିଲା ବେଳକୁ ଜଣେନା ଜଣେ ବନ୍ଧୁବାନ୍ଧବ କିମ୍ୱା ବାପାଙ୍କର ସାଙ୍ଗ ପହଞ୍ଚି ଯାଇଥିବେ । ରବିବାରିଆ ଏତେ କାମ ଯେ ଖାଉ ଖାଉ ତିନିଟା ।

ଏ ଭିତରେ ଦୁଇଦିନ ହେଲା ମାଉସୀଙ୍କର ଦେଖା ନଥିଲା । ଆଜି କଲେଜ ଶୀଘ୍ର ଛୁଟି ହୋଇଗଲା । ଘରକୁ ଆସି ଆଶା ମାଉସୀଙ୍କ ଘରଆଡ଼େ ବୁଲିଯିବାକୁ ମା'କୁ କହିଲି । ମା'ତ ପ୍ରଥମେ କାମର ବାହାନା କଲେ କିନ୍ତୁ ପରେ ରାଜି ହୋଇଗଲେ ।

ମାଉସୀଙ୍କ ଘର ସାମ୍ନାରେ ପହଞ୍ଚି ଦେଖିଲୁ ମଉସା ବ୍ୟସ୍ତ ଭାବରେ ପଦଚାରଣ କରୁଛନ୍ତି । ଆମକୁ ଦେଖି ଯେମିତି ଆଶ୍ଚର୍ଯ୍ୟ ହେଲେ ସେମିତି କିଛିଟା ଆଶ୍ୱସ୍ତ ହେଲେ । କହିଲେ ଏଇନା ମୁଁ ଆପଣଙ୍କ ଘରକୁ ଯାଇଥାନ୍ତି କିମ୍ବା କାହାକୁ ପଠାଇଥାନ୍ତି । ଶୁଣିଲୁ ମାଉସୀଙ୍କ ଦେହ ଅସୁସ୍ଥ । ମା'ଭିତରେକୁ ଗଲେ । ମୁଁ ମଧ ଦେଖିବାର ଆଗ୍ରହ ଚାପି ପାରିଲି ନାହିଁ ।

ମାଉସୀଙ୍କ ଦେହରେ ଯେମିତି ଟାଚି ସେମିତି ପେଟ ଯନ୍ତ୍ରଣା । ଡାକ୍ତର ଆସି ଦେଖି ଯାଇଛନ୍ତି । ଡାକ୍ତରଖାନା ଯିବାକୁ ତାଙ୍କର ଘୋର ଆପତ୍ତି । ମା' ତାଙ୍କ ଅବସ୍ଥା ଦେଖି ବ୍ୟସ୍ତ ହେଇ ପଡ଼ିଲେ । ମାଉସୀଙ୍କ ଅବସ୍ଥା କେମିତି ଖରାପ ଆଡ଼କୁ ଗତି କରୁଥିଲା । ତାଙ୍କର ହସ ହସ ମୁହଁରେ ଯନ୍ତ୍ରଣା ସବୁ ବିଛେଇ ପଡ଼ିଥିଲା । ମୁଁ ବୁଝିଲି ମାଉସୀ ପିଲାମାନଙ୍କୁ ବୋଧହୁଏ ଖୋଜୁଛନ୍ତି । ମା'ଙ୍କୁ କହିଲି । ମା' ପ୍ରସ୍ତାବ ଦେଲେ ଯା' ମଉସାଙ୍କୁ କହିବୁ ସ୍ମୀତା ଅପା ଓ ଅନ୍ୟ ସମସ୍ତଙ୍କ ପାଖକୁ ଟେଲିଗ୍ରାମ କରିବେ ଶୀଘ୍ର ଆସିବାକୁ । ମଣିଷ ଜୀବନ କେତେବେଳେ କ'ଣ ହେବ କିଏ ଜାଣେ ?

ମା'ଙ୍କ କଥା ଶୁଣି ମାଉସୀ ଏକ ପ୍ରକାର ନାଁ କହି ଯନ୍ତ୍ରଣା ସତ୍ତ୍ୱେ ଚିତ୍କାର କରି ଉଠିଲେ । ମା' ଓ ମୁଁ ଉଭୟେ ଚମକି ଉଠିଲୁ । ମାଉସୀଙ୍କର ଅବସ୍ଥା ଭଲ ନାହିଁ । ଅଥଚ ଏ ସମୟରେ ସେ କଣ ପିଲାମାନଙ୍କୁ ଦେଖିବାକୁ ଚାହାନ୍ତି ନାହିଁ ? ମୁଁ ତାଙ୍କ ମୁହଁକୁ ନିରେଖିଲି । ଦେଖିଲି ଆମ ମୁହଁର ଅଜସ୍ର ପ୍ରଶ୍ନ ଦେଖି ଯେମିତି କହିପାରୁ ନାହାନ୍ତି । ଅଥଚ ତାଙ୍କ ରୋଗ ପାଣ୍ଡୁର ଓଠ ଦୁଇଟି ଥରି ଉଠୁଛି । ମୋର ମନେ ହେଲା ମାଉସୀ ଅନେକ ଦିନର ଜଣେ ମାନସିକ ରୋଗୀ । ତାଙ୍କର ସଦା ହସ ହସ ମୁହଁ ଦେଖି ଆମେ ଏ ଦିଗ ପ୍ରତି କେବେ ନଜର କରି ନାହୁଁ ।

ମାଆ ମୋତେ ଇଙ୍ଗିତରେ ବାହାରକୁ ଆସିବାକୁ କହିଲେ । ମଉସାଙ୍କୁ ଯାଇ ପିଲାମାନଙ୍କ ପାଖକୁ ଶୀଘ୍ର ଟେଲିଗ୍ରାମ କରିବା ପାଇଁ ମୋତେ କହିଲେ । ମୁଁ ମଧ ସମୟ ନଷ୍ଟ ନକରି ପିଣ୍ଡାକୁ ଚାଲି ଆସିଲି । ଦେଖିଲି ମଉସା ଚେୟାରରେ ଢୁଳାଇ ପଡ଼ିଛନ୍ତି । ମୋ ପାଦଶବ୍ଦ ଶୁଣି ସେ ଉଠି ପଡ଼ିଲେ । ମୁଁ କହିଲି, ଆପଣ ସ୍ମୀତା ଅପା ଓ ଅନ୍ୟମାନଙ୍କୁ ଶିଘ୍ର ଟ୍ରଙ୍କଲ କି ଟେଲିଗ୍ରାମ କରନ୍ତୁ ମଉସା । ମା' କହିଲେ ଅନ୍ତତଃ ଏ ସମୟରେ ପିଲାମାନେ ପାଖରେ ଥିଲେ ମାଉସୀ ଟିକେ ସୁସ୍ଥ ଅନୁଭବ କରିବେ ।

ମୋ କଥା ଶୁଣି ମଉସା ଏକ୍‌ଦମ୍ ଆଶ୍ଚର୍ଯ୍ୟ, ବିସ୍ମୟରେ ପଥର ପାଲଟି ଗଲେ କିଛିକ୍ଷଣ । ତାଙ୍କ ମୁହଁ ଥମ୍ ଥମ୍ ହୋଇ ଉଠିଲା । କେମିତି ଗୋଟାଏ ବିଷର୍ଣ୍ଣତାର ଚାଦର ଘୋଡ଼େଇ ଗଲା । କ୍ଷଣକ ପରେ ସେ ନିଜକୁ ପ୍ରକୃତିସ୍ଥ କରି ଆକାଶରୁ ପଡ଼ିଲା ଭଳି କହିଲେ, ତମେ କ'ଣ ଜାଣନା ଆମର ଆଦୌ ପିଲାପିଲି ନାହିଁ ବୋଲି ?



# ସୋନାଗାଛିରୁ ଶାନ୍ତିନିକେତନ

କେମିତି ହେଇଥିବ ଶାନ୍ତିନିକେତନ ?

ଯାହାର ମାଟିରେ ମାଟିରେ ରବିନ୍ଦ୍ର ସଂଗୀତ । ଯାହାର ଆକାଶ, ପାଣିପବନରେ ମିଶି ରହିଥିବ ବିଶ୍ୱକବିଙ୍କର ଅମର ଗାନ୍ ! କେମିତି ହେଇଥିବ କବିର ସେ କଳ୍ପନାର ରାଜ୍ୟ ? ଯେଉଁଠି ପିଲାଦିନରୁ ବୁଢ଼ାଯାଏଁ ଗାଉଥିବେ "ଯଦିତୋର ଡାକ୍‌ଶୁନେ କେଉ ନା ଆସେ ତବେ ଏକ୍‌ଲା ଚଲୋ, ଏକ୍‌ଲା ଚଲୋ, ଏକ୍‌ଲା ଚଲୋରେ..." ।

ସାଧନାର ସ୍ୱପ୍ନରେ ଶାନ୍ତିନିକେତନ, ଭାବନାରେ, ଚେତନାରେ ଶାନ୍ତିନିକେତନର କେତେ କେତେ ରୂପ । ଯେତେ ସେ ବଡ଼ ହେଉଥିଲା ସେତେ ସେ ରବୀଠାକୁରଙ୍କ ଚିତ୍ର, କାବ୍ୟକବିତା, ଗଳ୍ପ ସହିତ ପରିଚିତା ହେଇଥିଲା । ଶାନ୍ତିନିକେତନ ଦେଖିବାର ଅସୀମ ପିପାସା ତା ଭିତରେ ବଢ଼ି ବଢ଼ି ଯାଉଥିଲା ।

ପଡ଼ିଶାରେ ରହୁଥିବା ଉମାଆଣ୍ଟି ହିଁ ତାକୁ ଶାନ୍ତିନିକେତନ ବୁଲାଇ ନେବାର ପ୍ରତିଶ୍ରୁତି ଦେଇଥିଲେ । କଲିକତାରେ ତାଙ୍କର ମାଉସୀଙ୍କ ଘର । ଆଇ.ଏ.ପରୀକ୍ଷା ଦେଇସାରି ଘରେ ବସିଥିଲାବେଳେ ଯିବାର ଠିକ ହେଲା । ବାପା ପ୍ରଥମେ ରାଜି ହେଉ ନଥିଲେ । ମା କହିଲେ ଯାଉ । ଉମାତ ତାକୁ ଝିଅ ଭଳି ଭଲପାଏ । ଭାଗ୍ୟରେ ଥିଲେ ସାଧନା ଆମର ସେହି ଶାନ୍ତିନିକେତନରେ ହିଁ ସଂଗୀତରେ ଏମ୍.ଏ କରିବ । ତା ଗଳା କେତେ ସୁନ୍ଦର । ପୁଣି କବି ଗୁରୁଙ୍କୁତ ସେ କମ୍ ଭଲ ପାଏନି ।

ଟ୍ରେନ୍‌ରେ ଚଢ଼ିଲାଦିନ ସାଧନାର ଟିକେ ମନ ଭିତରେ କେତେ କଣ କଳ୍ପନା ଲମ୍ବି ଚାଲିଥିଲା । ଦ୍ରୁତଗାମୀ ଟ୍ରେନ୍‌ଟି ତା ଭାବନାର ବହୁତ ପଛରେ ପଡ଼ିଯାଇଥିଲା । ଛାଇ ନିଦ ଭିତରେ ସେ ଶାନ୍ତିନିକେତନର ରୂପକୁ ନିଜ କଳ୍ପନାରେ ରଙ୍ଗ ଦେଉଥିଲା । ସତରେ ସେଠି ସେ ସଂଗୀତରେ ଏମ୍.ଏ କରିବ ? ରାସ୍ତାସାରା ଉମାଆଣ୍ଟି କବିଗୁରୁଙ୍କ ଉପରେ କେତେକେତେ ବିଚିତ୍ର କଥା ସବୁ ଶୁଣାଉଥିଲା । ସାଧନାର କଅଁଳ ମୁହଁରେ କୌତୁହଳର ପ୍ରଜାପତି ଉଡ଼ିବୁଲୁଥିଲା ।

ରାସ୍ତା ସରି ଆସିଲା । କୁହୁକ ନଗରୀ କଲିକତାରେ ସେମାନେ ପାଦ ଦେଲେ । କଲିକତା ? ଚାରିଆଡ଼କୁ ଅତି ଆଗ୍ରହ ଆଶ୍ଚର୍ଯ୍ୟରେ ଅନାଉଥିଲା ସାଧନା । ଷ୍ଟେସନରେ ଏକ ପୁରୁଣା ମଡ଼େଲର କଳାଗାଡ଼ି ଅପେକ୍ଷା କରିଥିଲା । ମୋଟୀ ହେଇ ସ୍ତ୍ରୀ ଲୋକଟିକୁ ଉମା ଆଣ୍ଟି ଚିହ୍ନାଇ ଦେଲେ ତାଙ୍କ ମାଉସୀ ବୋଲି । ପ୍ରଣାମ କଲା ସାଧନା । ମାଉସୀ ତା

ମୁଣ୍ଡରେ ସସ୍ନେହରେ ହାତ ବୁଲାଇ ଦେଇ କହିଲେ, ତାହାଲେ ଏଇ ସାଧନା । ଶାନ୍ତିନିକେତନ ଦେଖି ଆସିଛି । ଦିନେ ଦୁଇଦିନ ଭିତରେ ସବୁ ବନ୍ଦୋବସ୍ତ କରିଦେବି । ତା ଭିତରେ ତୁ ସମଗ୍ର କଲିକତାଟାକୁ ବି ବୁଲି ଦେଖି ଦେବୁ । ଏ ନଗରୀ ବହୁ ପୁରୁଣା । ଅନେକ ଐତିହାସିକ ସ୍ଥାନ ଅଛି । ଥରେ କଲିକତାରେ ରହିଗଲେ ଆଉ କେହି ଯିବା ପାଇଁ ଇଚ୍ଛା କରନ୍ତିନାହିଁ ।

ଦୁଇପଟେ କାରୁକାର୍ଯ୍ୟଭରା ନଭସ୍ପର୍ଶୀ ପୁରାତନ ଅଟ୍ଟାଳିକା । ଟାଙ୍ଗାବାଲା, ରିକ୍ସାବାଲା ଗାଡ଼ିମଟରରେ ଯାମ୍ ରାସ୍ତା କାଟି କାଟି କଳାକାରଟି ଆଗେଇଲାବେଳେ ତା ଭିତରୁ ସାଧନା କଲିକତାକୁ ଚିହ୍ନିବାକୁ, ପଢ଼ିବାକୁ ଚେଷ୍ଟା କରୁଥିଲା । ସ୍ଥିରକରି ଥିଲା ନିଶ୍ଚେ ସେ ଏକ ବହି ଲେଖିବ 'କଲିକତାରୁ ଶାନ୍ତିନିକେତନ' । ସେ ଦେଖୁଥିଲା ଅସଂଖ୍ୟ ଜନସମୁଦ୍ର । କେମିତି ଏକ କୋଳାହଳରେ ଭରପୁର ନଗରୀ, ଧୂଳିର ଆକାଶ । ଏତେ କୋଠାବାଡ଼ି, ଏତେ ଗଳିକନ୍ଦି ଆଉ ଦୋକାନ ବଜାର, କିଣାବିକା ? ଗଳି ପରେ ଗଳି ପାରିହେଲାବେଳେ ଆକାଶକୁ ଛୁଇଁବାକୁ ଚେଷ୍ଟା କରିଥିବା କୋଠା ଘରେ ଠିଆ ହେଇଥିବା ମଣିଷମାନଙ୍କୁ ସେ ଆଁକରି ଚାହିଁ ରହିଥିଲା । ଜଣେ ଜଣେ ମଣିଷ ପାଇଁ ଫେର୍ ଏଡ଼େ ବଡ଼ ବଡ଼ ଘର ଦରକାର ହୁଏ ?

ଗାଡ଼ି ଅଟକିଲା ସନ୍ତସନ୍ତିଆ ଗଳିର ଏକ ପୁରୁଣା ଦୋମହଲା କୋଠା ସାମ୍ନାରେ । ସାଧନା ପାହାଚ ପରେ ପାହାଚ ଅତିକ୍ରମ କଲାବେଳେ ଦେଖିଲା ବହୁ କୌତୁହଳୀ ଆଖି । ବୁଝି ପାରିଲାନି । କ୍ଳାନ୍ତି ଯୋଗୁଁ ଖିଆପିଆ ସାରି ଖୁବ୍ ଶୀଘ୍ର ଶୋଇ ପଡ଼ିଲା । କେତେ ସମୟ ଶୋଇଥାନ୍ତା କେଜାଣି । କାହାର ଏକ ନରମ ହାତର ସ୍ପର୍ଶରେ ଚାଉଁକିନା ତାର ନିଦ ଭାଙ୍ଗିଗଲା । ଗୋଟିଏ ଛୋଟ କୁନିଝିଅ । ତାର ଟିକି ହାତରେ ସେ ତାକୁ ଉଠାଉଥିଲା । ଏ ଝିଅ କାହାର ? ସାଧନା ଉଠିପଡ଼ି ତାକୁ କୋଳକୁ ନେଲା । ପଚାରିଲା, ତୋର ନାଁ କଣ ? ପଶି ଆସିଲେ ଜଣେ ଯୁବତୀ । ହସି ହସି କହିଲେ ଏ ମୋ ଝିଅ । ନାଁ ତାର ଚୁମ୍‌କୀ । କେତେବେଳେ ଖସିଆସି ତମକୁ ଉଠାଇ ପକାଇଛି । ଆପଣ କଣ ଏଇଠି... ନିଜ ପ୍ରଶ୍ନ ସଂପୂର୍ଣ୍ଣ କରିବା ଆଗରୁ ପଶି ଆସିଲେ ଉମା ଆଣ୍ଟି । ତାଙ୍କ ପଛରେ ଥିଲା ଏକ ଛୋଟପିଲା ଯାହା ହାତରେ ତାର ଜାଲି ଭିତରେ କାଚଗ୍ଲାସ ଗୁଡ଼ିକରୁ ଗରମ ଚାର ବାମ୍ପ ଉଠୁଥିଲା । ଚା ଗ୍ଲାସ ବଢ଼ାଇ ଦେଉ ଦେଉ ଉମା ଆଣ୍ଟି କହିଲେ, କଣ ଥକ୍‌କା ଚାଲିଗଲା ? ଆମେ ଖୁବ୍ ଶୀଘ୍ର ଶାନ୍ତିନିକେତନ ଯିବା ସାଧନା । ସୋନାଗାଛିରୁ ଶାନ୍ତିନିକେତନ ବା କେତେ ଦୂର !

ତାଙ୍କ କଥାର ଅର୍ଥ ବୁଝିପାରିଲା ନାହିଁ ସାଧନା । ତେବେ ଦିନ ବିତିବା ସହିତ ଦିନେ ଉମା ଆଣ୍ଟି ଉଭେଇ ଗଲେ । ଘରକୁ ଯିବା ପାଇଁ ବ୍ୟସ୍ତ ହେଇ ପଡ଼ିଲା ସେ ।

ମାଉସୀ ତାଙ୍କର କହିଲେ ଖୁବ୍ ଶୀଘ୍ର ତୋର ବ୍ୟସ୍ତତା ସରିଯିବ ଝିଅ । ସତକୁ ସତ ଦିନେ ତାର ସବୁ ବ୍ୟସ୍ତତାର ପରିସମାପ୍ତି ଘଟିଲା । ଶୋଇ ପଡ଼ିଥିବା ଅବସ୍ଥାରେ ତାକୁ ଉଠାଇ ନିଆଗଲା ଏକ ସୁସଜ୍ଜିତ କୋଠରୀକୁ । ସେଠି ବାପ ବୟସର ତିନିଜଣ ଲୋକ ତାକୁ ଅପେକ୍ଷା କରିଥିଲେ । ନିଦଭରା ଆଖିରେ ପ୍ରଥମେ ସେ କିଛି ଭାବି ପାରି ନଥିଲା । ପରେ କିନ୍ତୁ ଅନୁମାନ କରି ସେ ଭୟରେ ଶିହରି ଉଠିଥିଲା । ମୁକ୍ତି ପାଇବା ଲାଗି ଚିତ୍କାର କରିଥିଲା । ମୁଣ୍ଡ ବାଡ଼େଇଥିଲା । ସେମାନଙ୍କୁ 'ବାପା' ବୋଲି କହି ଗୋଡ଼ ଧରିଥିଲା । ନା'... ସବୁ ବ୍ୟର୍ଥ ହେଇଥିଲା । ତାର କଅଁଳ ଦେହ ଉପରୁ ଛିଟ ଓାଲଓ୍ୱାର କମିଜ ଉତାରି ନିଆଗଲା ।

ଅଚେତ ହୋଇ ସେ କେତେ ସମୟ ପଡ଼ିଥିଲା କେଜାଣି, କାହାର ଖୁବ୍ ନରମ ସ୍ପର୍ଶରେ ସେ ଆଖି ଖୋଲିଥିଲା । ଚୁମକୀ, ଛୋଟଝିଅ ଚୁମକୀ ହାତରେ ଥିଲା ଏକ ସଦ୍ୟପ୍ରସ୍ଫୁଟନ୍ତା ଗୋଲାପ ଫୁଲ । ତାର ମୁହଁ ଉପରେ ଫୁଲଟି ରଖି ସେ ତାକୁ ଉଠାଇବାକୁ ଚେଷ୍ଟା କରୁଥିଲା । ଝରକା ସେ ପଟେ ସୁନେଲି ସକାଳ ବିଛାଇ ପଡ଼ିଥିଲା । ପ୍ରତିଦିନ ଭଳି ଆଜିବି ବିକାକିଣାର ଗହଳି ରାସ୍ତାରେ ଆରମ୍ଭ ହେଇଯାଇଥିଲା । ଗୋଟେ ଦିଗରେ ସାଧନା ନିଜର ନାରୀଜୀବନର ସବୁକିଛି ହଜାଇ ଦେଲାବେଳେ ଆଉ ଗୋଟେ ଦିଗରେ ଛୋଟ ଝିଅଟି ଗୋଲାପ ଫୁଲ ଧରି ସକାଳର ସମ୍ବାଦ ଆଣିଥିଲା । ଚୁମ୍‌କୀକୁ ଧରି ସେ କାନ୍ଦି ଉଠିଥିଲା, ନା... ନା ମୋ ଜୀବନରେ ଫୁଲର ଆବଶ୍ୟକତା ନାହିଁ, ମୋର ଗୋଲାପ ଦରକାର ନାହିଁ ।

କିଏ କହିଲା, ଫୁଲର ଭୂମିକା ତ କାଲି ରାତିରୁ ତମର ଆରମ୍ଭ ହୋଇଯାଇଛି ସାଧନା, କହି ଚୁମ୍‌କୀର ମା ପଶି ଆସିଲେ । ତା ପିଠିରେ ହାତ ବୁଲାଇ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲେ । କହିଲେ, ଏଇ ଆମର ଜୀବନ । ମୋର ବି ତମ ଭଳି ବହୁ ସ୍ୱପ୍ନ ଥିଲା । ସ୍ୱାମୀ ପିଲାଛୁଆଙ୍କୁ ନେଇ ସମ୍ମାନର ସହ ବଞ୍ଚିବା ଲାଗି କେଉଁ ଝିଅ ନ ଚାହେଁ ? ହେଲେ... ମୋ ମଦ୍ୟପି ବାପାଙ୍କୁ ଫୁସୁଲାଇ ଏମାନେ ମୋତେ କିଣିଆଣିଲେ ଆଉ ସୋନାଗାଛିରେ ପହଁଞ୍ଚାଇ ଦେଲେ । ମୋ ଭଳି ଅନେକ ଝିଅ ବିଭିନ୍ନ ପରିସ୍ଥିତିରେ ଏଠାକୁ ଧରାହେଇ ଆସିବାର କରୁଣ କାହାଣୀ ଶୁଣିଥିଲି । ଲୁହ ଝରାଇବା ଛଡ଼ା ଆମର ବା ଉପାୟ କଣ ? ତାପରେ ମୋତେ ବି ଏମିତି ଗରମ ଗରାଖ ମେଳରେ... ଏଇ ଚୁମ୍‌କୀ ଏକ ଅବାଞ୍ଛିତା ଝିଅ । ମୁଁ ଜାଣେ ମୋଭଳି ୟାର ମଧ କୌଣସି ଭବିଷ୍ୟତ ନାହିଁ । ସାମାଜିକ ପ୍ରତିଷ୍ଠା ପାଇ ପାରିବନି କାହିଁକିନା ତାର ବାପର ପରିଚୟ ନାହିଁ । ଏଇଭଳି ଏକ ପାପର ମହଲରେ ତାର ଶୈଶବ, ଯୌବନ ଗଢ଼ିଉଠିବ । ମୋରି ଭଳି ସେ ଦେଖୁ ଦେଖୁ ପୋକମାଛି ଭଳି ତା ଜୀବନ ଶେଷ ହୋଇଯିବ । ହଁ ସାଧନା ! ଥରେ ଏ ଗଳିରେ ଯିଏ ପାଦ ଦେଇଛି ଆଉ ସେ କେବେ ଫେରି ନାହିଁ । ମୁକ୍ତିର ସମସ୍ତ ଦର୍ଜା ତାଲାଗି ବନ୍ଦ ହେଇଯାଇଛି । ଏଠୁ ପଳାୟନ କଲେବି ସମାଜ ସୁସ୍ଥ ଭାବରେ ବଞ୍ଚିବାକୁ ଦେବ ନାହିଁ । ଏତେ ଲାଞ୍ଛିତ, ଅପମାନିତ

କରିବ ଯେ ତାଠୁ ବରଂ ଏଇ ସୋନାଗାଛିର ଜୀବନ ଭଲ । ପ୍ରତିଦିନ ଫୁଲ ଗଜରାରେ ମଥା ସଜାଇ... ଅଭିସାରିକା ସାଜି... ପ୍ରତିଦିନ ଫୁଲ ଚାନ୍ଦିନୀ ରାତି... ହାଃ... ହାଃ । ସେ ହସି ଉଠିଲେ । ତାଙ୍କର ଭୟଙ୍କର ହସରେ ନାଲି କୋଠାଟା ସତେ କି ଥରି ଉଠିଲା । ଚୁମ୍‌କୀ ହାତରୁ ଗୋଲାପ ଫୁଲଟି ଖସି ପଡ଼ିଥିଲା ଭୟରେ କେତେବେଳୁ । ବୃନ୍ତଚ୍ୟୁତ ହେଇ ସାରିଥିଲା ଏଠିକାର ସବୁ ଛନଛନ ଜୀବନ । ସେ ହସ ରୋକି ଲୁହପୋଛୁ ପୋଛୁ କହିଲେ, ତମେବି ଆଜିଠାରୁ ହସିବା ଆରମ୍ଭ କର ସାଧନା । ଏଠି କେହି କେବେ କାନ୍ଦିବାର ଦେଖିବ ନାହିଁ । ସାରା ଜୀବନ କେବଳ ହସ ଆଉ ହସ.... ହିଃ... ହିଃ.... ହାଃ... ହାଃ....

ସେ ଗଲାପରେ ସାଧନା ଭାବିଲା ସତକଥା ଏଠି କେହି କଣ କାନ୍ଦିପାରେ ? ଜୀବନର ଏତେ କିଛି ଏଠି ହଜିଯାଏ ଯେ ତା ପାଇଁ ଆଉ ଲୁହ ପାଏ ନାହିଁ । ଝରକା ପାଖରେ ଠିଆ ହେଇ ସେଦିନ ନିଜକୁ ପଚାରିଥିଲା, ସୋନାଗାଛିରୁ କେତେ ଦୂର ଶାନ୍ତିନିକେତନ, ହେ ରବୀ ଠାକୁର ! ତମର ଏକ୍‌ଲା ଚଲୋର ଆହ୍ୱାନ ଏଭଳି ଭାବରେ ବାସ୍ତବ ପାଲଟିଗଲା ମୋ ପାଇଁ ? ଏଠି କେହି ସାଥ୍ ଦେବାର, ସ୍ୱପ୍ନ ଦେଖାଇବାର ପ୍ରତିଶ୍ରୁତି ଦିଏନାହିଁ । କେବଳ ଏକ୍‌ଲା ଚଲୋ ଆଉ ଏକ୍‌ଲା ଚଲୋ... ସାରାଜୀବନ କୈଶୋରରେ, ଯୌବନରେ ଆଉ ବାର୍ଦ୍ଧକ୍ୟରେ ବି । ହେ ବିଶ୍ୱକବି ! ମରଣ ଯଦି ସମସ୍ତଙ୍କ ପାଇଁ ଅବଶ୍ୟମ୍ଭାବୀ ତେବେ ଜୀଇଁବାର ଧାରାରେ ଏତେ ଭିନ୍ନତା କାହିଁକି ? ହେ ଅମର କବି ! ମୋ ଗାଁର ମାଟି, ତମ ଶାନ୍ତିନିକେତନର ମାଟି ଆଉ ଏଇ ସୋନାଗାଛିର ମାଟି ଭିତରେ କେତେ ପାର୍ଥକ୍ୟ ? ମୋ ଗାଁର ଆକାଶ, ତମ ବିଶ୍ୱ ଚେତନାରେ ସମୃଦ୍ଧ ଶାନ୍ତିନିକେତନର ଆକାଶ, ଏହି ସୋନାଗାଛିର ଧୂସର ଆକାଶ ଆଉ ମୋ ଭିତରେ ଏ ଯେଉଁ ହରାଇ ଦେବାର, ହଜାଇ ଦେବାର ଦୁଃଖ, ନୈରାଶ୍ୟର ଆକାଶ ଏହା ଭିତରେ କେତେ ଦୂରତ୍ୱ ? କେତେ ?

ଯାପରେ ସାଧନା ଦେଖେ ସୋନାଗାଛିର ଘରେ ଘରେ ଲଗା ହେଇଥିବା କ୍ୟାଲେଣ୍ଡରେ ବାରବାର ଗୋଲାପ ଧରେ, ବାରମ୍ବାର ମଲ୍ଲିଫୁଲ ଗଜରା ସାଜେ, ବାରବାର ସେମାନେ ଥୁଣ୍ଟା ହୁଅନ୍ତି । କ୍ୟାଲେଣ୍ଡର ବଦଳେ, ସମୟ ବଦଳେ, ନାରୀ ପ୍ରଗତିର ହାୱା କିନ୍ତୁ ସୋନାଗାଛିରେ ସେମିତି ରହିଥାଏ । ସେମିତି ଘୁଙ୍ଗୁରର ଆୱାଜ, ବାଇଜୀ ଗୀତ, ମଦାଳସା ହସ, ମଦ ଗ୍ଲାସ୍‌ର ଟୁନ୍‌ଟାନ୍ ଶବ୍ଦ ଆଉ ଆର୍ତ୍ତଚିତ୍କାର ଭିତରେ ରାତିଦିନ ଏକାକାର ହେଇଯାଏ । ଏଠିକାର ପୃଥିବୀ, ଜୀବନଧାରା ସତେକି କ୍ୟାଲେଣ୍ଡର, ମସିହା, ସମୟ, ପ୍ରଗତି ସବୁକିଛିକୁ ଅସ୍ୱୀକାର କରି ଆପଣା ଗତିରେ ଗଡ଼ି ଚାଲିଥାଏ ।

ଦିନେ ସାଧନା ମୁକ୍ତି ପାଇବାର ସୁଯୋଗ ପାଇଲା । ତାର ସଦ୍‌ବ୍ୟବହାର କରିବାକୁ ସେ ଭୁଲିଲା ନାହିଁ । ଖସି ଆସି ବହୁକଷ୍ଟରେ ପହଁଞ୍ଚିଲା ନିଜ ଘରେ । ହେଲେ... ବାପଘରର

ଦର୍ଜା ତା ପାଇଁ ସବୁଦିନ ଲାଗି ବନ୍ଦ ହୋଇଯାଇଥିଲା । ସେମାନେ ତାକୁ ଫେରାଇ ଦେଲେ, ଅସ୍ୱୀକାର କଲେ । ସେ କୁଆଡ଼େ ଅନେକ ଦିନରୁ ସେ ପରିବାର ପାଇଁ ମରିସାରିଛି । ବଦ୍‌ନାମ ହେଇଯିବା ଭୟରେ ସେମାନେ ତାକୁ ଫେରାଇଦେଲେ । ସେଦିନ ସାଧନାର ପାଦତଳୁ ସତେକି ମାଟି ଖସି ପଡ଼ିଥିଲା । କାହିଁକି କେଜାଣି ଆତ୍ମହତ୍ୟା ସେ କରିପାରିଲା ନାହିଁ । ପୁଣି ଫେରି ଆସିଲା ସେହି ଗଳିକୁ । ଚୁମ୍‌କୀର ମା' ଠିକ୍ କହିଥିଲେ, ଥରେ ଏଠି ପାଦ ଦେଲାପରେ ଆଉ ମୁକ୍ତି ମିଳେ ନାହିଁ । ଯଦିବା ମୁକ୍ତି ମିଳେ ସମାଜ ସୁସ୍ଥ ଭାବରେ ବଞ୍ଚିବାକୁ ଦେବ ନାହିଁ । କିନ୍ତୁ... ସେହି ଗରାଖମାନଙ୍କ ଭିତରୁ ଦିନେ ଜଣେ ସ୍ୱପ୍ନ ବିକିଲା । ଶଙ୍ଖା ସିନ୍ଦୂରର ପ୍ରତିଶ୍ରୁତି ଦେଲା । ତା ସହିତ ରାତାରାତି ପଳାଇବାର ସବୁ ଯୋଜନା ଠିକ ହେଲା । କିନ୍ତୁ... ହାୟ ଯିବା ଆଗଦିନ ହିଁ ତା ଶବ ପଡ଼ିଥିଲା ସୋନାଗାଛିର ଗଳିରେ । କୌଣସି ପ୍ରମାଣ ନ ଥିଲା । ଶୁଣିଥିଲା ଏଠି ଯିଏ ସ୍ୱପ୍ନ ବିକେ ତାକୁ ଏଇ ପୁରସ୍କାର ଦିଆଯାଏ । ସେହିଦିନୁ ଘର ଅଗଣା ଓ ତୁଳସୀ ଚଉଁରା ସ୍ୱପ୍ନ ଦେଖିବା ସାଧନା ଛାଡ଼ି ଦେଇଥିଲା ।

ତାପରେ ଧୀରେ ଧୀରେ ବହଳ ହେଇ ଚାଲିଲା ବୟସ । ଖସି ପଡ଼ିଲା ସମୟ ସ୍ୱପ୍ନର ରଙ୍ଗ ଧୋଇ । ମୁଠା ମୁଠା ସ୍ୱପ୍ନ, ଜୀବନର ବହୁ ନିବିଡ଼ ଭାବପ୍ରବଣତା ପଛରେ ପଡ଼ିଗଲେ । ସେସବୁକୁ ଫେରି ଚାହିଁବାକୁ ବି ତାକୁ ସମୟ ମିଳିଲାନି । ମଣିଷର ଅନ୍ତଃହୀନ କାମନା ପାଖରେ ତାର ନିଷ୍ପାପ ଦେହ, ମନ ବତୁରି ବତୁରି ଗଲା । ଶାନ୍ତିନିକେତନ ଦେଖିବାର ଆଗ୍ରହ ମଉଳି ଝଡ଼ି ପଡ଼ିଲା । ବୟସ ତୁଳନାରେ ଖୁବ୍ ବେଶୀ ଅଭିଜ୍ଞା ହେଇଗଲା ସେ । ଜୀବନତମାମ ସେ ଦେଖିଲା ବିଭିନ୍ନ କିସମର ମଣିଷ । ସବୁ ପୁରୁଷ ଏକାଭଳି ରିକ୍ସାବାଲାଠାରୁ ଜମିଦାର ଯାଏଁ । ନାରୀର ଦେହ ପାଖରେ ଅଶିକ୍ଷିତ, ଧନି ନିର୍ଦ୍ଧନ ସବୁ ଏକା ପ୍ରକାରର । ସାଧନା ଦେଖୁଥିଲା ବର୍ଷ ବର୍ଷ ଧରି କେତେ ସବୁ ସାଧନା ବିଭିନ୍ନ ଜାଗାରୁ ଧରାହେଇ ଆସନ୍ତି । ଆସିଲା ବେଳେ ବହୁ ଆକାଂକ୍ଷିତ ପୁଞ୍ଜିଭୂତ ସ୍ୱପ୍ନ ଥାଏ । ଧରାହେଇ ଆସିଥିବା ଝିଅଟିର ଚିତ୍କାର ଶୁଭେ । ତାରି କାକୁତି ମିନତି, ଛାଡ଼ିଦେବା ପାଇଁ ବିକଳ ପ୍ରାର୍ଥନା, ଆର୍ତ୍ତଚିତ୍କାର ସବୁ କିଛି ନିଷ୍ଫଳ ହେଇଯାଏ । ତା ଦେହରୁ ଛିଟ ଫ୍ରକ୍ କି ଲୁଗା କାଢ଼ି ନିଆଯାଏ । ଆଉ ସମସ୍ତଙ୍କ ସାମ୍ନାରେ କୌଣସି ଏକ କାପୁରୁଷ ତାକୁ ... ଆଉ ତାପରେ ସେହି ଝିଅଟି ବି କ୍ରମଶଃ ପୁରୁଣା, ଅଭିଜ୍ଞା ହେଇଯାଏ । ସେ ବି ସେହି ଶହଶହ ଦେହଜୀବୀଙ୍କ ମେଳାରେ ନିଜ ଓଠର ହସ ମିଶାଏ ଯେତେବେଳେ ନୂଆଝିଅଟି ଛାଡ଼ିଦେବା ପାଇଁ ବିକଳ ଚିତ୍କାର କରୁଥାଏ । ଏ ହସ ଭିତରେ ଥାଏ ପ୍ରତିହିଂସା ଆଉ ତାତିଲା କୋହର ବ୍ୟଥାଭରା ପିଚକାରୀ । ଯେମିତିକି ହସି ହସି ଲୁହ ପିଇ ଯିବାକୁ ପଡ଼େ ।

ଗରମ ଗରାଖର ଭିଡ଼ ଭିତରେ ଦେଖୁଦେଖୁ ସାଧନା ବୁଢ଼ୀ ହେଇଗଲା । ସମୟର ସୁଅ ଭିତରେ ତାର କୈଶୋର, ଯୌବନ ନିଶ୍ଚିହ୍ନ ହେଇଗଲା । ପାତାଳପୁରୀର ଅନ୍ଧାରର

ଜୀବନ ବିତାଇଲା ବେଳେ ସାଧନା ତଥାପି ଖବର ରଖୁଥିଲା ନାରୀ ଜାଗରଣର । ଯେଉଁ ଗରାଖମାନେ ରାତିରେ ସୋନାଗାଛିରେ ପାଦ ଦିଅନ୍ତି ସେମାନେ ହିଁ ଦିନରେ ବକ୍ତା ସାଜି ଯାଆନ୍ତି ନାରୀ ସମସ୍ୟାର ସମାଧାନ ପାଇଁ । ନାରୀସମସ୍ୟା, ନାରୀଜାତି ମାତୃତୁଲ୍ୟା ଏମିତି ବଡ଼ ବଡ଼ ଶବ୍ଦ ସେମାନଙ୍କ ଭାଷଣରେ ଆସେ । ଏସବୁ ସଭାସମିତିରେ ରୂପଜୀବୀର ସାମାଜିକ ସମ୍ମାନ ସଂପର୍କରେ ପ୍ରଶ୍ନ ଉଠେନା କି ତାର ଗ୍ରାହକକୁ ସମାଜରୁ ବାସନ୍ଦ କରିବାର ଆଇନ ପ୍ରଣୟନ ହେବା ଦରକାର ବୋଲି କେହି ମତ ଦିଅନ୍ତି ନାହିଁ । ନଚେତ୍ ଆଜିର ସୁସଭ୍ୟ, ପ୍ରଗତିଶୀଳ ଦେଶଗୁଡ଼ିକରେ ଗଣିକାପଡ଼ା ରହି ନଥାନ୍ତା କି ଦେହବ୍ୟବସାୟ ଚାଲୁ ରହନ୍ତା ନାହିଁ । ସୋନାଗାଛିର ନାଁ ମଣିଷର ସ୍ମୃତିରୁ ପୋଛି ହେଇ ସାରିଥାନ୍ତା ।

ତଥାପି ସାଧନା ନିଜକୁ ସାନ୍ତ୍ୱନା ଦିଏ, ବାସ୍ତବତାକୁ ଗ୍ରହଣ କରିନିଏ । ବୁଦ୍ଧ କହିଥିଲେ, 'ଯାହାକିଛି ପ୍ରିୟ, ସୁଖକର ଓ ଉପଭୋଗ୍ୟ ଦିନେନା ଦିନେ ତାକୁ ହରାଇବାକୁ ପଡ଼ିବ । କାରଣ ଏ ଜୀବନ ନାଶଶୀଳ ।' ସେଥିପାଇଁ ସାଧନା ନାଶଶୀଳ ଜୀବନର ବହୁ କିଛି ହଜାଇ ଦେଇ ବି ବଞ୍ଚିବାର କଣିକା ଗୋଟାଏ । ବହୁ ତିକ୍ତ ସ୍ମୃତିକୁ ଭୁଲିବାର ଚେଷ୍ଟାକରେ ଆଉ କଟାଇ ଦେଇ ଚାଲେ ତାର ଅବଶିଷ୍ଟ ଜୀବନ ।



# ସଂପର୍କ

ମା'ଙ୍କର ସେହି ନୀଳ ଶାଢ଼ୀଟା ପିନ୍ଧି ମନ୍ଦିର ଯିବାକୁ ବାହାରିଲାବେଳେ ବାପା ଚମକି ପଡ଼ିଲେ । ତାଙ୍କ ଚାହାଣୀର ଅର୍ଥ ବୁଝି ପାରିଲି ନାହିଁ । କାହିଁକି କେଜାଣି ଡର ଲାଗିଲା । ମା'ବି ଥରେ ସରସ୍ୱତୀ ପୂଜା ବେଳେ ଏ ଶାଢ଼ୀଟା ପିନ୍ଧି ଯିବ ବୋଲି କହିଲା ବେଳକୁ ବାପା ମନା କରିଥିଲେ । ବନାରସୀ ଠାରୁ ସବୁ ଦାମିକା ଶାଢ଼ୀ ବାହାର କରି ଦେଲେ ମଧ ଏଇଟା ସେ ଦେଇ ନଥିଲେ । ସେଦିନ ବେଶ୍ କୌତୁହଳ ଜାଗିଥିଲା ମନରେ । ଭାବିଥିଲି ଏଇଟା ହୁଏତ ହେଇଥିବ ବାପାଙ୍କର କିଛି ବିଶେଷ ଉପହାର । କିନ୍ତୁ ମୋର ଯେତେଦୂର ମନେହୁଏ ମା' ଏ ଶାଢ଼ୀଟା କୌଣସି ଦିନ ପିନ୍ଧି ନାହାନ୍ତି, କିନ୍ତୁ ଭାଙ୍ଗରୁ ଫାଟିଯିବ ବୋଲି ଶାଢ଼ୀଟାର ଭାଙ୍ଗ ବଦଳାଇ ଖୁବ୍ ଯତ୍ନରେ ସାଇତି ରଖିଥାନ୍ତି । ପ୍ରଥମେ ପ୍ରଥମେ ଏ ସଂପର୍କରେ କିଛି ପଚାରିବାକୁ ଇଚ୍ଛା ହେଇଥିଲା କିନ୍ତୁ ପରକ୍ଷଣରେ ବାପାମା'ଙ୍କ ଉପରେ ବା ଏଭଳି କିଛି ସଂପର୍କରେ ଯେ ପ୍ରଶ୍ନ କରାଯାଏନା ବୁଝି ଯାଇଥିଲି । ପେର କିଛି ବର୍ଷ ଗଡ଼ିଗଲା । ମା ମଧ ହଠାତ୍ ଆମକୁ ଛାଡ଼ି ଆରପୁରକୁ ଚାଲିଗଲେ । ତାଙ୍କ ଅବର୍ତ୍ତମାନରେ ଶାଢ଼ୀସବୁ ପିନ୍ଧିବାରେ ମୁଁ କ୍ରମଶଃ ଅଭ୍ୟସ୍ତ ହୋଇଗଲି । କିନ୍ତୁ ଆଜି ପ୍ରଥମଥର ପାଇଁ ଏ ଶାଢ଼ୀଟା ପିନ୍ଧିବା ଦେଖି ବାପା ଚମକି ଉଠିଥିଲେ । କହିଥିଲେ, ମାରେ ତୁ ଏ ଶାଢ଼ୀଟା କେବେ ପିନ୍ଧିବୁ ନାହିଁ । ଯା ପଛରେ ଗୋଟାଏ କାହାଣୀ ଅଛି, ଛାଡ଼ । ସେ ଦୀର୍ଘଶ୍ୱାସ ଛାଡ଼ିଥିଲେ । ମୁଁ ମଧ ତାହା ବଦଳାଇ ଦେଇଥିଲି ।

କିନ୍ତୁ ତାପରଠୁ କେମିତି ଗୋଟାଏ ସନ୍ଦେହ, ଆଶଙ୍କା ମୋ ମନରେ ଉଙ୍କି ମାରିଥିଲା, କଣ ହେଇ ପାରେ ସେ କାହାଣୀ ? ବାପାଙ୍କ ଉପହାରର ଶାଢ଼ୀ କଣ ଝିଅ କେବେ ପିନ୍ଧେନା ? ଯଦି ଏହା ସହିତ କୌଣସି ସ୍ମରଣୀୟ ଘଟଣା ଜଡ଼ିତ ତେବେ ମା' କାହିଁକି ଯାକୁ ପିନ୍ଧୁ ନଥିଲେ ? ଅନ୍ତତଃ ବାପାଙ୍କର ଉପହାରର ସମ୍ମାନ ପାଇଁ ତ ପିନ୍ଧି ପାରିଥାନ୍ତେ କୌଣସି ଦିନ ଗୁଡ଼ିକରେ । କଣ ରହସ୍ୟ ଥିଲା ଯା ମଝିରେ ?

ମୋର କୌତୁହଳର ସମାଧାନ ହେଇଗଲା ଦିନେ, ଘରର ସବୁଜିନିଷ ଝଡ଼ାଝଡ଼ି କଲା ବେଳେ । ମିଳିଲା ମା'ଙ୍କର ହାତଲେଖା ଏକ ଡାଏରୀ । ପଢ଼ିବାର ଲୋଭକୁ ସମ୍ଭରଣ କରି ପାରିଲି ନାହିଁ । ମାଙ୍କର ଅତୀତ ଓ ତାଙ୍କ ଜୀବନରେ ଅନ୍ୟ ଜଣେ ପୁରୁଷର ଆବିର୍ଭାବ । ମାଙ୍କୁ ସେ ଖୁବ୍ ଭଲ ପାଉଥିଲେ । ସେଇଥିପାଇଁ ବାପାଙ୍କୁ ବାହା ହେଇଗଲା ପରେ ସେ ଅବିବାହିତ ରହି ଯାଇଥିଲେ । ଏଇଥିପାଇଁ ଯେ ସେମାନଙ୍କର ଜାତି ଅଲଗା ଥିଲା ଓ ସେ ମାଙ୍କଠାରୁ ବୟସରେ ସାନ ଥିଲେ । ମା ତାଙ୍କୁ ବୁଝାଇ ଥିଲେ, ଅବିନାଶ ! ଏହା କେବେ

ସମ୍ଭବ ନୁହେଁ । ଆମ ଜୀବନର ଗତି ଦୁଇଟା ସରଳ ରେଖା ଭଳି । ଆମେ ଏକାଠି କେବେ ଗୋଟାଏ ଛକରେ ମିଳିତ ହୋଇ ପାରିବୁନି । ଆମଘର ତମଘର, ତମସମାଜ ଆମ ସମାଜ ଏହାକୁ ଗ୍ରହଣ କରିବନି । ତମେ ତୁଚ୍ଛା ଭାବପ୍ରବଣତାରେ ଭାସି ନ ଯାଇ ବାହାହୋଇ ପଡ଼ । ସୁଖୀ ସଂସାରଟିଏ କର । ଯାହା ହୋଇଗଲା ଦିବାସ୍ୱପ୍ନ ଭଳି ଭୁଲିଯାଅ । ଯେଉଁଠି ଯେମିତି ଅବସ୍ଥାରେ ଥିଲେ ବି ମୁଁ ତମର ସୁଖ କାମନା କରିବି । ଅବିନାଶ ! କିଛି ନଈ ଅଛି ଯେ ସମୁଦ୍ରକୁ ଛୁଇଁବା ଆଗରୁ ବେଳାଭୂମିରେ ସବୁଦିନ ପାଇଁ ହଜିଯାଏ । ଠିକଣା ହଜାଇ ଦିଏ ।

କିନ୍ତୁ ଅବିନାଶ ଥିଲେ ନଛୋଡ଼ବନ୍ଧା । ସେ ସମାଜ ମାନନ୍ତି ନାହିଁ । ଭଲପାଇବା ପାଖରେ ତାଙ୍କର ଯୁକ୍ତି ହେଲା କୌଣସି ଜାତି, ବୟସ ନାହିଁ, ବାଧା ବନ୍ଧନ ନାହିଁ । ଯେଉଁ ରାଧାକୃଷ୍ଣ ପ୍ରେମକାହାଣୀ ଆଜି ଚିରନ୍ତନ ପ୍ରେମର ଉଦାହରଣ ପାଲଟିଛି ତାର ନାୟିକା ରାଧା ବି ତ କୃଷ୍ଣଠାରୁ ବୟସରେ ବଡ଼ ଥିଲେ, ପୁଣି ବିବାହିତା, ପରସ୍ତ୍ରୀ । ଯଥେଷ୍ଟ ବୟସରେ ବଡ଼ ନାରୀକୁ ବିବାହ କରି ସୁଖୀ, ସୁନ୍ଦର ଦାମ୍ପତ୍ୟ ଜୀବନ ଯାପନ କରିପାରିବାର ଏଭଳି ଉଦାହରଣ କିଛି କମ୍ ନୁହେଁ ପୃଥିବୀରେ । ଜଣେ ଷାଠିଏ ବର୍ଷର ବୁଢ଼ା ଯଦି ଜଣେ ଅପ୍ରାପ୍ତ ବାଳିକାକୁ ବିବାହ କରି ପାରେ ଓ ସମାଜ ଏଥିରେ ପ୍ରତିବାଦ କରେ ନାହିଁ ତାହାଲେ ସେହି ସମାଜ କାହିଁକି ଏ କ୍ଷେତ୍ରରେ ବାଧା ଦେବ ? ଆଉ ଯଦି ବାଧା ଦିଏ ସେ ବାଧାକୁ ଆମେବା କାହିଁକି ଗ୍ରହଣ କରିବା ? ବିବାହ କେବଳ ଶରୀର ମିଳନ ନୁହେଁ, ମୋ ମତରେ ଆତ୍ମାର ମିଳନ । ଯଦି ଆମର ସମର୍ପଣରେ ଏକାଗ୍ରତା ଥାଏ, ପବିତ୍ରତା ଥାଏ ତେବେ ଏ ଜନ୍ମରେ ସମ୍ଭବ ନହେଲେ ହେଁ ଆରଜନ୍ମରେ ହେଲେ ବି ମୁଁ ତମକୁ ଅପେକ୍ଷା କରିବି । ପୁଣି ତାଙ୍କର ଯୁକ୍ତି ଥିଲା ପ୍ରେମ ସମସ୍ତ ଜାତି, ଧର୍ମ, ସଂପ୍ରଦାୟର ଉର୍ଦ୍ଧ୍ୱରେ । ଯଦି ଗୋଟାଏ ରେଷ୍ଟୋରାଁରେ ଏକାଠି ଖାଇପାରୁ, ଟ୍ରେନର ଏକ କମ୍ପାର୍ଟମେଣ୍ଟରେ ବିଭିନ୍ନ ସଂପ୍ରଦାୟ ଏକାଠି ଯାତ୍ରା କରିପାରୁ, ମନ୍ଦିର, ପାର୍ଟି, ପିକ୍‌ନିକ୍, ବିବାହ ପ୍ରଭୃତିରେ ଏକାଠି ହୋଇପାରୁ ଆଉ ଏସବୁରେ ଜାତିଅଜାତି, ଉଚ୍ଚନୀଚ ବିଚାର ରହେନାହିଁ ତେବେ ଏହା କାହିଁକି ସମ୍ଭବ ହେବନାହିଁ ? ଆମେ ଏକ ନୂଆ ସମାଜ ତିଆରି କରିବା ଓ ଆଗାମୀ ବଂଶଧରମାନଙ୍କୁ ଆମରି ଆଦର୍ଶରେ ଗଢ଼ିବା । ଅବିନାଶଙ୍କର ଏହି ଆବେଗ, ଭଲ ପାଇବା, ଦର୍ଶନକୁ ବୁଝିବା ଓ ବୁଝି ନିଜେ ସେ ଭଳି ଦୃଢ଼ମନା ହୋଇ ସମାଜ ସହିତ ସାମ୍ନା କରିବା ଆଗରୁ ମା'ଙ୍କର ବିବାହ ହୋଇଗଲା । ମା କିନ୍ତୁ ବାପାଙ୍କୁ ତାଙ୍କ ଅତୀତ କଥା ନ ଲୁଚାଇ କହି ଦେଇଥିଲେ । ଅବିନାଶଙ୍କର ପ୍ରଥମ ଓ ଶେଷ ଉପହାର ଏହି ନୀଳ ଶାଢ଼ୀଟା କଥା ମଧ ସେ ପ୍ରକାଶ କରି ଦେଇଥିଲେ । ନୀଳରଙ୍ଗ ପ୍ରତି ଥିଲା ଅବିନାଶଙ୍କ ଅସମ୍ଭବ ଦୁର୍ବଳତା । ଏହି ନୀଳ ରଙ୍ଗରେ ନୀଳ ପରୀ ସାଜି ତାଙ୍କ ନୀଳାଭ ଦୁନିଆରେ ବଧୂବେଶରେ ପାଦଥାପି ଯିବାର ସ୍ୱପ୍ନ ମାଙ୍କୁ ନେଇ ଅବିନାଶ ଦେଖି ଚାଲିଥିଲେ । କିନ୍ତୁ ସେ ସ୍ୱପ୍ନ ସ୍ୱପ୍ନରେ ରହିଗଲା ।

ତାପରେ ପାରିବାରିକ ଜୀବନରେ ଟିକିଏ ଟିକିଏ କଥାରେ ଯଦି ମନୋମାଳିନ୍ୟ ହୁଏ, ବାପାଙ୍କର ଭର୍ତ୍ସନା ଭିତରେ ଅବିନାଶ ବାବୁ ପଶି ଆସନ୍ତି ଓ ମାଙ୍କୁ କ୍ଷତାକ୍ତ ରକ୍ତାକ୍ତ କରି ଦିଅନ୍ତି । କେବେ ଯଦି କୌଣସି ନୀଳରଙ୍ଗର ଶାଢ଼ୀ, ପର୍ଦ୍ଦାକନା କି ବିଛଣା ଚାଦର ମା' ପସନ୍ଦ କରନ୍ତି ତେବେ ସେଥିରେ ବି କଥା ଶୁଣିବାକୁ ପଡ଼େ ଯେ ସେ ରଙ୍ଗ ଛଡ଼ା ମାଙ୍କୁ ଆଉ କିଛି ଭଲ ଲାଗିବ ନାହିଁ ।

ମା' ତାଙ୍କ ଡାଏରୀର ଗୋଟାଏ ପୃଷ୍ଠାରେ ଲେଖିଛନ୍ତି, ଭଲ ପାଇବା ବି ଏକ ଯନ୍ତ୍ରଣା । ଯନ୍ତ୍ରଣା ତ ମଧୁରତାର ସଙ୍କେତ । ମୋ ସ୍ୱାମୀ ତାଙ୍କ ଜୀବନରେ କେବେ କାହାକୁ ଭଲ ପାଇବା ଦେଲେ ନାହିଁ । ଶାଢ଼ୀ ଗହଣା, କୋଠାବାଡ଼ିକୁ ଭଲପାଇବାର ମାଧ୍ୟମ କରିଦେଲେ । ହାୟ, ତାଙ୍କ ଭଳି ମଣିଷକୁ କିଏ ବୁଝାଇ ହେବ ପ୍ରେମ ପାଖରେ ଏସବୁ ସଂପତ୍ତି କେତେ ତୁଚ୍ଛ ବୋଲି ? କିନ୍ତୁ ମୁଁ ତ ତାଙ୍କୁ କେବେ ଧକ୍କା ଦେଇ ନାହିଁ । ପତ୍ନୀ ଧର୍ମରୁ କେବେ ବିଚ୍ୟୁତ ହେଇନାହିଁ । ଅଗ୍ନିକୁ ସାକ୍ଷୀ ରଖି ଯେଉଁଦିନ ବିବାହ ବେଦୀରେ ବସିଥିଲି, ସେହି ଦିନ ହିଁ ଅତୀତକୁ ଜଳାଇ ଦେଇଥିଲି । କିନ୍ତୁ ପ୍ରକାଶ ସ୍ୱାମୀ ହେଇ ଏଇଟା ବୁଝି ପାରିଲେନି । ସନ୍ଦେହ କଲେ ଜଣକର ଭଲ ପାଇବାକୁ ।

ପୁଣି କିଛି ପୃଷ୍ଠା ପରେ ଅବିନାଶ ! ଗୋଟେ ଆବେଗ ନେଇ ତମେ ଅବିବାହିତ ରହିଗଲ । ତମ ଜୀବନକୁ ମୁଁ ନଷ୍ଟ କରିଦେଲି । ତମ ସହ କାହିଁକି ମୋର ଦେଖା ହେଲା ? ମୋ ଛାଇ ତମକୁ ଧ୍ୱଂସ ଆଡ଼କୁ ନେଇଗଲା । ନା ତମେ ଶାନ୍ତି ପାଇଲ ନା ମୁଁ । ଜାଣେ, ଆତ୍ମଗ୍ଲାନିରେ ମୁଁ ଜଳିପୋଡ଼ି ହେଇଯାଉଛି । ଯେଉଁ ସମାଜ, ଯେଉଁ ଜାତି, ବୟସକୁ ଧରି ମୁଁ ତମକୁ ପ୍ରତ୍ୟାଖ୍ୟାନ କରିଥିଲି ଆଜି ବୁଝୁଛି ସେସବୁ କେତେ ତୁଚ୍ଛ ବୋଲି । ପ୍ରେମ ଅର୍ଥ ବୁଝିଥିଲି ଦେହର ମିଳନ । ବିବାହ ଅର୍ଥ ଥିଲା ମାତୃତ୍ୱ ଅଥଚ ବହଳ ବୟସରେ ବୁଝୁଛି ମୋର ଚିନ୍ତାଧାରା କେତେ ଭୁଲ ଥିଲା । ସମାଜର ପୁରୁଣା ଚଳଣିକୁ, ବିଶ୍ୱାସକୁ ବଦଳାଇବା ପରିବର୍ତ୍ତେ ମୁଁ ଜୀବନର ବ୍ୟାଖ୍ୟା କରିଥିଲି । ଷାଠିଏ ବର୍ଷର ବୁଢ଼ା ତେରବର୍ଷର ଝିଅକୁ ବାହା ହେଇ ଅଳ୍ପଦିନ ପରେ ବିଧବା କରି ଚାଲିଗଲେ ବି ସେ ପ୍ରଥାକୁ ସମ୍ମାନ ଜଣାଉଥିଲି । କିନ୍ତୁ ପୁରୀରେ କାର୍ତ୍ତିକ ମାସ ଶୀତରେ ବିଧବା ବୃଦ୍ଧା, ଯୁବତୀଙ୍କର କାର୍ତ୍ତିକ ବୁଡ଼ ଓ ହବିଷାନ୍ନ ଖିଆ କରୁଣ ଜୀବନ ଦେଖି ଆଖି ଭର୍ତ୍ତି ହେଇଯାଇଥିଲା । ଧର୍ମ ନାମରେ, କୁଳ, ପରମ୍ପରା ଚଳଣି ନାଁରେ ଆମ ପୁରୁଷ ଶାସିତ ସମାଜ କେଉଁ ଦିନରୁ ନାରୀହତ୍ୟା କରି ଚାଲିଛି ଆଉ ଆମେ ନାରୀମାନେ ବି ସେହି ହତ୍ୟାଯଜ୍ଞରେ ଆହୂତି ଯୋଗାଇଛୁ । ପ୍ରତିବାଦ କରିନୁ, ଅଧିକାର ଖୋଜିନୁ କି ନିଜର ଅଧିକାର ସଂପର୍କରେ ସଚେତନ ହେଇନାହୁଁ । ବରଂଚ ନିଜର ଝିଅ, ନାତୁଣୀ ପାଇଁ ସେହି ରାସ୍ତା ଫିଟାଇ ଦେଇଛୁ । ସେହି ରାସ୍ତାରେ ଜଣକ ପରେ ଆଉ ଜଣେ ଆସିଛି, ଗୋଟେ ଜେନେରେସନ ପରେ ଆଉ ଗୋଟେ ଜେନେରେସନ ତାକୁହିଁ କେବଳ ପୁନରାବୃତ୍ତି କରି ଚାଲିଛି ।

ପୁଣି ଗୋଟାଏ ପୃଷ୍ଠାରେ ଲେଖାଯାଇଛି, କେମିତି ବୁଝାଇବି ପ୍ରକାଶଙ୍କୁ ଯେ ତମ ସହ ମୋର କଣ ସଂପର୍କ ଥିଲା ? କେମିତି କହିବି ଆମ ସଂପର୍କର ନାଁ କଣ ? ଆମ ଭଲ ପାଇବାର ରୂପରେଖ କଣ ? ଅନେକଥର ଇଚ୍ଛା ହେଇଛି ତମ ଉପହାର ଦେଇଥିବା ସେହି ନୀଳଶାଢ଼ୀଟା ପିନ୍ଧି ପ୍ରକାଶଙ୍କ ସାମ୍ନାରେ ଠିଆ ହୁଅନ୍ତି ଆଉ ବୁଝାଇ ଦିଅନ୍ତି ପ୍ରେମର ଅର୍ଥ କଣ ? ଭଲ ପାଇବାରେ ତ୍ୟାଗର ରୂପରେଖ କଣ ? ସେ କିନ୍ତୁ ଏକଥାଟା ବୁଝିଲେ ନାହିଁ । ଜୀବନକୁ ନେଇ ସୁନ୍ଦର ଭାବେ ଆମେ ତିନିଜଣଯାକ କେହି ହେଲେ ଜୀଇଁ ପାରିଲୁ ନାହିଁ । ପ୍ରକାଶଙ୍କ ସନ୍ଦେହ ଆସ୍ତେ ଆସ୍ତେ ଆମ ଭିତରେ ପାଚେରି ବନିଗଲା...

ମୁଁ ପୃଷ୍ଠା ଓଲଟାଇ ଚାଲିଛି । ମେଞ୍ଚାଏ ଖାଲି ପୃଷ୍ଠା । ଡାଏରୀ ବନ୍ଦ କରିବା ଆଗରୁ ଶେଷ ପୃଷ୍ଠାରେ କେତୋଟି ଧାଡ଼ି ଆଖିରେ ପଡ଼ିଲା । 'ପ୍ରକାଶ ଆଜି ଅଫିସରୁ ଫୋନ୍ କରି ଜଣାଇଲେ । ବିଶ୍ବାସ କରି ପାରିଲି ନାହିଁ । କେମିତି କରିଥାନ୍ତି ? ତମେ ଯେ ହାର୍ଟ ଆଟାକ୍‌ରେ ପୃଥିବୀ ଛାଡ଼ି ଚାଲିଯାଇଛ କେମିତି ଗ୍ରହଣ କରିଥାନ୍ତି ? ଅବିନାଶ ! ଏତେ ଶୀଘ୍ର ଚାଲିଗଲ ? ଦୂରରେ ଥିଲେବି ଗର୍ବ କରିଥିଲି ଯେ ମୋ ପାଇଁ ଜଣେ ଆଜି ବି ଅପେକ୍ଷା କରିଛି ଆଉ ତା ହୃଦୟରେ ମୋତେ ସମ୍ରାଜ୍ଞୀ କରି ଆଜୀବନ କୁମାର ଜୀବନ କାଟି ଚାଲିଛି । ଏହା କେତେ ଜଣ ନାରୀଙ୍କ ଭାଗ୍ୟରେ ମିଳେ ? ସେ ଭାଗ୍ୟରୁ ତମେ ଏତେ ଶୀଘ୍ର ବଞ୍ଚିତ କରିହେଲ ?

'ବର୍ଷ ବର୍ଷ ଧରି ଯେଉଁ ଶାଢ଼ୀଟି ପିନ୍ଧି ପାରିନଥିଲି ତମ ନିର୍ଜୀବ ଦେହକୁ ଦେଖିବାକୁ ଗଲାବେଳେ ପ୍ରକାଶଙ୍କ ସହିତ ସେ ଶାଢ଼ୀ ପିନ୍ଧି ଯାଇ ପାରିଥିଲି । ଆଜି ଯେଉଁ ସାହସ ମୋ ମନରେ ଆସିପାରିଲା ତାହା ଯଦି କିଛି ବର୍ଷ ତଳେ ଜନ୍ମ ନେଇଥାନ୍ତା ହୁଏତ ଆମ ଦୁନିଆ ବଦଳି ଯାଇଥାନ୍ତା । ତମ ପାଖରେ କେତେ ସମୟ ବସି ରହିଥିଲି ଜାଣେନା । ତମେ କିନ୍ତୁ ତମ ସ୍ୱପ୍ନର ନୀଳପରୀକୁ କାହିଁକି ବା ଦେଖିଥାନ୍ତ ? ଜୀବନସାରା ତମେ ମୋତେ ଅପେକ୍ଷା କରିଥିଲ ଆଉ ଯେତେବେଳେ ତମ ପାଖକୁ ଆସିଲି ତମର ଅପେକ୍ଷାର ବେଳା ଶେଷ ହେଇ ଯାଇଥିଲା ।

'ପ୍ରକାଶ ଆସିଲା ବେଳେ କହୁଥିଲେ କାନ୍ଦୁଛ କାହିଁକି ? ଭଗବାନଙ୍କୁ ଧନ୍ୟବାଦ ଦିଅ ଯେ ଅବିନାଶକୁ ବାହା ହେଇନ ନଚେତ୍ ଆଜି ତମେ ବିଧବା ହେଇଥାନ୍ତ । ଭଗବାନ ତମକୁ କେତେବଡ଼ ବିପତ୍ତିରୁ ଉଦ୍ଧାର କରିଛନ୍ତି ଦେଖତ ।

'ଅବିନାଶ ? ପ୍ରକାଶଙ୍କୁ ମୁଁ କଣ ଉତ୍ତର ଦେଇଥିଲି ଜାଣ ? କାନ୍ଦୁଛି ଏଇଥିପାଇଁ ଯେ ମୋତେ ଏତେ ନିବିଡ଼ ଭାବରେ ଭଲ ପାଉଥିବା ମଣିଷଟିକୁ ମୁଁ ସବୁଦିନ ଲାଗି ହଜାଇଦେଲି । କାନ୍ଦୁଛି ଏଇଥିଲାଗି ଯେ ମୋ ଜୀବନକାଳ ଭିତରେ ମୋତେ ନିଃସ୍ୱାର୍ଥ ଭାବରେ ଅପେକ୍ଷା କରୁଥିବା ମଣିଷଟି ସହିତ ଆଉ କେବେ ଦେଖା ହେବନି ବୋଲି ।

'ପ୍ରକାଶ ବୁଝାଇ ଚାଲିଥିଲେ, କଣ ଅଭାବ ମୋର ? ପାଠ, ରୂପ, ଷ୍ଟାଟସ, ସୁଖ ? ଜଣେ ନାରୀ ଏହାଠାରୁ କଣ ବା ଅଧିକା ଚାହେଁ ? ତମେ ବଞ୍ଚିଥିଲେ ତାଙ୍କ ଉତ୍ତର ଦେଇ ପାରିଥାନ୍ତ ବୋଧହୁଏ ।'

ତାପରେ ଆଉ ଲେଖା ଯାଇନାହିଁ । ଡାଏରୀର ଶେଷ ପୃଷ୍ଠାକୁ ଚାହିଁ ଭାବନାରେ ହଜିଯାଇଥିଲା ବେଳେ ହଠାତ୍ କାହାର ଉଷ୍ମମ୍ ଲୁହ ଠୋପାର ସ୍ପର୍ଶରେ ଚମକି ପଛକୁ ଚାହିଁଲା ବେଳକୁ ଠିଆ ହେଇଛନ୍ତି ବାପା । ପଢ଼ିନେଲୁ ମା ? ହଁ ଏଇଯା ଥିଲା ତୋ ମା'ର କାହାଣୀ । ଆମର କାହାଣୀ ସେ ଶାଢ଼ୀର କାହାଣୀ । ତୋ ମା' ବଞ୍ଚିଥିଲାବେଳେ ତାର ମନର ଅବସ୍ଥାକୁ କେବେ ବୁଝି ପାରି ନଥିଲି । କିନ୍ତୁ ସେ ଚାଲିଗଲା ପରେ ଜାଣିଲି ଭଲ ପାଇବା କଣ । ଜଣଙ୍କର ଅବର୍ତ୍ତମାନରେ ଆଉ ଜଣଙ୍କ ମନରେ କି ପ୍ରକାର ଝଡ଼ ଉଠେ । ବୁଝିଲାବେଳକୁ ଅନେକ ବିଳମ୍ବ ହେଇ ଯାଇଥିଲା । ଜୀବନସାରା ତାକୁ ସନ୍ଦେହ ଛଡ଼ା ଆଉ କିଛି ଦେଇନାହିଁ । ଅନୁତାପର ଜ୍ୱାଳାରେ ଜଳିଗଲା ପରେ ବୁଝିଛି ଜୀବନର ବ୍ୟାଖ୍ୟା ଦରକାର ନାହିଁ । ଦରକାର ଜୀବନର ଶୈଳୀର ପରିବର୍ତ୍ତନ, ଚିନ୍ତାଧାରାର ପରିବର୍ତ୍ତନ । ଅଥଚ ସାରା ଜୀବନ ଅନ୍ୟକୁ ଉପଦେଶ ଶୁଣାଇଥିଲି, କମ୍ ବେଶି, ଅଛି ନାହିଁର ତଉଲରେ ଅବିନାଶ ଓ ନିଜକୁ ବସାଇଥିଲି ।

ମୋ ବାହାଘର ଦିନ ବିଦାୟ ବେଳାରେ ବାପା ହଠାତ୍ ଆମ ଦୁହିଁଙ୍କୁ ଅଟକାଇ ମୋତେ ଚମକାଇ ଦେଇଥିଲେ । ହାତରେ ଥିଲା ସେହି ନୀଳଶାଢ଼ୀଟା । କହିଥିଲେ, ଜଣକର ପବିତ୍ର ଭଲପାଇବାର ଅମାନତ ତମ ଦୁହିଁଙ୍କୁ ସମର୍ପି ଋଣମୁକ୍ତ ହେଇଗଲି । ଯତ୍ନରେ ରଖିବ । କଥା ଦିଅ ତମେ ଦୁହେଁ କେହି କାହାକୁ କେବେହେଲେ ସନ୍ଦେହ କରିବ ନାହିଁ ? ସୁଖଦୁଃଖ ସବୁକିଛି ବୁଝାଜଣାରେ ବାଣ୍ଟିନବ । ଜୀବନ ବଡ଼ ଛୋଟିଆ । ତାକୁ ହଜାଇ ଦେବ ନାହିଁ । ମୋ ଦିହ ଛୁଁଇ ମୋ କଥା ମାନିବ ବୋଲି ।

ମୁଁ ବାପାଙ୍କୁ ଅନାଇଲି । ବାପା କେତେ ବୁଢ଼ା ଦିଶୁଛନ୍ତି । ବାପା ତ ଏଡ଼େ ଦୁର୍ବଳ ନଥିଲେ ।

ଏତେ ଅସହାୟ କେବେଠୁ ହେଇଗଲେ ବାପା ?



# ଝିଅର ନାଁ ମୁନ୍‌ମୁନ୍

ସେ ମୋତେ ଝର୍କା ପର୍ଦ୍ଦା ଅଳ୍ପ ଟେକି ଲୁକ୍କୁ ଲୁକ୍କୁ ଚାହିଁଥିଲା । ପ୍ରଥମ ଥର ପାଇଁ ତାଙ୍କ ଘରେ ଏକ ଅଚିହ୍ନା ମଣିଷକୁ ଦେଖି ହୁଏତ ସେ ବିସ୍ମିତ ହେଉଥିଲା । ତେଣୁ ଆଗକୁ ଆସିବାକୁ ସଙ୍କୋଚ କରିଥିଲା । ତା ମା' ତାକୁ ଡାକିଲେ, ସେଠି କାହିଁକି ଲୁଚୁଛୁ ? ଜଣେ ନୂଆ ଆଣ୍ଟି ଆସିଛନ୍ତି । ନମସ୍ତେ କରି ଦେ ମା' । ସେ ତା ମା'ଙ୍କ ଡାକ ଶୁଣି ଆହୁରି ସଙ୍କୋଚରେ ସାକୁଡ଼ି ଗଲା । ପର୍ଦ୍ଦା ଫାଙ୍କରୁ ଦିଶୁଥିବା ତାର ଚକ୍‌ଚକ୍ ଆଖି ଦୁଇଟି କିଛି ସମୟ ପାଇଁ ଚହଲି ଗଲା । ମୁଁ ଚୁପ୍‌ଚାପ୍ ଉଠିଯାଇ ତାକୁ ଏକବାରେ ଚମକାଇ ଦେଇ ପଛପଟୁ ରବର କଣ୍ଢେଇକୁ ଟେକି ଧରିଲା ଭଳି ଘର ଭିତରକୁ ନେଇ ଆସିଲି । ସେ ଧାଇଁ ପଳାଇବା ପାଇଁ ଗୋଡ଼ହାତ ଛାଟିପିଟି ହେଉଥିଲା ।

ତା ମା'ଙ୍କ ଧମକରେ ଡରିଡରି କହିଲା, ନମସ୍କାର ଆଣ୍ଟି ।

ନମସ୍କାର ! ମୁଁ ତାକୁ ବହୁଦିନରୁ ଚିହ୍ନିଲା ଭଳି ହସି ହସି କହିଲି । ତମର ନାଁ କଣ ମା ?

ଏଥର ସେ ଥରେ ତା ମା'ଙ୍କୁ ଓ ଥରେ ମୋତେ ଚାହିଁ କହିଲା, ମୋ ନାଁ ମା' ନୁହେଁ, ମୁନ୍‌ମୁନ୍ !

ମୁନ୍‌ମୁନ୍ ! ବାଃ ବିଉଟିଫୁଲ୍ ନାଁଟେ ।

ମୋତେ ସ୍କୁଲରେ ଡାକନ୍ତି ଅନାମିକା ।

ଅନାମିକା ! ୱାଣ୍ଡରଫୁଲ ।

ଗୋଟେ ନାଁ ମୋତେ ଡାଡୀ ଦେଇଛନ୍ତି ଆଉ ନାଁଟି ମମୀ ।

ସତେ ! ତମର ତାହାଲେ ଯୋଡ଼ିଏ ନାଁ ? ଦୁଇଟା ସାରା ନାଁ ବଡ଼ ସୁନ୍ଦର ।

ତମ ନାଁ କଣ ଆଣ୍ଟି ?

ମୁନ୍‌ମୁନ୍ ଏ ଭିତରେ ତାର ଅଜାଣତରେ ମୋତେ ଲାଗି ଠିଆ ହେଇସାରିଥିଲା ଆଉ ତାର ସଙ୍କୋଚ ଭାବ କିଛି ପରିମାଣରେ କଟି ଯାଇଥିଲା । ତା ମା' କହିଲେ, ତୋର ବକରବକର କାମ ଆରମ୍ଭ କାମ କରିଦେଲୁ ତ । ବିଶ୍ୱାସ କରନ୍ତୁ ଟିକିଏ ବୋଲି କମ୍ ଚଗଲୀ ହେଇନାହିଁ । ଦେଖିଲେତ ଟିକିଏ ଆଗରୁ କେମିତି ଲୁଚୁଥିଲା । ଭଲକି ଚିହ୍ନି ମୁଣ୍ଡରେ ବସିବ । କମ୍ ଫୁଲେଇ ନୁହେଁ ।

ଏଥର ମୁଁ ତାକୁ ମୋ କୋଳକୁ ଉଠାଇ ନେଲି । ସେ ଟିକେ ମୁରୁକି ହସିଦେଲା ବଡ଼ ମଣିଷଙ୍କ ଭଳି । ମୁଁ ବି ହସିଦେଲି । ଏଥର ସେ ଅଧୈର୍ଯ୍ୟ ହେଇଉଠିଲା । ତେଣୁ ଫିସ୍ ଫିସ୍ ହୋଇ ସେ ତାର ପ୍ରଶ୍ନ ଦୋହରାଇଲା, ତମ ନାଁ କଣ ଆଣ୍ଟି ?

ମୋ ନା - କବିତା ଆଣ୍ଟି । କହତ କଣ ନାଁଟା । ସେ କହିଲା ଆଉଥରେ କହିଦିଅ । ପୁଣିଥରେ ଶୁଣିଲା ପରେ ସେ ଶୁଆ କଥା ଶିଖିଲା ଭଳି ମୋ ନାଁଟା ଉଚ୍ଚାରଣ କଲା । ସଙ୍ଗେ ସଙ୍ଗେ ପଚାରିଲା, ତମର କଣ ଦୁଇଟା ନାଁ ନାହିଁ ? ତମକୁ ଏ ନାଁଟା ତମ ଡାଡୀ ଦେଇଛନ୍ତି ନା ମମୀ ? ମୁଁ ହସି ହସି ଗଡ଼ିଗଲି । ବାଃ ବଡ଼ ଚାଲାକ ଝିଅଟାତ । ଛ' ବର୍ଷର ଝିଅଟି ପ୍ରଗଳ୍ଭା ନଇଟେ ମୋ ପାଖରେ ପାଲଟି ଯାଇଥିଲା । ତା ମା, ଚା କରିବା ପାଇଁ ଉଠିଗଲା ପରେ ସେ ଟିକେ ସଜାଡ଼ି ବସି ପ୍ରଶ୍ନ ପରେ ପ୍ରଶ୍ନ ଆରମ୍ଭ କରି ଦେଇଥିଲା ଓ ବେଳେ ବେଳେ ବ୍ୟତିବ୍ୟସ୍ତ ହେଇ ତାର ଝାମ୍ପୁରୁ ଝାମ୍ପୁରୁ ବାଳକୁ ସଜାଡ଼ି ଦେଉଥିଲା ।

ତମେ କଣ ଆମ ଘରେ ରହିବ କବିତା ଆଣ୍ଟି ?

ତମ ଘରେ ? ନାହିଁରେ ମୁଁତ ତମ ଘରକୁ ବୁଲି ଆସିଛି ।

ତାହାଲେ ତମେ ଏତେ ରାତିରେ କେଉଁଠି ରହିବ ? ରାତିରେ ବାଇଆମାନେ ବୁଲନ୍ତି ଜାଣନା ? ମୁନ୍‌ମୁନ୍‌ର ଆଖି ଭୟରେ ଟିକେ ବଡ଼ ବଡ଼ ହେଇଗଲା ।

ମୁଁ କହିଲି, ମୋ ଆଣ୍ଟି ଘର ତମ ଘରକୁ ଲାଗି । ଦାସ୍ ଆଣ୍ଟିକୁ ଚିହ୍ନିନୁ ନା ? ତାଙ୍କ ଘରେ ରହିବି ।

ମୁନ୍‌ମୁନ୍ ଯେମିତି ଟିକେ ଦ୍ୱନ୍ଦ୍ୱରେ ପଡ଼ିଗଲା । ତେଣୁ ରହିରହି କହିଲା, ତମେ ନିଜେ ଜଣେ ଆଣ୍ଟି ପୁଣି ତମର ବି ଗୋଟେ ଆଣ୍ଟି । ତାହାଲେ ଦିଟା ଆଣ୍ଟି । ହେଲେ ମୁଁ ତ ଆଣ୍ଟି ନୁହେଁ । ମୋର ଗୋଟେ ଆଣ୍ଟି ।

ତୁ ଆଣ୍ଟି ନୋହୁଁ ?

ନା... ସେ ତାର ଆଲୁବୁ ବାଲୁବୁ ମୁଣ୍ଡକୁ ଜୋରରେ ହଲାଇ ପକାଇଲା ।

କେମିତି ଜାଣିଲୁ ?

ଜାଣିଛି, ଆପେ ଆପେ । ମୁନ୍‌ମୁନ୍ ଟିକେ ବଡ଼ ମଣିଷ ଭଳି ଗମ୍ଭୀର ଦିଶିଲା । ତାପରେ ଆସ୍ତେ ଆସ୍ତେ କହିଲା, ମୋତେ ସମସ୍ତେ ମୁନ୍‌ମୁନ୍ ଡାକନ୍ତି, ସ୍କୁଲରେ ଅନାମିକା । କେହିତ ଆଣ୍ଟି ଡାକନ୍ତି ନାହିଁ । ମୁଁ ତାକୁ ବୁଝାଇଲି, ତୁ ଯେତେବେଳେ ମୋ ଭଳି ବଡ଼ ହେଇଯିବୁ, ଶାଢ଼ୀ ପିନ୍ଧିବୁ ସେତେବେଳେ ଆଉ ଗୋଟେ ଛୋଟ ଝିଅ ଯାହା ନାଁ ମୁନ୍‌ମୁନ୍ ଥିବ ସେ ତୋତେ ଅନାମିକା ଆଣ୍ଟି ଡାକିବ ।

ସେ ମୋତେ ସଙ୍ଗେ ସଙ୍ଗେ ଆକ୍ରମଣ କଲା, କେବେ ମୁଁ ବଡ଼ ହେବି ? ଆଚ୍ଛା କବିତା ଆଣ୍ଟି ! ସମସ୍ତେ ଛୋଟବେଳେ ମୁନ୍‌ମୁନ୍ ଥାନ୍ତି, ବଡ଼ ହେଇଗଲେ ତମ ଭଳି ଶାଢ଼ି ପିନ୍ଧନ୍ତି ଆଉ ଆଣ୍ଟି ବନିଯାନ୍ତି ?

ହାହା, ଠିକ ବୁଝିଛୁ ମା' କହି ମୁଁ ତାକୁ ଟାଣି ଆଣି ଗେଲ କରି ପକାଇଲି । ଏଥର ସେ ଚଟକି ଇଲେକ୍‌ଟ୍ରି ସକ୍ ପାଇଲା ଭଳି ମୋ କୋଳରୁ ଓହ୍ଲାଇ ପଡ଼ିଲା ।

କଣ ହେଲା ?

ତମେ ମୋତେ ଗେଲ କଲ କାହିଁକି ?

ଭୁଲ ହେଇଗଲା ମା ? ସରି ।

ଏଥର ସେ ଧାଇଁ ଆସି ମୋ ଗାଲରେ ଏକ ଚୁମା ଆଙ୍କିଦେଲା ଆଉ କହିଲା, ମୁଁ ତମକୁ ପ୍ରଥମେ ଗେଲ କରିଥାନ୍ତି...

ଓଃ, ସରି ସରି, ହେଉ ସରି ମୁନ୍‌ମୁନ୍ । ପ୍ଲିଜ୍ କିସ୍ ମି ଏଗେନ୍ ।

ଏଥର ମୋ ମାଉସୀ ପଶିଆସିଲେ । କହିଲେ, କଣ ଚିହ୍ନା ହେଲା ମୁନ୍‌ମୁନ୍ ସହିତ । ଏଥରତ ନିତି ଶନିବାର ଆସିଲେ ଦେଖାହେବ । ଚାଲ୍ ତୋ ମଉସା ଅପେକ୍ଷା କରିଛନ୍ତି ।

ଚା ପିଇ ମୁଁ ଫେରି ଆସିଲି । ଆସିଲା ବେଳକୁ କୁନିକୁନି କଣ୍ଠ ସ୍ୱରଟେ ଶୁଭିଲା, ଆଣ୍ଟି ବାୟ ବାୟ । କେବେ ଆସିବ ?

ଶନିବାର !

ରାଉରକେଲାକୁ ନୂଆ ନୂଆ ଚାକିରି କରି ଆସିବାର ଦିନେ ଦୁଇଦିନ ପରେ ଏହାହିଁ ଥିଲା ମୁନ୍‌ମୁନ୍ ସହିତ ମୋର ସାକ୍ଷାତରେ ପ୍ରଥମ ପର୍ବ । ସେ ଇଂଲିଶ ମିଡ଼ିୟମ୍‌ରେ ପଢୁଥିଲା ଓ ତାଙ୍କ ଘର ସହିତ ମୋ ମଉସାମାଉସୀଙ୍କର ଘନିଷ୍ଠତା ଥିଲା । ତେଣୁ ଆସୁ ଆସୁ ମୋତେ ତାଙ୍କ ଘରକୁ ମାଉସୀ ନେଇ ଆସିଥିଲେ ।

ମୋ ଅଫିସ୍ ଠାରୁ ମଉସାମାଉସୀଙ୍କ ଘର ଆଠ କିଲୋମିଟରେ ପାଖାପାଖି ଥିବାରୁ ଆଗରୁ ଠିକ୍ ହେଇଥିବା ଅଫିସ୍ ପାଖ ଓ୍ୱାର୍କିଂ ଓମେନ୍‌ସ ହଷ୍ଟେଲକୁ ଚା ପରିଦିନ ଜିନିଷପତ୍ର ଧରି ମୁଁ ଚାଲି ଆସିଲି । ଅଜଣା ସହରରେ ଅଚିହ୍ନା ମଣିଷଙ୍କ ମେଳରେ ମୋ ଜୀବନଯାତ୍ରା ଆରମ୍ଭ ହେଲା । ଶନିବାର ଦିନ ମଉସା ସ୍କୁଟର ନେଇ ପହଞ୍ଚିଗଲେ । କହିଲେ, ମାଉସୀ କହିଛି ତୁ ପ୍ରତି ଶନିବାର ଚାଲି ଆସିବୁ । ସୋମବାର ମୁଁ ଛାଡ଼ିଦେଇଯିବି ।

ମାଉସୀଙ୍କ ଘରେ ପହଞ୍ଚି ମୁହଁ ଧୋଇ ଲୁଗାବଦଳାଉଛି ଦୁଇଟି କୁନିକୁନି ହାତ

ମୋ ଅଣ୍ଟାରେ ବେଢ଼ିଗଲା । ମୁଁ ଚମକି ପଡ଼ି ପଛକୁ ଚାହିଁ ଦେଖିଲା ବେଳକୁ ମୁନ୍‌ମୁନ୍ । ଚୁପ୍‌ଚାପ୍ ଆସି ସେ ମୋତେ ଜଡ଼ାଇ ଧରିଥିଲା । କେମିତି ଏକ ଅଜଣା ଶିହରଣ ମୋ ସାରା ଦେହରେ ଖେଳିଗଲା ।

ଏଥର ତା ମା' ପଶି ଆସିଲେ । କହିଲେ, କଣ କରିବି ଭଉଣୀ । ଆପଣ ଗଲା ଦିନଠୁ ଗଣା ହେଉଛି କେବେ ସଟର ଡେ ହେବ ଆଉ କବିତା ଆଣ୍ଟି ଆସିବେ । ଦିଟାରୁ ସ୍କୁଲରୁ ଆସିଗଲା ପରଠୁ ଶହେଥର ପଚାରିଗଲାଣି ଆଣ୍ଟି କେତେବେଳେ ଆସିବେ, ଏତେ ଡେରି କରୁଛନ୍ତି କାହିଁକି, ତାଙ୍କର କଣ ସଟର ଡେ ବୋଲି ମନେ ନାହିଁ ? ଶେଷରେ ରଖେଇ ଦେଲାନି ଯେ ଧରିକି ଆସିଲି । ଦେଖୁନାହାନ୍ତି ଲୁଗା ପାଲଟିବା ପର୍ଯ୍ୟନ୍ତ ଝିଅ ମୋର ଆଉ ଅପେକ୍ଷା କରି ପାରିଲା ନାହିଁ ।

ଏଇ ଅଜଣା ଜାଗାରେ, ଛୋଟପିଲାମାନଙ୍କୁ ଆଦୌ ପସନ୍ଦ କରୁନଥିବା ହୃଦୟରେ ମୁନ୍‌ମୁନ୍ ଭଳି ଏକ ଟିକି ଝିଅଟେ ଯେ କ୍ରମଶଃ ଆସ୍ଥାନ ଜମାଇ ବସିବ ଓ ମୋତେ ମହମଭଳି ତରଳାଇ ଦେବ, ମୁଁ କେବେବି ଭାବି ନଥିଲି ।

ଧୀରେ ଧୀରେ ପରିଚୟ ବଢ଼ିଲା । ତା ମା' ମୋର ଋିନାଅପା ପାଲଟିଗଲେ । ସମ୍ପର୍କ ଆପଣରୁ ତମେକୁ ଓହ୍ଲେଇ ଆସିଲା । ସେ ଘରର ମୁଁ ଖୁବ୍ ଶୀଘ୍ର ଏକ ସଦସ୍ୟା ପାଲଟିଗଲି । ଆତ୍ମୀୟତାର ବାସ୍ନାରେ ସେମାନେ ମୋତେ ନିଜର କରିନେଲେ । ମମତାର ଗାଢ଼ ଡୋରିରେ ମୁନ୍‌ମୁନ୍ ମୋତେ ବାନ୍ଧି ପକାଇଲା । ପ୍ରତି ଶନିବାର ଦିନ ସେ ମୋତେ ଅପେକ୍ଷା କରୁଥିଲା । ଏଡ଼େ ବଡ଼ ସହରରେ ମୋତେ ଯେ ଏକ କୁନିଝିଅ ତାର ସତୃଷ୍ଣ ଆଖି ଯୋଡ଼ାକ ବିଛାଇ ଅପେକ୍ଷା କରିଛି ଭାବିଦେଲା ମାତ୍ରେ ମୋର ନାରୀତ୍ୱ ପରିପୂର୍ଣ୍ଣ ହେଇ ଯାଉଥିଲା । ଘରେ ବୋଉ ମୋର ସ୍କୁଲରୁ ଫେରିବାଟାକୁ ଦିନେ ଅପେକ୍ଷା କରୁଥିଲା । ବୋଉ ଗଲାପରେ ମୋର କଲେଜରୁ ଫେରିବାଟାକୁ ବାପା ଅପେକ୍ଷା କରୁଥିଲେ । ସେ ବି ଚାଲିଗଲେ । ମନେ ହେଉଥିଲା ଏ ଜୀବନରେ ଯେମିତି ଅପେକ୍ଷାର ଶେଷ ହେଇଯାଇଛି ମୋ ପାଇଁ । ହୁଏତ ବାହାହେଲେ ସ୍ୱାମୀ ନାମକ ବ୍ୟକ୍ତିଟି ପାଇଁ ମୁଁ ଅପେକ୍ଷା କରିବି କି ସେ ଅପେକ୍ଷା କରିବ ଜାଣିନାହିଁ । ତେବେ ରାଉରକେଲା ଭଳି ଇସ୍ପାତନଗରୀରେ କେବେବି ଦେଖିନଥିବା, ଜାଣିନଥିବା, ସ୍ୱପ୍ନରେ ଭାବିନଥିବା, ରକ୍ତର ସଂପର୍କ ଆଦୌ ନଥିବା ଏକ ଛ' ବର୍ଷର ଝିଅଟି ଯେ ମୋତେ ଅପେକ୍ଷା କରିବ ଓ ଶନିବାର କେବେ ଆସିବ ବୋଲି ଦିନ ଗଣୁଥିବ ଏକଥା ମୋ କଳ୍ପନାର ବାହାରେ ଥିଲା । ନଟେଇ ଗୁଡ଼ିକୁ ଟାଣି ନେଲାଭଳି ମୁନ୍‌ମୁନ୍ ତା ଆକର୍ଷଣରେ ମୋତେ ଧୀରେ ଧୀରେ ଟାଣି ନେଉଥିଲା । ସପ୍ତାହକ ଭିତରେ ଅଜସ୍ର ପ୍ରଶ୍ନ ସେ ମୋ ପାଇଁ ମୁଖସ୍ଥ କଲାଭଳି ସାଇତି ରଖୁଥିଲା । ଏଇ ଯେମିତି, ଆଣ୍ଟି ! ତମେ ଆଗରୁ କେଉଁଠି ଥିଲ ? ତମକୁ କାହିଁତ ଆଗରୁ ମୁଁ ଦେଖି ନଥିଲି । ତମେବି ଦିନେ

ପ୍ରକ୍ ପିନ୍ଧୁଥିଲ ? ତମେ ଆମଘରେ ରହୁନା କାହିଁକି ? ତମେ ସ୍କୁଲରେ ପଢ଼ାଅ ଆଣ୍ଟି ? ତମ ସ୍କୁଲରେ ମୋ ଭଳି ମୁନ୍‌ମୁନ୍‌ମାନେ ପଢ଼ନ୍ତି ? ତମେବି ଦିନେ ମୁନ୍‌ମୁନ୍ ଥିଲନା, ମୋଭଳି ସ୍କୁଲବକ୍ସ ଧରି ପଢ଼ିବାକୁ ଯାଉଥିଲ ? ତମେ କାହିଁକି ସଟର ଡେରେ କେବଳ ଆସୁଛ, ସବୁ ଡେରେ ଆସୁନା ? ଆଣ୍ଟି ତମର ବି ଡାଡ଼ୀମମୀ ଅଛନ୍ତି ? ମୁଁ ନୋଟି ନା ଗୁଡ୍ ଗାର୍ଲ ?

ମୁନ୍‌ମୁନ୍ ସତେକି ପ୍ରଶ୍ନ ଲହରିଟିଏ, ଚଞ୍ଚଳ ଝରଣାଟିଏ, ଜଙ୍ଗଲର ଆଜାଦ୍ କୁନି ହରିଣଟିଏ । ଏଇ ବୟସଟା କେତେ ସୁନ୍ଦର । ଧୀରେ ଧୀରେ ବୟସ ବଢ଼ିବା ସହିତ ଏ ଚଞ୍ଚଳ ଝିଅଟି ସ୍ଥିର ହେଇଯିବ । ସବୁ ଚଗଲାମି, ପ୍ରଗଲ୍‌ଭତା କୁହୁଡ଼ି ଭଳି ମିଳାଇ ଯିବ । ଦିନେ ଆସୁ ଆସୁ ରିନାଅପା କହିଲେ, ଆମ ଝିଅକୁ ବଡ଼ ହେଲେ କଣ ହେବ ବୋଲି ତା ବାପା ପଚାରିବାରୁ ସେ କଣ ଉତ୍ତରଦେଲା ଜାଣ ? ମୁଁ ପ୍ରଶ୍ନିଳ ଆଖିରେ ତାଙ୍କୁ ଚାହିଁଲି । ଝିଅ ଆମର ବଡ଼ ହେଲେ କବିତା ଆଣ୍ଟି ହେବ ବୋଲି କହିଲା । ମୋର ପ୍ରଶ୍ନିଳ ବଡ଼ ହୋଇଯାଇଥିବା ଆଖି ଯୋଡ଼ାକ କଢ଼ରୁ ଫୁଲ ପାଖୁଡ଼ା ମେଲିଲାଭଳି ହସରେ ମେଲି ହେଇଗଲା । ଏମିତି କିଏ ଆଜି ପର୍ଯ୍ୟନ୍ତ କହିନାହାନ୍ତି ବଡ଼ ହେଲେ ସେ ମୁଁ ହେବ । ମୋର ପ୍ରତିବିମ୍ବ ପାଇଟିବ । ଆଃ, ମୁଁ ଯେମିତି ଧନ୍ୟା ହେଇଗଲି । ତାହାଲେ ଦୁହେଁ ଆମେ ଦୁହିଁଙ୍କ ଭିତରେ କ୍ରମଶଃ ପେଣ୍ଡି ହେଇଯାଉଛୁ ।

ଆଉ ଦିନେ ରାତିରେ ମୁଁ ମାଉସୀଙ୍କ ଘରେ ଶୋଇଛି କବାଟ ଠକଠକ ହେଲା । ମାଉସୀ ଉଠି ଦେଖିଲେ ରିନା ଅପା ଠିଆ ହେଇଛନ୍ତି, କାନ୍ଧରେ ପଡ଼ିଛି ମୁନ୍‌ମୁନ୍ । କଥା କଣ ? କଣ ଆଉ ହେବ କବିତା ଆଣ୍ଟି ମୋ ଝିଅକୁ କି କିମିଆ କଲେ କେଜାଣି ଝିଅର ଏକା ଜିଦ୍ ସେ ତା ଆଣ୍ଟି ପାଖରେ ଶୋଇବ । ଘଣ୍ଟାଏ ହେଲା ତା ବାପା ମୁଁ ବୁଝେଇ ଚାଲିଛୁ । କାନ୍ଦ ବନ୍ଦ ହେଲାନାହିଁ ଶେଷରେ ରାତିଦୁଇଟାରେ ଧରି ବାଧହେଇ ଡିଷ୍ଟର୍ବ କଲି ।

ଦିନ ଯେତେ ପୁରୁଣା ଚାଲିଥିଲା ମୁନ୍‌ମୁନ୍ ମୋ ଭିତରେ ସଂପର୍କ ଗଭୀର ହେଉଥିଲା । ଦିନେ ତାକୁ ପଚାରିଲି, ତୁ ମୋ ମା' ହେବୁନା ଝିଅ ହେବୁ ?

ସେ କହିଲା, ତମେ କଣ ଚାହଁ କି ?

ତୁ ମୋ ମା' ହେଇଯା ।

କାହିଁକି ତମର କଣ ମା ନାହିଁ ?

ନା...

କୁଆଡ଼େ ଗଲା ?

ମରିଗଲା ।

କେମିତି ?

ଜ୍ୱର ହେଉଥିଲା ।

ମୋତେ ବି ତ ଜ୍ୱର ହୁଏ । କାହିଁ ମୁଁ ତ ମରୁନି ।

ଏହାର କଣ ଉତ୍ତର ଥାଏ ? ମୁଁ ଚୁପ୍ ହେଇଯିବାର ଦେଖି ସେ ପଚାରିଲା, ତମର କଣ ଝିଅ ଅଛି ? ଏ କଥାଟା ସେ କାହିଁକି ପଚାରିଲା ମୁଁ ହଠାତ୍ ବୁଝି ପାରିଲି ନାହିଁ । କହିଲି, ନା.. ମୋର ଝିଅ ନାହିଁ ।

ତମେ କିନ୍ତୁ କାହିଁକି ମୋତେ ଗୋଟେ ମା' ହେବାକୁ କହୁଛ । ଝିଅ ହେବାକୁ କହୁନା ।

ମୁଁ ତାକୁ ଟାଣି ଆଣିଲି ପାଖକୁ । କହିଲି, ମୋର ତ ଝିଅ ହେବ ଦିନେ ଯେତେବେଳେ ମୁଁ ବାହାହେବି କିନ୍ତୁ ତୋ ଭଳି ମା'ଟେ ମୋତେ କେଉଁଠୁ ମିଳିବ କହିଲୁ ? ମୁନ୍‌ମୁନ୍ ଏଥର ଅଭିମାନରେ ଘୁଞ୍ଚିଗଲା । କହିଲା, ତମେ ବାହା ହେବ କାହିଁକି ? ସତେତ ବାହା ହେବି କାହିଁକି ? ତାର ଏ ପ୍ରଶ୍ନରେ ବି ଫେଲ ମାରିଲି । କହିଡ ଦେଇଛି । ପ୍ରଶ୍ନର ବାଣ ଏଥର ମୁନ୍‌ମୁନ୍‌ର, କାହାକୁ ବାହାହେବ ? ତମ ଝିଅ ନାଁ କଣ ଦେବ ? ଶାନ୍ତ ବାଧ ଛାତ୍ରୀଟେ ଭଳି ଉତ୍ତର ଦେଲି, ମୁଁ ଏକ ଅଙ୍କଲକୁ ବାହାହେବି ଆଉ ମୋ ଝିଅ ନାଁ ଦେବି ଚୁନ୍‌ଚିନ୍ ।

ଏଥର ଗମ୍ଭୀର ସ୍ୱର ଶୁଭିଲା, ତମେ କାହିଁକି ଗୋଟେ ଆଙ୍କଲକୁ ବାହାହେବ, ଆଣ୍ଟିକୁ ନୁହେଁ ?

ଆଣ୍ଟିମାନେ ଆଣ୍ଟିକୁ ବାହା ହୁଅନ୍ତିନି ମା' । ଆଣ୍ଟି ପାଇଁ ଅଙ୍କଲ ଦରକାର, ଯେମିତି ତୋ ମମୀ ପାଇଁ ଡାଡୀ ।

ବାସ୍ ଏଥର ମୁନ୍‌ମୁନ୍‌କୁ ସମ୍ଭାଳେ କିଏ । ତା କହିବା କଥା ହେଲା, ତାହାଲେ ମମୀ ମୋ ଡାଡୀକୁ ବାହା ହେଇଛନ୍ତି । କାହିଁକି ହେଲେ, କେବେ ହେଲେ, କେମିତି ହେଲେ ଆଉ ମୁଁ କେମିତି ଜାଣି ପାରିଲିନି କି ଦେଖି ପାରିଲିନି ।

ରିନା ଅପା କହିଲେ, କବିତା ଆଣ୍ଟି । ଏଥର ବୁଝାନ୍ତୁ ମୋ ଝିଅକୁ । ଯାହାହେଉ ଢୋରିମାନା ସ୍ୱରୂପ କିଛି ଇଙ୍କେନ୍‌ସ ଆଉ କେତୋଟି ଗପ କହିବାକୁ ପଡ଼ିଲା । ତା ସହିତ ଆଉ କିଛି ପ୍ରଶ୍ନ ବାଣର ଶରବ୍ୟ ହେବାକୁ ହେଲା, ସେ ଆଙ୍କଲ କେଉଁଠି ଅଛନ୍ତି, କେବେ ଆସିବେ, ଏଇନା ଆସୁନାହାନ୍ତି କାହିଁକି, ସେ ଆସିଲେ ଆମ ଘରେ ରହିବେ ନା ତମ ଆଣ୍ଟି ଘରେ ???

ମୁଁ ଧୈର୍ଯ୍ୟର ସହିତ ବୁଝାଇଲି, ସେ କେଉଁଠି ରହିବେନି, ମୋତେ ଏଠୁ ନେଇ ଚାଲିଯିବେ । ଗମ୍ଭୀର ହୋଇଗଲା ମୁନ୍‌ମୁନ୍ । କହିଲା, ଆଚ୍ଛା କବିତା ଆଣ୍ଟି ! ତମର ବାହା ନହେଲେ କଣ ଚଳିବନି ?

କେଜାଣି ! ଏ ଉତ୍ତର ବି ଖୋଜିହେଲି । କହିଲି ତୁ ବି ଦିନେ ବାହାହେବ । ତୋର ବି ଗୋଟେ ବର ଆସିବ ।

ବର ? ନା... ମୁନ୍‌ମୁନ୍ ପ୍ରତିବାଦ କରି କହିଲା ମୁଁ ତମର ସେ ଅଙ୍କଲକୁ ବାହାହେବି, ତମ ସହିତ ମୁଁ ବି ଚାଲିଯିବି ।

ହସର ଲହଡ଼ି ଉଠିଲା । ରିନା ଅପା କହିଲେ, କବିତା ସେ ତମର ମା' ହେବ କାହିଁକି । ସଉତୁଣୀ ହେବାକୁ ବାହାରିଲାଣି । କହୁଥିଲିନା, ଟିକେ ପ୍ରଶ୍ରୟ ଦେଲେ ଏଇଟା ମୁଣ୍ଡରେ ଚଢ଼ିବ ।

ଆମର ଏ ମଧୁର ସଂପର୍କକୁ ଭଗବାନ ବୋଧହୁଏ ସହି ପାରିଲେନି । ବର୍ଷକ ପରେ ମୋର ଟ୍ରାନ୍‌ସଫର ହୋଇଗଲା ଭୁବନେଶ୍ୱର । ଯିବା ଆଗରୁ ମୁନ୍‌ମୁନ୍ ସହିତ ଗୋଟେ ଫଟୋ ଉଠାଗଲା । ସେ ସେପର୍ଯ୍ୟନ୍ତ ବୁଝି ପାରୁନଥିଲା ଯେ ମୁଁ ଚାଲି ଯାଉଛି ବୋଲି । ବଦଳିର ଅର୍ଥ ସେ ବା କଣ ବୁଝିବ ? ଶୁକ୍ରବାର ଦିନ ରାତିରେ ଯିବାର ଠିକ ହେଲା । ସକାଳୁ ମାଉସୀଙ୍କ ଘରେ ଜିନିଷପତ୍ର ସହ ପହଞ୍ଚିବାର ଦେଖି ମୁନ୍‌ମୁନ୍ ଆଶ୍ଚର୍ଯ୍ୟ ହୋଇଥିଲା ଓ ପଚାରିଥିଲା, ଆଣ୍ଟି । ଆଜି ତ ଫ୍ରାଇଡେ଼ । ତମେତ ସଟର ଡେରେ ଆସ ! ମୁଁ ଭାବୁଥିଲି, ଏ ଜୀବନରେ ଆଉ ମୋ ପାଇଁ କି ମୋ ପାଇଁ କେବେ ସଟର ଡେ ଆସିବନିରେ । କିଏ ଜାଣେ ଆଉ କେବେ ଦେଖା ହେବ ? ଏ ଜନ୍ମରେ କି ଆରଜନ୍ମରେ ? ମା' ରୂପରେ କି ଝିଅ ଭାବରେ ? ଯଦିବା ଦେଖା ହେବ, କେତେ ବଦଳି ଯାଇଥିବ ସମୟ । କେତେ ବଦଳି ଯାଇଥିବ ଜୀବନ । ଜଣେ ଆଣ୍ଟିରୁ ଆଇ ପାଲଟି ଥିବ । ଦିନେ ପ୍ରଶ୍ନ ବାଣରେ ପୋତି ପକାଉଥିବା ସେହି ଛୋଟ ଝିଅଟି ହଜି ଯାଇ ନିଜେ ଆଣ୍ଟି ପାଲଟି ଯାଇଥିବ । ମୁନ୍‌ମୁନ୍‌ରେ ମା' ମୋର ! ଆମେ ଦୁହେଁ ଆଜି ଯେଉଁଠି ଠିଆ ହୋଇଛୁ ଓ ଆମର ଆଜିର ଏଇ ଯେଉଁ ନାଁ ନଥିବ । ସଂପର୍କ, ଏଇଠି ହିଁ ପୃଥିବୀର ସବୁତକ ସମୟ ସ୍ଥିର ହୋଇ ଯାଆନ୍ତା କି । ଆଦୌ ପରିବର୍ତ୍ତନ ନଥାନ୍ତା, ବଦଳି ନଥାନ୍ତା ଆମେ ଉଠାଇଥିବା ଫଟୋ ଭଳି ।

ମୁଁ ତାକୁ କୋଳକୁ ନେଲି । ବୁକୁ ଭିତରେ ଚାପି ଧରିଲି ମମତାର ସବୁ ନିବିଡ଼ତା ଦେଇ । ତାର ସ୍ପନ୍ଦନ, ତାର ସାରା ଦେହର ବାସ୍ନା ମୋ ରକ୍ତରେ ଫେଣ୍ଟି ହୋଇଗଲା । ଫିସ୍ ଫିସ୍ କରି କହିଲି, ତୁ କେଉଁଠି ଥିଲୁରେ ? ଆର ଜନ୍ମରେ କଣ ଥିଲୁ ମୋର ? ତୋର ମୋର ସଂପର୍କର ନାଁ କଣ ମୁନ୍‌ମୁନ୍ ? ମୁଁ କଣ ଜାଣିଥିଲି, ରାଉରକେଲାରେ ତୋ

ଭଳି ଏକ ବେଷ୍ଟ୍ ଫ୍ରେଣ୍ଡ୍ ମିଳିବ ବୋଲି ?

ଜିନିଷପତ୍ର ବନ୍ଧାବନ୍ଧି ଭିତରେ କେଉଁଠୁ ଶୁଣିଲା କେଜାଣି ସେ ସ୍କୁଲ ଗଲା ନାହିଁ । ମୁହଁଟି ତାର ଝାଉଁଳି ପଡ଼ିଥିଲା । ଆଖି ଦୁଇଟା ଫୁଲି ଯାଇଥିଲା । କିଛି ଖାଇ ନଥିଲା । ଥତମତ ହେଇ ଅବିଶ୍ୱାସ କଣ୍ଠରେ ପଚାରିଥିଲା, ଆଣ୍ଟି ତମେ ସତରେ ଚାଲିଯାଉଛ ? ଆଉ କେବେ ଆସିବ ? କୁହ, କେତୋଟି ସଟରଡେ ପରେ ଆସିବ ? ରିନା ଅପା କହୁଥିଲେ, ତମେ ମୁନ୍‌ମୁନ୍‌କୁ ତାର ଉତ୍ତର ଦେଇ ଯାଅ କବିତା । ନଚେତ୍ ଜାଣତ ତା ପ୍ରଶ୍ନ ପାଖରେ ମୁଁ କେତେ ନର୍ଭସ ହେଇଯିବି । କେତେ ଆଉ ତାକୁ ମିଛ ଭିତରେ, ସ୍ୱପ୍ନ ଭିତରେ ବୁଡ଼ାଇ ରଖିବି ? ଏ ତ ଦିନକର କଥା ନୁହେଁ, ମାସ ମାସର, ବର୍ଷ ବର୍ଷକର । ତାଙ୍କ କଣ୍ଠ କାନକୁ କେମିତି ଅସ୍ୱାଭାବିକ ଶୁଭିଲା ।  ମୁଁ ତାଙ୍କ କାନ୍ଧରେ ହାତ ପକେଇ କହିଲି, ବ୍ୟସ୍ତ ହୁଅନା, ସମୟ ସବୁ ଭୁଲାଇ ଦେବ । ସେତିକିବେଳେ ମୁନ୍‌ମୁନ୍ ମୋତେ ହଲାଇ ପୁଣି ଥରେ ତା ପ୍ରଶ୍ନ ଦୋହରାଇଲା, କବିତା ଆଣ୍ଟି ! କୁହନା କେତୋଟି ସଟର ଡେ ପରେ ଆସିବ ? ବେଡ଼ିଂ ବାନ୍ଧିବା ବାହାନାରେ ମୁଁ ତାକୁ ଚାହିଁ ପାରୁ ନଥିଲି । ପିଠି କରି ନେଲି । ଅସଂଖ୍ୟ ଜୁଳୁଜୁଳିଆ ପୋକରେ ମୋ ଆଖି ଝଲମଲ ହେଇଗଲା ।

ରାଉରକେଲା ଛାଡ଼ିଲାବେଳେ ମୁନ୍‌ମୁନ୍ ଗେଟ୍ ପାଖରେ ଚୁପ୍‌ଚାପ୍ ଠିଆ ହେଇଥିଲା । ତାର କୁନି କୁନି ହାତରେ ଥିଲା ଫୁଲ ତୋଡ଼ାଟିଏ । ସେ ନିରବରେ ମୋତେ ବଢ଼ାଇଦେଇଥିଲା । କିଛି ବି ପଚାରୁନଥିଲା । ତାର ସବୁ ପ୍ରଶ୍ନ ଯେମିତି ବରଫ ପାଲଟି ଯାଇଥିଲା । ତଥାପି ତାର ଲୁହ ଥମ୍‌ଥମ୍ ଆଖି ଯୋଡ଼ାକ କହୁଥିଲା, ଆଣ୍ଟି ! କେତୋଟା ସଟର ଡେ ମୋତେ ଗଣିବାକୁ ହେବ ? କେତୋଟା ?

ମୁଁ ତାକୁ ବେଶି ସମୟ ଅନାଇ ପାରିଲି ନାହିଁ । ଆଃ, ଏ ବୟସରେ ଏକ ସାତବର୍ଷର ଝିଅର ସାମ୍ନା କରିବା ଫେର୍ ଏତେ କଷ୍ଟଦାୟକ ?



# ବନ୍ଧୁ

ବେଳେବେଳେ ଜୀବନର ଅଙ୍ଗେଲିଭା ଅନୁଭୂତି ଚଳଚ୍ଚିତ୍ର ଦେଖିଲା ଭଳି ଲାଗେ । ସମଗ୍ର ଜୀବନଟା କାହାଣୀ ପାଲଟିଯାଏ । ସଚେତ କାହାଣୀକୁ ବାଦ୍ ଦେଲେ ଜୀବନ କାହିଁ ? ଘଟଣାହୀନ ଜୀବନର କିଛି ମାନେ ଥାଏ ? ତଥାପି ସିଭ୍ରା ଭାବେ ତା ଭଳି ଗୋଟିଏ ଗୋଟିଏ ବ୍ୟତିକ୍ରମ ଜୀବନରେ ଜନ୍ମ ନିଏ କାହିଁକି ? ଦାୟିତ୍ୱ ସମ୍ଭାଳିବା ପାଇଁ ? କର୍ତ୍ତବ୍ୟ କରିବା ଲାଗି କ'ଣ ଈଶ୍ୱର ସେମାନଙ୍କୁ ପୃଥିବୀକୁ ଆଣିଥାନ୍ତି ? ଆଉ ତାରି ଭିତରେ ଜୀବନର ସ୍ୱପ୍ନ, ସମ୍ଭାବନା କାହିଁ କେଉଁ ଆଡ଼େ ଭାସିଯାଏ ।

ଏକଥା ଭାବିଦେଲେ ମୁହଁ ତାର ଥମ୍ ଥମ୍ ହେଇଯାଏ । ଈଶ୍ୱରଙ୍କର ଏହି ପାଟର ଅନ୍ତର ରୀତି ଉପରେ ତାର ଭୀଷଣ ଅଭିମାନ ଆସେ । ତା ମୁହଁକୁ ଚାହିଁ ବନ୍ଧୁ ସମ୍ବିତ୍ କହେ, ଛି ସିଭ୍ରା ! ଭାଙ୍ଗିପଡ଼ନା । ତମକୁ ମୁଁ ଯେତେ ବୁଝିଛି, ଯେତେ ଜାଣିଛି ଆଉ ବୋଧହୁଏ ସଂସାରରେ କେହି ଜାଣି ନଥିବେ । ମନ ଯେତେବେଳେ ଓଜନିଆ ହେଇଯିବ, କାହାପାଖରେ କିଛି କହିବାକୁ ଚାହୁଁଥିବ ସେତେବେଳେ ମୁଁ ଅଛି । ତମର ଦୁଃଖ, ଅସହାୟତାରୁ କିଛି ଭାଗ ମୋତେ ଦେଇଦେବ । ଆପାତତଃ ହାଲ୍କା ହେଇଯିବ । ବନ୍ଧୁ ଭାବରେ ଏଇ ଟିକକ କଣ ମୁଁ ତମଠୁ ନେଇ ପାରିବିନି ? ବିଶ୍ୱାସ ହେଉନାହିଁ ?

ସିଭ୍ରା ସମ୍ବିତର କଥା ଶୁଣି ହସି ପକାଏ । ତା ଭିତରେ ଥମ୍ ଥମ୍ ଭାବ କୁଆଡ଼େ ମିଳାଇଯାଏ । ସତରେ ସମ୍ବିତ୍ ଭଳି ବନ୍ଧୁଟେ ପାଇବା ବି ଭାଗ୍ୟର କଥା । ଦୁହେଁ ନର୍ସରୀରୁ ଆରମ୍ଭ କରି ସମଗ୍ର କଲେଜ ଜୀବନ ଏକାଠି ପଢ଼ିଛନ୍ତି । ପଢ଼ା ସରିଲାପରେ ସମ୍ବିତ ତା ବାପାଙ୍କର ବିଜ୍‌ନେସ୍ ସମ୍ଭାଳିଛି ଆଉ ସିଭ୍ରା ଅଧ୍ୟାପିକା ଚାକିରି କରି ଘର ସମ୍ଭାଳିଛି । ଘରର ବଡ଼ ଝିଅ ହିସାବରେ ସେ ତା ନିଜ ଦାୟିତ୍ୱ ବୁଝି ଯାଇଛି ।

ସମୟ ପାଇଲେ ସିଭ୍ରା କଲେଜରୁ ସମ୍ବିତର ଦୋକାନକୁ ଚାଲିଯାଏ । ଦୁହେଁ ଚା ପିଅନ୍ତି । ଫ୍ରକ୍ ପ୍ୟାଣ୍ଟ ପିନ୍ଧା ସ୍କୁଲ ଜୀବନକୁ ମନେ ପକାନ୍ତି । ବହିଚିରା, ସିଲଟଭଙ୍ଗା, ବାଳଟଣାଟଣି, ବୋହୂଚୋରୀ, ମାଡ଼ ମରାମରି ଏମିତି କେତେକଣ ଘଟଣା ଛାଏଁ ଛାଏଁ ମନେ ପଡ଼ିଯାଏ । ଦୁହେଁ ହସି ଉଠନ୍ତି । ହାୟରେ ପିଲାଦିନ ତୁ ଲୁଚିଗଲୁ କେଉଁଠି । ସୁବିଧା ପାଇଲେ ସମ୍ବିତ୍ ବି କଲେଜକୁ ଚାଲି ଆସେ । କିଛି ସୁଖଦୁଃଖ ଘଟଣା ଘଟିଥିଲେ କେହି କାହାକୁ ନ କହି ରହି ପାରନ୍ତି ନାହିଁ । ଏମିତି କିଛି ନାହିଁ ଯାହା ପରସ୍ପର ଜାଣି ନାହାନ୍ତି । ସିଭ୍ରା ଜୀବନର ପ୍ରତିଟି ଘଟଣାର ସାକ୍ଷୀ, ନିରବଦ୍ରଷ୍ଟା ସମ୍ବିତ । ସିଭ୍ରା ସେଥିପାଇଁ ମନକୁ ବୁଝାଏ, ଭଗବାନଙ୍କୁ ଧନ୍ୟବାଦ ଦିଏ ଯେ ସମ୍ବିତ ଭଳି ବନ୍ଧୁଟିଏ ସେ ଦେଇଛନ୍ତି । ବନ୍ଧୁହୀନ

ଭାବରେ ବଞ୍ଚିବା କଥା ସେ ଭାବି ପାରେ ନାହିଁ । ଆଜିକାଲି ବନ୍ଧୁତ୍ୱ ଶବ୍ଦଟାବି କେତେ ଡେଲିକେଟ୍ ହେଇଯାଇଛି । ପୁଣି ତାହା ଯଦି ଗୋଟିଏ ପୁଅ ଓ ଆଉ ଗୋଟିଏ ଝିଅ ମଧ୍ୟରେ ପ୍ରତିଷ୍ଠିତ ହୁଏ ସାଧାରଣତଃ ସମସ୍ତେ ସନ୍ଦେହର ଚାଦର ବିଛାଇ ଦିଅନ୍ତି । କିନ୍ତୁ ପ୍ରକୃତ ବନ୍ଧୁତ୍ୱ ପାଖରେ ସମୟହିଁ ନିଜର ପରାଜୟ ମାନିନିଏ । ସେ ଯାହାହେଉ ସମିତ କଲେଜ ଆସିଲେ ଦୁହେଁ କଲେଜ କ୍ୟାଣ୍ଟିନ୍‌ରେ ଗରମ ଆଳୁଚପ୍ ଖାଆନ୍ତି, କଫି ପିଅନ୍ତି ଆଉ ଅଛିଣ୍ଡା ଗପ ଯୋଡ଼ିଦିଅନ୍ତି । ପିଲାଦିନକୁ ଅଣ୍ଡାଳି ହୁଅନ୍ତି । ତାରି ଭିତରେ ସମୟ ପ୍ରଜାପତି ସାଜି ଆଗକୁ ଗଡ଼ିଯାଏ ।

ସିକ୍ତାର କେଉଁ କାହାଣୀଟି ସମିତ୍‌କୁ ଅଛପା ଯେ ? ପିଲାଦିନରୁ ବାପା ଚାଲିଯାଇଥିଲେ । ତଳେ ସାନଭାଇ ଭଉଣୀ । ମା' ବହୁ କଷ୍ଟରେ ତା ନାଁ କଲେଜରେ ଲେଖାଇ ଦେଇଥିଲେ ଆଉ କହୁଥିଲେ ସିକ୍ତା ଚାକିରି କଲେ ମୋର ସବୁ ଦୁଃଖ ଚାଲିଯିବ । ସେ ତା ଭାଇ ଭଉଣୀକୁ ପଢ଼ାଇ ମଣିଷ କରିବ, ବାହାସାହା ଦେବ । ସେତ ମୋର ବଡ଼ପୁଅ । କିନ୍ତୁ ଚାକିରି ପଇସା ଖାଇବାକୁ ମା ରହି ନଥିଲା । ପ୍ରଥମେ ଚାକିରିର ମାସେ ନ ପୂରୁଣୁ ସେ ଚାଲିଗଲା ଆଉ ସତକୁ ସତ ଘରର ସବୁ ଦାୟିତ୍ୱ ତା ଉପରେ ଛାଡ଼ି ଦେଇଗଲା । ସେଦିନ ସମିତ ହିଁ ଆଶ୍ୱାସନା ଦେଇ କହିଥିଲା, ଛି ସିକ୍ତା, ଭାଙ୍ଗି ପଡ଼ନା । ମୁଁ ଅଛି । କେବେ ଯଦି ଏ ବନ୍ଧୁ ତମର କାମରେ ଆସିବ ନିଜକୁ ଧନ୍ୟ ମନେ କରିବି । ସମିତ ହିଁ ମା'ର କୋକେଇରେ କାନ୍ଧ ଦେଇଥିଲା । ମା'ର ଦଶାହ କ୍ରିୟା ସରିବା ଯାଏଁ ବଡ଼ପୁଅ ଭଳି ସବୁ ବୁଝାସୁଝା କରିଥିଲା । ସେଦିନ ସିକ୍ତା ଭାବିଥିଲା ସମିତ ତାର ବନ୍ଧୁ ନୁହେଁ, ଭାଇଟିଏ ମଧ । ସତରେ ଆଜିର ଏଇ ହିସାବୀ ଦୁନିଆରେ କେତେ ଜଣ ବନ୍ଧୁତ୍ୱର ମୂଲ୍ୟ ବୁଝନ୍ତି ।

ଦେଖୁ ଦେଖୁ ଦିନ ପୁଣି ପୁରୁଣା ହେଇ ଚାଲିଲା । ସମୟ ପୃଷ୍ଠା ଓଲଟାଇଲା । ସାନ ଭାଇ ବି.ଏ ପାସ୍ କରିଗଲା । ଭଉଣୀ ଜିତା ବି କଲେଜରେ ପାଦଦେଲା । ଖୁସୀ ହେଲା ସିକ୍ତା । ମା'ତ ଏଇୟା ଚାହିଁଥିଲା ପିଲାମାନେ ତାର ମଣିଷ ହୁଅନ୍ତୁ । ସିକ୍ତା ତାଙ୍କର ଝିଅ ନୁହେଁ ପୁଅ । ସେ ତାଙ୍କର ଇଚ୍ଛା ପୂରଣ କରିଛି ।

ଦିନେ ସମିତ ଆସି ଏକ ଶୁଭ ଖବର ଦେଇଗଲା । ନିଜେ ଛୁଟିନେଇ ସିକ୍ତା ଆପଣା ହାତରେ ସମିତକୁ ବରବେଶ କରିଥିଲା । ବରବୋହୂକୁ ସଙ୍ଖୋଳି ଥିଲା । ଗୀତା ଭାଉଜଙ୍କ ପାଖରେ ସମିତ ଆସୁ ଆସୁ ହିଁ ତାକୁ ପରିଚିତ କରାଇ ଦେଇଥିଲା । ସେ ବି ଆପଣାର ମଣିଷଭଳି ହସିଦେଇଥିଲେ । ଧୀରେ ଧୀରେ ତାଙ୍କ ସହିତ ମଧ ଦୋସ୍ତି ଜମି ଯାଇଥିଲା । ଛୁଟିଦିନ ଗୁଡ଼ିକରେ ସେ ଡକାଇ ନେଉଥିଲେ । ତାସ୍, କ୍ୟାରମ୍‌ର ଆସର ପ୍ରାୟ ଜମୁଥିଲା । ସମିତ୍ ଦିନେ କହିଲା, ଏଥର ବାହା ହୋଇଯାଅ ସିକ୍ତା । ଆଉ ଅପେକ୍ଷା କାହିଁକି ? ବିରଞ୍ଚି

ତ ବି.ଏ. ପାଶ୍ ପରେ କ୍ଲରିକାଲ ଜବ୍‌ଟେ ବି ପାଇଗଲା । ଏବେ ତମେ ନିଜ ବିଷୟରେ ଚିନ୍ତା କର, ବିଶ୍ରାମ ନିଅ । ପୁରୁଷ ହେଉ ବା ନାରୀ, ଯାହାହେଲେ ବି ସାହାରା ଲୋଡ଼ା ।

କିନ୍ତୁ...

ତାର ଦ୍ୱିଧାଗ୍ରସ୍ତ ମୁହଁକୁ ଚାହିଁ ସମ୍ବିତ୍ କହିଚାଲିଥିଲା, କିନ୍ତୁ ଫିନ୍ତୁ କିଛି ନାହିଁ ସିକ୍ତା । ଜୀବନର ସବୁ କିନ୍ତୁକୁ ତମେ ପାରି ହେଇଯାଇଛ । ଗୀତା ଭାଉଜ ବି ସେଇୟା କହିଲେ, ହଁ ସିକ୍ତା ! ତମେ ସମ୍ବିତ୍‌ଙ୍କ କଥା ରଖ । ମା' ବାପା ଥିଲେ ସିନା ତମ କଥା ଚିନ୍ତା କରିଥାନ୍ତେ । ଆମେ ତମର ଭାଇଭାଉଜ ଭଳି । ତମେ କହିବ ତ ପାତ୍ର ଖୋଜିବା ଦାୟିତ୍ୱ ଆମର ।

ସିକ୍ତା ଚିନ୍ତାକଲା । ସେ ଗଲାପରେ ସାନଭଉଣୀଟା ଏକବାରେ ଏକା ହେଇଯିବ । ଅନ୍ତତଃ ତା ବାହା ଆଗରୁ ବିରଞ୍ଚିକୁ ତ ବାହା କରାଇପାରେ । ଭାଉଜ ଆସିଗଲେ ଘର ସମ୍ଭାଳିବାର ଦାୟିତ୍ୱ ଯିବ ଆଉ ଜିତା ବି ତା ପଢ଼ାପଢ଼ି ଚୁଲାଇ ପାରିବ, ଏକୁଟିଆ ହେବ ନାହିଁ । ସମ୍ବିତ୍ ଓ ଗୀତା ଭାଉଜ ବି ପ୍ରସ୍ତାବଟାରେ ରାଜି ହେଇଗଲେ । ବିରଞ୍ଚି ପାଇଁ ମଧ ଝିଅ ଖୋଜା ଆରମ୍ଭ ହେଇଗଲା । ଦୁଇଜଣଙ୍କର ବାହାଘରର ପାତ୍ରପାତ୍ରୀ ଠିକଣା ହେଲା ପରେ କିଣାକିଣିରେ ସମସ୍ତେ ଲାଗି ପଡ଼ିଲେ । ଘର ଚୂନ ଦିଆଗଲା, ନିମନ୍ତ୍ରଣ କାର୍ଡ ଛପା ହେଇ ଆସିଲା । ବହୁବର୍ଷ ପରେ ଖୁସୀର ହିଲ୍ଲୋଳ ସତେକି ଏ ଘରେ ପାଦ ପକାଇବାକୁ ଆସିଲା । ବହୁବର୍ଷ ହେଲା ସ୍ୱପ୍ନ ଦେଖିବାକୁ ଭୁଲି ଯାଇଥିବା ସିକ୍ତା କିଛି ମଧୁର ରଙ୍ଗୀନ ସ୍ୱପ୍ନରେ ବିଭୋର ହୋଇଗଲା । ହେଲେ... ଏତେ ବଡ଼ ଖୁସୀକୁ ସତେକି ଭଗବାନ ସହିପାରିଲେ ନାହିଁ । ବିରଞ୍ଚି କାର୍ଡ଼ ବାଣ୍ଟିବାକୁ ଯାଇ ଫେରିଲା ବେଳେ ତାର ଆକ୍ସିଡେଣ୍ଟ ହେଲା । ମୃତ୍ୟୁ ମୁଖରୁ ବର୍ତ୍ତିଗଲା ସିନା କିନ୍ତୁ ଗୋଟାଏ ଗୋଡ଼ ତାର ପାରାଲିସସ୍ ହେଇଗଲା । ସେଦିନ ରକ୍ତାକ୍ତ ବେହୋସ ଭାଇକୁ ହସ୍‌ପିଟାଲରେ ଆଡ଼ମିସନ କଲାବେଳେ ବାକି ବଣ୍ଟା ହେଇନଥିବା ବାହାଘରର କାର୍ଡ଼ସବୁ ଚିରି ସେ ଉଡ଼ାଇ ଦେଇଥିଲା । ନିଜ ଦେହରୁ ରକ୍ତ ଦେଲାବେଳେ ସିକ୍ତା ଅବଶିଷ୍ଟ ଜୀବନ ପାଇଁ ସତେକି ନିଜକୁ ସଜାଡ଼ି ନେଇଥିଲା । ସେ ଦିନ ନିର୍ବାକ ଭାବରେ ଠିଆ ହେଇଥିଲା ସମ୍ବିତ୍ । କିଛି ବୁଝାଇବା, ସାନ୍ତ୍ୱନା, ଉପଦେଶ ଦେବା ତା ପାଖରେ ସତେକି ଶେଷ ହେଇ ଯାଇଥିଲା । ତାକୁ ଚାହିଁ ଫିକା ହସଟେ ହସି ଦେଇ କହିଥିଲା ସିକ୍ତା, ଦେଖିଲତ ମୋ ଭାଗ୍ୟ ସମ୍ବିତ୍ ! ସୁଖ ମୋ ଜୀବନରେ ଲେଖା ନାହିଁ । ତମେ କହିଥିଲ ମୁଁ ଜୀବନର ସବୁ କିନ୍ତୁକୁ ପାରି ହେଇଯାଇଛି ବୋଲି । ହେଲେ ଏ କିନ୍ତୁ କାହିଁକି ? କୁହ ସମ୍ବିତ୍, ଚୁପ୍ କାହିଁକି ? ତମର କଣ ମୋତେ କିଛି କହିବାର ନାହିଁ ? ଏ ଅସମୟରେ କିଛି ବୁଝାଇବାର, ସାନ୍ତ୍ୱନା ଦେବାର ନାହିଁ ? ସମ୍ବିତ ମୁହଁ ଲୁଚାଇ ଦେଇଥିଲା ନିଜ ବାହୁ ଭିତରେ । ସିକ୍ତା ପୁଣି ହସିଥିଲା । ମୋ ଜୀବନର କେଉଁ ଘଟଣା ତମ ପାଖରେ ଅଛପା ଯେ ପିଲାଙ୍କ ଭଳି ଆଜି ମୋ ଲାଗି କାନ୍ଦି ପକାଇଚ ।

ଜଣେ ବନ୍ଧୁ ତା ବାନ୍ଧବୀ ଜୀବନର ବିଡ଼ମ୍ବନାରେ ଲୁହ ଢାଳୁଛି । କାନ୍ଦ ସମ୍ବିତ୍, ଯାହା ମୁଁ ପାରୁନାହିଁ ତାହା ତମେ ବରଂ ମୋ ପାଇଁ କରିଦିଅ । ଦେଖ ମୋ ଆଖିରେ ଲୁହ ନାହିଁ । ମୁଁ କଣ ତମଭଳି ନାକକାନ୍ଦୁରା ହେଇଛି ଯେ ଏଇ ଟିକିଏ ଟିକିଏ କଥାରେ...

ସିତ୍ତା ! ସମ୍ବିତ୍ ତାକୁ ତା ବାକ୍ୟ ପୂରଣ କରିବାକୁ ଦେଇ ନଥିଲେ । ବହୁ କଷ୍ଟରେ କହିଥିଲେ, ସତରେ ମୁଁ କେବେ ଭାବି ନଥିଲି ଯେ ତମେ ଏଡ଼େ ଭାଗ୍ୟହୀନା ବୋଲି । ଏତେ ପୋଡ଼ାକପାଳୀ ବୋଲି ? ତମକୁ ଏକ ଅଲଗା ରୂପରେ ଦେଖିବି ବୋଲି କେତେ ଭାବପ୍ରବଣତା ମୋର ଥିଲା । ହେଲେ... ଏସବୁ କଣ ହେଇଗଲା ସିତ୍ତା ?

ତାପରେ ବିରଞ୍ଚିର ଚିକିତ୍ସା ଲାଗି ସବୁ ରୋଜଗାର ପାଣି ଭଳି ଖର୍ଚ୍ଚ ହେଇଗଲା । ସବୁ ପ୍ରକାରର ଚେଷ୍ଟା କରିଥିଲା ସେ । ହେଲେ ବିରଞ୍ଚି ଦେହର ଅଧା ପଥର ପାଲଟି ଯାଇଥିବା ଅଂଶକୁ କେହି ଆଉ ଚଞ୍ଚଳ କରି ପାରିଲେ ନାହିଁ । ସବୁଦିନ ଲାଗି ସେ ଅକାମି ହେଇଗଲା । ତାପରଠୁ ସମ୍ବିତ୍ କି ଗୀତା ଭାଉଜ କେବେ ତାର ବାହାଘରର ପ୍ରଶ୍ନ ଉଠାଇ ନାହାନ୍ତି । ସେମାନେ ବୁଝି ଯାଇଛନ୍ତି ଏ ଜନ୍ମରେ ତାହା ତା ଜୀବନରେ ସମ୍ଭବପର ନୁହେଁ । ସାହାର। ବିହୀନ ହେଇ ବି ପୃଥିବୀରେ ଜଣେ ଜଣେ ପୁରୁଷ କି ନାରୀକୁ ବାଧହେଇ ବଞ୍ଚିବାକୁ ପଡ଼େ । ଯେଉଁ ଭାଇ ତାର ବୁଢ଼ାକାଳେ ପାଖରେ ଠିଆ ହେଇଥାନ୍ତା, ତାକୁ ସେ ଗାଧୋଇଦେଲା, ତାର ଝାଡ଼ା ପରିସ୍ରା ସଫାକଲା ଆଉ ନିଜ ବିଡ଼ମ୍ବିତ ଭାଗ୍ୟକୁ ଚାହିଁ ହସିଦେଲା । ଈଶ୍ୱରଙ୍କ ଉଦ୍ଦେଶ୍ୟରେ କହିଲା, କେତେ ପରୀକ୍ଷା ନେବ ? ଭାବୁଛକି ମୁଁ ଭାଙ୍ଗି ପଡ଼ିବି ? ଦେଖ ମୋ ପାଦରେ, ମୋ ମନରେ ତଥାପି କେତେ ଶକ୍ତି ଅଛି ।

ଦିନ ଗଡ଼ି ଚାଲିଲା, ସମୟ ପାଇଲେ ସେ ସମ୍ବିତ ଘରକୁ କିମ୍ବା ସେମାନେ ତା ପାଖକୁ ଆସୁଥିଲେ । କ୍ଷଣକ ଲାଗି ସେମାନେ ବାସ୍ତବ ଜୀବନକୁ ଭୁଲିଯାଇ ଅତୀତକୁ ମନେ ପକାଉଥିଲେ । ପୁଣି ସମ୍ବିତର ପୁଅର ଏକୋଇଶାରେ ସବୁଠୁ ବେଶି କାମ କରିଥିଲା ନିଜେ ସିତ୍ତା । ମିଠା ବନାଇବାଠାରୁ ନିମନ୍ତ୍ରିତ ଅତିଥିମାନଙ୍କର କଥା ବୁଝିବା ଯଥାସାଧ ତୁଲାଇଥିଲା । ଗୀତା ଭାଉଜ ମୁଗ୍ଧ ଦୃଷ୍ଟିରେ ଚାହିଁ କହୁଥିଲେ ବନ୍ଧୁ ହେବ ତ ଏମିତି । ପରସ୍ପରର ସୁଖଦୁଃଖରେ ଯଦି ଠିଆ ହେଇ ନ ପାରିଲ ତାହାଲେ କି ବନ୍ଧୁତ୍ୱ ! ଦୁଃଖହିଁ ବନ୍ଧୁତ୍ୱର ମାପକାଠି । ତମ ଦୁହିଁଙ୍କୁ ଦେଖିଲେ ସତରେ ମୋର ଈର୍ଷା ହୁଏ । ହାୟ ମୋର କି ଜଣେ ବନ୍ଧୁ ଥାନ୍ତେ !

ଦେଖୁ ଦେଖୁ ଜିତା ବି.ଏ. ପାଶ୍ କରିଗଲା । ଭାଗ୍ୟ ତାର ଏତେ ଭଲ ଯେ ବରପାତ୍ର ଆପେ ଆପେ ଆସି ଲାଗିଗଲେ । ବିଳମ୍ବ କରିବାର କିଛି କାରଣ ନ ଥିଲା । ବାହାଘର ହେଇଗଲା ଭଲରେ । ଏକାଠି, ଏକ ପରିବେଶରେ ଜୀବନ ଆରମ୍ଭ କରିଥିଲେ ହେଁ ଭାଗ୍ୟ କାହାକୁ ନେଇ କେଉଁଠି ପହଞ୍ଚାଇ ଦିଏ, ରାସ୍ତା ଅଲଗା କରିଦିଏ । ବାହାଘରର କେତୋଟା

ମାସ ପରେ ଜିତା ତା ବରସହ ବିଦେଶ ଚାଲିଗଲା ।

ଯେ ବି ସସ୍ତ୍ରୀକ ସେମାନଙ୍କୁ ବିଦାୟ ଦେଲାବେଳେ ଏୟାରପୋର୍ଟକୁ ଆସିଥିଲେ ଗୀତା ଭାଉଜ ଆଉ ସମ୍ପିତ । ସେହି ସୁଖୀ ଦମ୍ପତ୍ତିକୁ ଦେଖୁ ଦେଖୁ ସିକ୍ତାର ଆଖି ଭରି ଉଠିଥିଲା । ପ୍ରଥମ ଥର ପାଇଁ ଅଜାଣତରେ ସେ ଜିତାକୁ ଈର୍ଷା କରିଥିଲା । କାହା ଭାଗ୍ୟରେ ସବୁ କିଛି ଆପେ ମିଳିଯାଏ, ଖୋଜିବାକୁ ପଡ଼େନା, ସଂଗ୍ରାମ କରିବାକୁ ହୁଏନା । ପ୍ଲେନ୍ ଉଠିଲା ପରେ ସେମାନେ ଘରକୁ ଆସି ଚା ପିଇଥିଲେ । ଚା କପ୍‌ର ଗରମ ବାମ୍ପକୁ ଚାହିଁ ତାକୁ ବୁଝି ପକାଇଲା ଭଳି ସମ୍ପିତ୍ କହିଥିଲେ, ହଁ ସିକ୍ତା ! ବାସ୍ତବତାକୁ କେହି କଣ କେବେ ଫାଙ୍କି ଦେଇ ପାରିଛି ? ତେଣୁ ଜୀବନର ସମସ୍ତ ନିଷ୍ଠୁର ସତ୍ୟକୁ ତମେ ଗ୍ରହଣ କରିବାକୁ ବାଧ । ଚିନ୍ତା କାହିଁକି ? ମୁଁ ତ ପାଖରେ ଅଛି । ବିରହକୁ ବୋଝ ବୋଲି ଭାବନା, ତମର ସାହାରା ବୋଲି ମାନି ନିଅ । ଦେଖିବ ସାନ୍ତ୍ୱନା ମିଳିଯିବ । କର୍ତ୍ତବ୍ୟ କରିବାକୁ ସମସ୍ତଙ୍କୁ ସୁଯୋଗ ଦିଅନ୍ତି ନାହିଁ ଭଗବାନ । ସେଥିପାଇଁ ତମେ ତମର ସବୁକିଛିକୁ ସେହି ଭଗବାନଙ୍କ ଉପରେ ଛାଡ଼ିଦିଅ । ଦେଖିବ ଆପେ ଆପେ ମେଘମୁକ୍ତ ହେଇଯିବ ମନ ।

ସେଦିନ କଲେଜରେ ଫୋନ୍‌ରେ କଥାଟା ଶୁଣି ପଥର ପାଲଟି ଗଲା ସିକ୍ତା । ହାର୍ଟ ଆଟାକ୍‌ରେ ସମ୍ପିତ୍... । ଏହା କେମିତି ସମ୍ଭବ ? ସମ୍ପିତର ନିର୍ଜ୍ଜିବ ଦେହ ପାଖରେ ଠିଆ ହେଇ ବି ସେ ବିଶ୍ୱାସ କରି ପାରୁନଥିଲା । କରିଥାନ୍ତା କେମିତି ? ତାର ଯେ ଅନେକ ବର୍ଷ ବଞ୍ଚିବାର ଥିଲା । ଆଗରେ ଲମ୍ୱା ସମୃଦ୍ଧ ଜୀବନ ପଡ଼ିଥିଲା । ଫୁଲଫଳ ଭରା ଏକ ଦୁନିଆ ଥିଲା । କେତେ କଣ ସମ୍ଭାବନାରେ ପରିପୂର୍ଣ୍ଣ ଥିଲା । ସମ୍ପିତର ଜୀବନରେ ନାହିଁ ନଥିବା ସ୍ୱପ୍ନ ଥିଲା । କେତେ କଣ କଳ୍ପନା ଜଳ୍ପନା ଥିଲା । ବସି ପଡ଼ିଥିଲା ସିକ୍ତା । ଆଉ କିଏ ତାକୁ ବୁଝାଇବ ? ଜୀବନର ସତ୍ୟକୁ ସାମ୍ନା କରିବାକୁ ଉପଦେଶ କିଏ ଦେବ ? କହିବ, ମୁଁ ତ ପାଖରେ ଅଛି, ତମର ଚିନ୍ତା କଣ ? ତାର ପରିଚିତ ପୃଥିବୀରେ ସମ୍ପିତ ତାକୁ ଯେତେ ଟିକିନିଖି ବୁଝିଥିଲା ସେ ନିଜେ ବି ନିଜକୁ ସେତେ ବୁଝି ପାରିନଥିଲା । ଅତୀତର କେତେ କଥା ମନେ ପଡ଼ିଗଲା । କେତେ ସବୁ ନିବିଡ଼ ଦିନ, ଘଟଣାସବୁ ସାମ୍ନାରେ ଝୁଲି ପଡ଼ିଲା । ତାହାଲେ ତାକୁ ଅବଶିଷ୍ଟ ଜୀବନ ବନ୍ଧୁହୀନ ଭାବେ କଟାଇବାକୁ ପଡ଼ିବ ? କେମିତି ? ବନ୍ଧୁ ଶୂନ୍ୟ ହେଇଗଲେ ଏମିତି ଲାଗେ ଜୀବନ ? ଏମିତି ବଦଳିଯାଏ ଜୀବନର ଚିତ୍ରପଟ ? ଦୁଃଖ ବାଣ୍ଟିବାକୁ, ସୁଖ ନେବାକୁ ଯଦି କେହି ନ ମିଳନ୍ତି ସେମିତି ବଞ୍ଚି ରହିବାରେ ଲାଭ କଣ ? ଯା ପରେ ଟିକିଏ ଭାଙ୍ଗି ପଡ଼ିଲେ କେହି କହିବେନି, ଏଇ ସିକ୍ତା ଥକି ପଡୁଛି ? ସମ୍ପିତ ଯେ ଚିରଦିନ ଲାଗି ତାଠରୁ ଦୂରେଇ ଯାଇଛି ଏ କଥାଟାକୁ ଗ୍ରହଣ କରିନେବା ତା ପକ୍ଷରେ ଆଦୌ ସମ୍ଭବପର ହେଉ ନଥିଲା । କେମିତିବା ହେଇଥାନ୍ତା ? ସମ୍ପିତ୍ ବିନା ତାର ପରିଚିତ ପୃଥିବୀ ଏତେ ଧୂସର ହେଇପାରେ ? ଏତେ ଉଦାସ ପାଲଟିଯାଇ ପାରେ ସକାଳର ପ୍ରତିଟି ସୂର୍ଯ୍ୟୋଦୟ ?

କେତେଦିନ ବିତିଯାଇଥିଲା କେଜାଣି । ନିଜ ଭିତରେ ସେ ତ ଏଇଦିନ କେତୋଟାରେ ଏକାମ୍ବ ହେଇ ଯାଇଥିଲା । ସବୁକିଛି ତା ପାଖରେ ଅଚିହ୍ନା, ଅଶୁଣା ପାଲଟି ଯାଇଥିଲା । ସେଦିନ କବାଟରେ ଠକ୍ ଠକ୍ ଆଓ୍ୱାଜ୍ । ପୁଅକୁ ଧରି ଗୀତା ଭାଉଜଙ୍କ ସାଦାବେଶ, ଫିକା ଚେହେରାକୁ ସେ ସାମ୍ନାକରି ପାରୁନଥିଲା । ଜଣେ ପରିଚିତ ମଣିଷକୁ ଆଉ ଜଣେ ପରିଚିତ ବ୍ୟକ୍ତିତ୍ୱ ପକ୍ଷରେ ସାମ୍ନାସାମ୍ନି ହେବାକୁ ଏତେ ଅଡୁଆ ଲାଗେ ? ଗୀତା ଭାଉଜ ତା କାନ୍ଧରେ ହାତ ଥୋଇ କହି ଚାଲିଥିଲେ, ସେ ଚାଲିଗଲେ ବୋଲି ଏତେ ଏକା ନିଜକୁ କରିଦେଇଛ ? ମୁଁ ଅଛି । ଦେଖ ତଥାପି ମୁଁ ବଞ୍ଚିଛି । ଉଭୟେ ଜୀବନରେ ଅନେକ କିଛି ହରାଇଛୁ । ହରାଇବା ଲୋକ ସିନା ହଜେଇବାର ବେଦନା ବୁଝେ । ତାହାଲେ ଉଭୟେ କଣ ଉଭୟର ବନ୍ଧୁ ହେଇ ପାରିବାନି ? କୁହ ଅବଶିଷ୍ଟ ଜୀବନ କଣ ବନ୍ଧୁ ଭାବରେ କଟାଇ ପାରିବାନି ?

ସିକ୍ତା ଯେମିତି ବୁଝିପାରୁ ନଥିଲା । କିଛି କହିପାରୁ ନଥିଲା, କେବଳ ବଲବଲ ଚାହିଁଥିଲା ।

ଗୀତା ଭାଉଜ କହୁଥିଲେ, ଏଇ ତମେ କ'ଣ ଏଇଠି ଠିଆ କରାଇଥିବ ? ଭିତରକୁ ଡାକିବ ନାହିଁ ? ତମର କ'ଣ ମନେ ନାହିଁ ଆମେ ଅନେକ ଦିନ ହେଲା ଏକାଠି ଚା ପିଇନେ ବୋଲି ?



# ନିଜ ଭିତରେ ବଦଳିବାର ନିଃଶବ୍ଦ ପହର

ଶୋଇ ପଡ଼ିଛି ସାରା ପୃଥିବୀ । ବଗିଚାର ଫୁଲ ବି ଶୋଇଛି, ଶୋଇ ଯାଇଛି ଗଛ ଡାଳରେ ବସା ବାନ୍ଧିଥିବା ପକ୍ଷୀ । ସାରା ଦୁନିଆ ଶୋଇଥିଲା ବେଳେ ମୋ ଆଖିରୁ ନିଦ ଚୋରି ହେଇ ଯାଇଛି । ସେଇଥିପାଇଁ ନିର୍ଜନ କୋଠରିରେ ପଡ଼ି ରହି ମୁଁ ବାରମ୍ବାର କଡ଼ ଲେଉଟାଉଥିଲି ।

ଆଜି କି ବାର ? କି ତାରିଖ ? ଅମାବାସ୍ୟା ନା ପୂର୍ଣ୍ଣମୀ ? ଆଃ, ତାରିଖ ପାଶୋରିଲିଣି, ବାର ବି ମନେ ପଡୁନାହିଁ । ଜୀବନର ଏତେ ଅଭ୍ୟସ୍ତ ଜିନିଷର ନାଁ, ତାରିଖ ଭୁଲିଗଲେ ବି କେତୋଟି ନିର୍ଦ୍ଦିଷ୍ଟ ଘଟଣାକୁ କାହିଁକି ମୁଁ ଏଯାଏଁ ଭୁଲି ପାରୁନାହିଁ ? ଭୁଲିବାକୁ ଯାଇ ବାରମ୍ବାର ମନେ ପକାଉଅଛି । ସେଥିପାଇଁ ଅନେକ ରାତି ଭଳି ଆଜି ରାତିରେ ବି ଆଖିରୁ ନିଦ ଚୋରି ହେଇ ଯାଇଛି ।

ଆଜି ଏତେ ଏକୁଟିଆ ଲାଗୁଛି କାହିଁକି ? ଏତେ ବିଚଳିତ ତ କେବେ ହେଇ ନଥିଲି । ନିଜ ପାଖରେ ନିଜେ ଭାଙ୍ଗି ପଡ଼ିବାର ଶବ୍ଦ ଫେର୍ ଏତେ ଭୟଙ୍କର ? ବାହାରେ କଡ଼ା ଅଫିସର, ଯିଏ ଚାଲିଗଲେ ପତ୍ର ବି ହଲିବାକୁ ଭୟ କରେ ସେ ଯେ ନିଜ ପାଖରେ କେଡ଼େ ଅସହାୟ କେହି ନ ଦେଖିଲେ କେବେ କଣ ବିଶ୍ୱାସ କରିବ ? ଏବେ ଦର୍ପଣରେ ମୋ ଚେହେରା କେମିତି ଦିଶୁଥିବ ? ଦର୍ପଣ କଣ ମୋତେ ଡ଼ରାଇବ ? ଏତେ ନିଃସଙ୍ଗତା ଭିତରେ ମୁଁ ପାଗଳ ହେଇ ଯିବି କି ?

ଆଜି ଭଳି ମୁଁ ନିଷ୍ଠୁର, କଡ଼ା ମଣିଷଟେ ନଥିଲି । ବେଶ୍ ଶାନ୍ତ, ମଧୁର ବ୍ୟବହାର ଥିଲା ମୋର । ମୋ ଭିତରେ ଏକ କୋମଳ ଅନୁଭବ ଥିଲା, ଏକ ସୁନ୍ଦର ମଣିଷ ବଞ୍ଚୁଥିଲା ଦିନେ । ସେ ଅନେକ ସ୍ୱପ୍ନ ଦେଖୁଥିଲା । ମିଠାମିଠା କଳ୍ପନା ଭିତରେ ବତୁରି ଯାଇଥିଲା । ନିଜର ନମ୍ର ବ୍ୟବହାରରେ ସମସ୍ତଙ୍କୁ ମୁଗ୍ଧ କରି ଦେଇଥିଲି । ସ୍ତ୍ରୀ ଲୀନାକୁ ନେଇ ମୋର ଏକ ସୁଖୀ ଘରସଂସାର ଥିଲା । କିନ୍ତୁ ରଙ୍ଗମଞ୍ଚର ଦୃଶ୍ୟପଟ ବଦଳି ଗଲା ଭଳି ସବୁ କେମିତି ଓଲଟି ଗଲା । ଟୁରରୁ ଫେରି ଦେଖିଲି ମୋ ସ୍ତ୍ରୀ ଲୀନା ମୋର ପରମବନ୍ଧୁର ଗଭୀର ଆଲିଙ୍ଗନ ଭିତରେ । ଆଖିକୁ ବିଶ୍ୱାସ କରି ପାରିଲି ନାହିଁ । ମୋ ପାଖରେ ବନ୍ଧୁକ ଥିଲେ ତ ନିଶ୍ଚେ ଖୁନ୍ କରି ଦେଇଥାନ୍ତି । ମନଇଚ୍ଛା ଦୁହିଁଙ୍କୁ ବାଡ଼େଇଲି । ପଡ଼ୋଶୀମାନେ ପହଞ୍ଚି ନଥିଲେ ତ ନିଶ୍ଚେ ମାରି ପକାଇ ଥାନ୍ତି । ତେବେ ଲୀନା ଓ ବନ୍ଧୁ ଦୁହେଁ ଦୁହିଁଙ୍କୁ ବିବାହ କରିବାର ଦୃଢ଼ ନିଷ୍ପତ୍ତି ନେଇ ସାରିଥିଲେ । ଯାହାକୁ ଦିବର୍ଷ ତଳେ ବହୁ ସ୍ୱପ୍ନ, ଆଶା ନେଇ ବେଦୀରେ ବସି ବାହା ହେଇଥିଲି ସେ ମୋତେ ଛାଡ଼ପତ୍ର ଦେଲା । ମୁଁ କୁଆଡ଼େ

ନିଷ୍ଠୁର, ପ୍ରେମ କରି ଜାଣେନା, ଭଲ ପାଇ ଜାଣେନା । ମୋ ସହିତ ଦିନ କାଟିବା କୁଆଡ଼େ ଲୀନା ପକ୍ଷରେ ସମ୍ଭବ ନୁହେଁ ଏମିତି ଅନେକ ଅଭିଯୋଗ । କିଛି ହରାଇ ନ ଥିବାର ଭଙ୍ଗୀ କରି ମୁଁ ସେ ଛାଡ଼ପତ୍ର ଗ୍ରହଣ କରି ନେଲି । ସାଧାରଣ ବନ୍ଧୁଟେ ଭଳି ସେମାନଙ୍କ ରେଜେଷ୍ଟ୍ରି ମେରେଜରେ ସାକ୍ଷୀ ପଡ଼ିଲି, ଫୁଲ ତୋଡ଼ା ଉପହାର ଦେଲି ଓ ସୁଖି ହୁଅ, ଭଲରେ ରହ କହି ଖୁସି ଖୁସିରେ ଫେରି ଆସିଲି ।

ହେଲେ ଘରର ବନ୍ଦ ଦ୍ୱାରକୁ ଖୋଲି ଦେଲା ମାତ୍ରେ ଅସହାୟତାରେ ସତେକି ଫାଟି ପଡ଼ିଲି । ମୋ ସଂସାର ଯେ ଆଉ କାହାର ହେଇ ଯାଇଛି ଏ କଥାଟାକୁ ନିଜେ ପାଖରେ ଗ୍ରହଣ କରି ନେବା ଯେ ଏଡ଼େ କଷ୍ଟ ମୁଁ ଜାଣି ନଥିଲି । ଜଣକର ଦେହ ସହ, ମନ ସହ ଏତେ ନିକଟ ହେଲାପରେ କେଉଁଠି ଏତେ ଫାଙ୍କ ରହିଗଲା ଯେ ସେ ଫାଙ୍କ ଦେଇ ଲୀନା ଫୁର୍‌ର୍‌କି ଉଡ଼ି ପଳାଇଗଲା । ଜଣେ ଜଣକର ଅତି ନିକଟ ହେଇ ଏତେ ଥାଏ ଦୂରରେ ? ଭୁଲିବାକୁ ବାରବାର ଚେଷ୍ଟା କଲେବି ଦି ବର୍ଷ ଭିତରେ ଆମ ମଧ୍ୟରେ ଘଟି ଯାଇଥିବା ଅନେକ ଛୋଟବଡ଼ ଘଟଣା ସ୍ମୃତିର ଝରକା ଦେଇ ଉଙ୍କିମାରିଲେ, ହାତ ଠାରି ଡ଼ାକିଲେ, ମୁରୁକି ହସିଲେ । ମୋର ଟିକି ଟିକି ସ୍ୱପ୍ନମାନେ ଅତୀତର ବିବର୍ଣ୍ଣ ଡାଳରୁ ଖସି ପଡ଼ିଲେ ।

ସେଦିନ ଝର୍କାର ରେଲିଂ ଧରି ନିଜ ପାଖରେ ପିଲାଙ୍କ ଭଳି କାନ୍ଦିଥିଲି । ଅନ୍ଧାରରେ ହିଁ କାନ୍ଦି ହୁଏ ମନଭରି । ପୁଣି ଆଖିର ଲୁହବି ସରିଗଲା । ନିଜକୁ ନିଜେ ସାନ୍ତ୍ୱନା ଦେବାର ଶକ୍ତି ଆସିଗଲା । ଲୁହ ପୋଛି ନେଲି । ସାରା ପୃଥିବୀ ପ୍ରତି କେମିତି ଗୋଟେ ଆସିଲା ଅବିଶ୍ୱାସ, ଘୃଣା । ନିଜର ଅତି ପାଖବନ୍ଧୁଠାରୁ ଧକ୍‌କା ଖାଇଲା ପରେ ଓ ଲୀନାକୁ ହରାଇଲା ପରେ ଅନୁଭବ କଲି ମୋ ଭିତରେ ଏକ ନୂଆ ମଣିଷ ଜନ୍ମ ନେଇଛି । ନିଷ୍ଠୁର ମଣିଷଟାଏ ମଞ୍ଜିରୁ ଗଛ ବନିଛି । ସେ ନୂଆ ମଣିଷଟି ଘରର ଫୁଲଦାନି ଭାଙ୍ଗି ଦେଲା, ଭାଙ୍ଗିଦେଲା ଲୀନା ହାତଅଙ୍କା ବିରାଟ ଅଏଲ ପେନ୍‌ଟିଙ୍ଗଟିକୁ । ପେପର ଓ୍ୱେଟ୍ ଫିଙ୍ଗି ଭାଙ୍ଗିଲା ଡ୍ରେସିଂ ଟେବୁଲର ବିରାଟ କାଚକୁ ଯେଉଁଠି ପ୍ରତିବିମ୍ବିତ ହେଉଥିଲା ତାର ଭୟଙ୍କର ଚେହେରା । ଭାଙ୍ଗିଦେଲା ଲୀନା ଓ ମୋର ଯୁଗଳ ଫୋଟୋକୁ । କାଚର ଟୁକୁରା ଗୋଡ଼ରେ ପଶିଗଲା, ରକ୍ତାକ୍ତ ହେଲା ଛାତି । ଟିକିଏ ଆଗରୁ ଲୀନା ହାତରେ ସଜଡ଼ା ହେଇଥିବା ବାହ୍ୟଦୁନିଆ ଟୁକୁରା ଟୁକୁରା ହେଇ ବଡ଼ ବିଭସ ଦିଶିଲା । ତଥାପି ସେହି ଭୟଙ୍କର ଭୂତଟା ମୋ ଉପରେ ସବାର ହେଇଥିଲା । କହୁଥିଲା ସଂସାରରେ ପ୍ରେମ ନାହିଁ, ଭଲପାଇବା ନାହିଁ, ଖାଲି ଅଛି ଘୃଣା । ଅନ୍ୟକୁ ଦୟା ଦେଖାଉ ଥିବା ମଣିଷଟି ହିଁ ଜୀବନରେ ସବୁଠାରୁ ବେଶି ଠକେ । ଧକ୍‌କା ପାଏ । ତା' ମୁଣ୍ଡ ଉପରେ ପାଦ ରଖି ସମସ୍ତେ ସମୃଦ୍ଧି ସିଡ଼ି ଚଢ଼ି ଚାଲି ଯାଆନ୍ତି । ତାକୁ ପକେଇ ଯାଆନ୍ତି ଡ଼ଷ୍ଟବିନ୍‌ର ଅଦରକାରୀ କାଗଜ ଫିଙ୍ଗିଲା ଭଳି । ଭିକାରୀ କରି ଦିଅନ୍ତି, ଏକ୍‌ଲା କରି ଛାଡ଼ି ପଳାନ୍ତି ।

ସେହି ଭଙ୍ଗା ଘରର କାଚ ଟୁକୁଡ଼ା ଉପରେ ସେଦିନ ଜନ୍ମ ନେଇଥିବା ନୂଆ ମଣିଷଟା କ୍ରମଶଃ ଅତି କଡ଼ା ନିଷ୍ଠୁର ଅଫିସରରେ ପରିଣତ ହେଲା । ତା'ର ଆସିବା ଖବର ଶୁଣିଲେ ଅଫିସ୍‌ରେ ସମସ୍ତ କର୍ମଚାରୀ ଥର ଥର ହେଇ ଯାଉଥିଲେ । ଟିକିଏ ଟିକିଏ ଭୁଲରେ ଚାକିରିରୁ ସସ୍‌ପେଣ୍ଡ ହେବାର ଭୟ ଥିଲା । କାହାରି ବିଳମ୍ବ ବା କାର୍ଯ୍ୟରେ ଖିଲାପ କଥା ଅଫିସର ଜଣକ ସହିପାରୁ ନଥିଲେ । ଚିତ୍କାର କରି ଅଫିସ୍ କମ୍ପାଇ ଦେଉଥିଲେ । ତାଙ୍କ କଲମର ଗାରରେ କେତେ ଜୀବନ ସତେ କି ସୂତାଖିଅ ଭଳି ଝୁଲୁଥିଲା । ସେ ଅଫିସ୍‌ରେ ଥିଲାବେଳେ ସମସ୍ତେ ତ୍ରାହି ତ୍ରାହି ଡାକୁଥିଲେ । ବଦଳି ହେବା ପାଇଁ ଲକ୍ଷେ ବେଲପତ୍ର ଚଢ଼ାଉ ଥିଲେ । କେହି କେହି ପଛରେ ଟୀପ୍ପଣୀ ଦେଉଥିଲେ । ଲୋକଟାର ପଶୁ ପ୍ରକୃତି ପାଇଁ ତ ତା ସ୍ତ୍ରୀ ତାକୁ ଛାଡ଼ି ଆଉ ଜଣକ ସହିତ ପଳାଇଲା । ସେତେବେଳେ ସେମାନଙ୍କର ଟୀପ୍ପଣୀ ଝାଞ୍ଜି ପବନ ଭଳି ଛାତିରେ ବାଡ଼େଇ ହେଇ ଲହୁଲୁହାଣ କରି ପକାଉଥିଲା ।

ରାତିରେ ନିଜର ବନ୍ଦ ଘରର କବାଟ ଖୋଲି ହାକିମ ପୋଷାକ ଉତାରି ଦେଇ ଲାଇଟ ନ ଜଳାଇ ଅନ୍ଧାରରେ ଚୁପ୍‌ଚାପ୍ ବସୁଥିଲି । ମନଇଚ୍ଛା ପିଉଥିଲି । ଦିନସାରା ମୁହଁରେ ବହଳ ନିଷ୍ଠୁରତାର ମେକ୍‌ଅପ୍ ଲଗାଇ ନାଚୁଥିଲାବେଳେ ବେଶ୍ ସୁସ୍ଥ ଅନୁଭବ କରିଥାଏ । କିନ୍ତୁ ଘରେ ସେ ମେକ୍‌ଅପ୍ ଧୋଇ ଦେଲା ପରେ ମୁଁ ଅସୁସ୍ଥ ହେଇ ପଡୁଥିଲି । ଅତି ସାଧାରଣ, ନିଜକୁ ନିଜେ ନେଇ ବଞ୍ଚୁଥିବା ମଣିଷଟେ ପାଲଟି ଯାଉଥିଲି । ସାଙ୍ଗସାଥି କେହି ନ ଥିଲେ । ନିଜର ତିକ୍ତ ଅଭିଜ୍ଞତା ଓ କଠୋର ବ୍ୟବହାର ପାଇଁ ମୋର ବହୁ ପରିଚିତ ବନ୍ଧୁବାନ୍ଧବ ସବୁ ମୋଠାରୁ ଦୂରେଇ ଯାଇଥିଲେ । ନିଜକୁ ଭୁଲାଇବା ପାଇଁ, ବ୍ୟସ୍ତ ରଖିବା ପାଇଁ, ସ୍ମୃତି ଉପରେ କବର ଚଢ଼ାଇବା ଲାଗି ମୁଁ ଅନେକ ଫୁଲ ଗଛ ଆଣି ମୋ ବଗିଚାରେ ଲଗାଇଥିଲି । ନିଜେ ଗଛରେ ପାଣି ଦେଉଥିଲି, ମାଟି ଖସାଉ ଥିଲି । ରାତିରେ ଫୁଲ ଗଛ ମେଳରେ ଚେୟାର ପକାଇ ଚୁପ୍‌ଚାପ୍ ବସୁଥିଲି । ଅସମ୍ଭବ ସ୍ମୋକ୍ କରୁଥିଲି । କେବେ କେବେ ଡ୍ରିଙ୍କସ କରି ସେହି ଖୋଲା ଆକାଶ ତଳେ ଚେତା ହରାଉଥିଲି । ରାତି ଯାଇ ସକାଳ ହେଉଥିଲା । ଫୁଲମାନେ ସହାନୁଭୂତିରେ ମୋତେ ଅନାଉଥିଲେ । ଆହା, ବିଚରା ମଣିଷମାନେ ସିନା ମୋତେ ବୁଝି ପାରିଲେନି କିନ୍ତୁ ଫୁଲମାନେ ମୋତେ ଆପଣାର କରି ନେବା ଆଖିରେ ଚାହୁଁଥିଲେ । ସେତିକିବେଳେ ଆଖି ମୋର ଭର୍ତ୍ତି ହେଇ ଯାଉଥିଲା । କିଏ କହିଲା ମୁଁ ନିଷ୍ଠୁର, ନିର୍ମମ ! ଏବେବି ତ ଫୁଲକୁ ଭଲ ପାଇବାର ଟିକି ହୃଦୟଟେ ମୋ ଭିତରେ ଅଛି । ଏବେବିତ ମୁଁ ଗୀତ ଭଲ ପାଏ, ପକ୍ଷୀକୁ ଭଲ ପାଏ, ସୂର୍ଯ୍ୟୋଦୟ ସୂର୍ଯ୍ୟାସ୍ତକୁ ଭଲ ପାଏ । ନିଃଶବ୍ଦ ଆକାଶକୁ ଭଲ ପାଏ । ସମୁଦ୍ରକୁ ଭଲ ପାଏ । ମଣିଷଠୁ ଦୂରେଇ ଗଲି ବୋଲି କ'ଣ ମୋର ମୃତ୍ୟୁ ହେଇଗଲା । ଏତେ ଭଲ ପାଇବା ଯେହେତୁ ମୋ ଭିତରେ ସଞ୍ଚିତ ରହିଛି ସେ ହେତୁ ମୁଁ ବଞ୍ଚିଛି, ହଁ ହଁ ବଞ୍ଚିଛି । ସେଦିନର ସ୍ତ୍ରୀ ପରିତ୍ୟକ୍ତ ଶଶାଙ୍କଶେଖର ସଂପୂର୍ଣ୍ଣ ମରି ନାହିଁ । ଅଥଚ ଏତେସବୁ ଭଲ ପାଉଥିବା ମଣିଷଟି କାହିଁକି

ସମସ୍ତଙ୍କ ପାଖରେ ଅବହେଳିତ ହେଇ ରହିଗଲା । ସବୁ ପରିଚିତମାନେ ତାକୁ କିଆଁ ଅଧାବାଟରେ ପରିତ୍ୟକ୍ତ କରି ଛାଡ଼ି ଚାଲି ଗଲେ ?

ଡାକବଙ୍ଗଳାରେ ଓହ୍ଲାଇ ୱାଚମେନର ମୁହଁ ଦେଖି ମୁଁ ପଢ଼ିନେଲି ସେ ଯେମିତି ଭୟ ଆଶଙ୍କାରେ ଜୁବୁବୁତୁ ହେଇ ଯାଉଛି । ହୁଏତ ବଙ୍ଗଳାର ଇନ୍‌ଚାର୍ଜରେ ଥିବା ଅଫିସର ଜଣକ ତାକୁ ମୋ ବିଷୟରେ ବାରମ୍ବାର ସତର୍କ କରି ଦେଇଥିବେ । ପଚାରିଲି, ତୋ ନାଁ କଣ ?

ହଜୁର ରମଣ ଚାଚା ବୋଲି ମୋତେ ଡାକନ୍ତି କହି ଲୋକଟା ଭୟ ସଙ୍କୋଚରେ ଆହୁରି ଘୁଞ୍ଚିଗଲା । ସଲାମ ମାରି ମାରି ବିଚରା ବୁଢ଼ା ହେଇଗଲାଣି । ରମଣ ଚାଚା ଜିନିଷ ପତ୍ର ରଖି ଗ୍ଲାସ ସଜାଉଥିଲା ବେଳେ ମୁଁ ଭାବୁଥିଲି ମୋ ଷ୍ଟେନୋ କଥା । ଆଜି ଟୁର୍‌ରେ ମୋ ସହିତ ତାର ଆସିବାର ଥିଲା । କଣ ହେଲାନା ସ୍ତ୍ରୀ ତାର ପାଞ୍ଜି ଦେଖି କହିଲେ ଯାତ୍ରା ଶୁଭ ନାହିଁ । ଆଜି ଯାଆନା । ବାସ୍ ଲୋକଟା ରହିଗଲା । କେତେ ସାହସ । ସ୍ତ୍ରୀ କାଲି ପୁଣି ପାଞ୍ଜି ଦେଖି ଆଉ କଣ କହିଦେବ ଲୋକଟା ରହିଯିବ । କଣ ଭାବିଲା ସିଏ ? ଚାକିରି କଣ ପିତା ଲାଗୁଛି । ମୋତେ ତାର ତେବେ କିଛି ହେଲେ ଖାତିରି ନାହିଁ । ନଚେତ୍ କେହି କଣ ସ୍ତ୍ରୀ ଲୁଗାକାନିରେ ଏମିତି ବାନ୍ଧି ହେଇ ରହିଥାନ୍ତା । ଠିକ୍ ଅଛି, ତାର ଚାକିରିଟା ଯଦି ନ ନେଇଛି ମୋ ନାଁ ବି ଶଶାଙ୍କ ଶେଖର ନୁହେଁ । ବାହାରକୁ ଆସିଲି । ରାତିର ପ୍ରଥମ ପ୍ରହର । ସାଇଜ୍ କରି କଟାଯାଇଥିବା କ୍ରୋଟନ ଗୁଡ଼ିକ ଉପରେ ଛପି ଛପିକା ଆଲୁଅ ପଡ଼ିଛି । ସାରା ବଗିଚାରେ ଆଲୁଅର ଢେଉ । ଆଃ, ଏତେ ଆଲୁଅ ! ଆଲୁଅ ଯେ ମୋ ପାଇଁ ଅସହ୍ୟ ।

ରମଣ ଚାଚା, ମୁଁ ଚିତ୍କାର କଲି । ମିଞ୍ଜି ମିଞ୍ଜି ଜଳୁଥିବା ଲଣ୍ଠନ ପାଖରେ ଢୁଳାଇ ପଡ଼ିଥିବା ବନ୍ଧୁକଧାରୀ ରମଣ ଚାଚା ଧଡ଼ପଡ଼ ଉଠି ଧାଇଁ ଆସିଲା । ମୋ କଣ୍ଠସ୍ୱର ହୁଏତ ସେ ଭୂମିକମ୍ପ ଠଉରାଇଲା । ମୁହଁ କଳା ପଡ଼ିଗଲା ତାର । ଚାକିରିଟା ଗଲାକି ଆଉ ।

ଏତେ ଆଲୁଅ କରିଛି କାହିଁକି ଚାଚା ? ତମର ଜାଣି ରଖିବା ଉଚିତ୍ ଥିଲା ଯେ ମୋତେ ଆଲୁଅ ଭଲ ଲାଗେ ନାହିଁ । ବତୀସବୁ ଲିଭାଇ ଦିଅ । ବି କୁଇକ୍ । ସାରା ବଗିଚାଟାକୁ ଅନ୍ଧାର କରିଦିଅ ।

ହଜୁର, ମାଲିକ ! ଆଜି ଜହ୍ନରାତି । ପୂର୍ଣ୍ଣମୀ ! ସେଥିପାଇଁ ଆଲୁଅ ପଡ଼ିଛି ଫୁଲ ଉପରେ ।

ଆଜି ଜହ୍ନରାତି, ପୂର୍ଣ୍ଣମୀ ! ଆଲୁଅ ପଡ଼ିଛି ଫୁଲ ଉପରେ ! ଜହ୍ନର ଏତେ ସାହସ ଫୁଲକୁ ଛୁଇଁବ । ତୁ ଗୋଟେ କାମ କର । ଏ ଜହ୍ନଟାକୁ ଗୁଳିକରି ଖସାଇ ଦେ ।

ହଜୁର, କଣ କହିଲେ ଜହ୍ନକୁ ଗୁଳି କରି ଖସାଇ ଦେବି ? ଜହ୍ନକୁ ଖସାଇବି ଗୁଳିକରି ମାଲିକ ? ରମଣ ଚାଚାର ଆଖି କପାଳକୁ ଉଠିଗଲା ।

ମୁଁ ଯାହା କହିଲି ତା କର । ପିଇଛି ବୋଲି ଭାବନା । ଜାଣିଥା ଆଲୁଅ ମୋତେ ଭଲ ଲାଗେନା । ଗୁଳି ନ କରି ପାରିଲେ କଣ ହେବ ଜାଣିଛୁତ ? ବାସ୍

ହଜୁର ମୋ ପିଲାଛୁଆ... ରମଣ ଚାଚାର ସଂପୂର୍ଣ୍ଣ କଥା ଶୁଣିବା ଆଗରୁ ମୁଁ ମୋ ରୁମ୍ ଭିତରେ ପଶି ବିଛଣାରେ ନିଜକୁ ଲମ୍ବାଇଦେଲି । ତଥାପି ନିଦ କାହିଁ ? ମୋ ଷ୍ଟେନୋ ଯିଏ ବର୍ଷ ବର୍ଷ ଧରି ବିନୟର ସହିତ ଦିନକୁ ଦୁଇଥର ନମସ୍କାର ମାରେ ସେ ଆଜି ମୋ ସହିତ ଆସିବାକୁ ମନାକଲା, ଏ ବ୍ୟତିକ୍ରମ ମୁଁ ସହି ପାରୁନାହିଁ । ଇଚ୍ଛା ହେଉଛି ଗୁଳିକରି ତା ମୁଣ୍ଡଟାକୁ ଉଡ଼ାଇ ଦେବାକୁ ।

କେତେ ରାତି ହେଲାଣି ? ପୂର୍ଣ୍ଣମୀର ଜହ୍ନ ବଡ଼ ସୁନ୍ଦର ନା । ଲୀନା ଗଲାପରଠୁ ଆଉ ପୂର୍ଣ୍ଣମୀର ରାତିରେ ଅନେକବର୍ଷ ହେଲା ବସି ନାହିଁ । ମନ ଭରି ଜହ୍ନକୁ ଦେଖିନାହିଁ । ତାରା ଭରା ଆକାଶ ତ ମୋ ପାଇଁ ସ୍ୱପ୍ନ ହେଇ ଯାଇଛି । ନିଜ ଜୀବନର ବିବର୍ଣ୍ଣ ରଙ୍ଗର ଛିଟିକା ମୋ ଆଖିରେ ପୃଥିବୀର ଅନେକ ସୌନ୍ଦର୍ଯ୍ୟକୁ ବିକଳାଙ୍ଗ କରି ଦେଇଛି । ଆଃ, କେହି ଏଠି ନିଜର ହେଇ ଥାନ୍ତା କି ତା ସହିତ ଏ ଜହ୍ନରାତିରେ ଟିକେ ବସନ୍ତି, ଅନ୍ତତଃ ଟିକେ କାନ୍ଦନ୍ତି, ହାଲକା ହେଇଯା'ନ୍ତା । ମୋ ଭିତରେ ନିଷ୍ଠୁର ମଣିଷଟି ଘୁମେଇ ପଡୁଥିଲା ଧୀରେ ଧୀରେ । ଭାବୁଥିଲି ମୋ ଷ୍ଟେନୋ କଥା । ବିଚରାର ସ୍ତ୍ରୀ କେତେ ସ୍ୱାମୀଭକ୍ତ । ସମସ୍ତେ କଣ ଲୀନା କି ମୋ ଭଳି ହେଇଛନ୍ତି । ସେମାନଙ୍କ ବ୍ୟସ୍ତତା ହେଉଛି ପରସ୍ପରକୁ ବୁଝି ପାରିଛନ୍ତି ବୋଲି, ପରସ୍ପରର ଇଚ୍ଛାକୁ ଦୁହେଁ ସମ୍ମାନ ଦେଇ ପାରିଛନ୍ତି ବୋଲି, ମୋ ଷ୍ଟେନୋ ସ୍ତ୍ରୀର ପାଞ୍ଜି ଦେଖାରେ ଯାତ୍ରା ଶୁଭ ନାହିଁ ବୋଲି କଡ଼ା ହାକିମକୁ ଉପେକ୍ଷା କରି ରହିଯାଇ ପାରିଲା । ଟିକିଏ ଟିକିଏ ଘଟଣା ଅଥଚ ପରସ୍ପର ଭିତରେ କେତେ ନିବିଡ଼ ଭଲ ପାଇବା । ଏଇ ଭଲ ପାଇବା ଡୋରି ଯୋଗୁଁ ତ ସ୍ୱାମୀସ୍ତ୍ରୀ ବାନ୍ଧି ହେଇ ରହିଯାନ୍ତି ଯୁଗ ଯୁଗ ଧରି । ହାୟ, ମୁଁ ଗୋଟାଏ ବ୍ଲଡ଼ିଫୁଲ୍ ନୁହେଁତ ଆଉ କଣ ? ଏଇ ଟିକିଏ କଥାକୁ ଏଡ଼େଇକରି ଲୋକଟାକୁ ସସ୍‌ପେଣ୍ଡ କରିବାକୁ ବସିଥିଲି । ଘରେ ତା'ର ଆସନ୍ନ ପ୍ରସବା ସ୍ତ୍ରୀ, ବୃଦ୍ଧା ବିଧବା ମା, ଛୋଟ ଛୋଟ ପିଲା । ଜମି ନାହିଁ । କେତେ ବା ଟଙ୍କା ପାଏ । ମୋରି ଭଳି ସେବି ତ ବାହାହେଲାବେଳେ ଅନେକ ସ୍ୱପ୍ନ ଦେଖିଥିବ । ହୁଏତ କଳ୍ପନାରେ ଅନେକ ବାର ରାଜକୁମାର ସାଜି ପକ୍ଷୀରାଜ ଘୋଡ଼ାରେ ସ୍ତ୍ରୀକୁ ବୁଲାଇ ନେବାର ସ୍ୱପ୍ନ ତା ଭିତରେ ଖୁନ୍ଦି ହେଇ ଯାଇଥିବ । କିନ୍ତୁ ଆହା ଲୋକଟା ଷ୍ଟେନୋ ପାଲଟିଗଲା ।

ସହାନୁଭୂତିରେ ମୁଁ ନିଜେ ଓଦା ହେଇଗଲି । ଏଡ଼େ ଛୋଟ କଥାଟାରେ ସେଣ୍ଟିମେଣ୍ଟାଲ ହେଇ କଷ୍ଟ ପାଉଥିଲି ! ଓଃ ଗଡ୍ ଏକ୍ସକ୍ୟୁଜ୍ ମି । ଏବେ ଟିକେ ଟିକେ

କଥାରେ ଭାବପ୍ରବଣ ହେବା ତମର ଉଚିତ୍ ହେଉ ନାହିଁ ବନ୍ଧୁ ଶଶାଙ୍କଶେଖର । ଭାବପ୍ରବଣ ହେଲେ ନିଜକୁ ହିଁ ବେଶି କଷ୍ଟ ହୁଏ । ଜୀବନ ଓଜନିଆ ଲାଗେ । କି ଦରକାର ଏମ୍ତି କଷ୍ଟ ପାଇ ବଞ୍ଚିବାରେ ବାବା ଶଶାଙ୍କ ? ଯେତେଦିନ ବଞ୍ଚିବୁ ଭଲରେ ବଞ୍ଚ ବାପଧନ । ଖା, ପି, ଧୂମ୍ କର୍ । ନିଜେ ହସ୍ ଅନ୍ୟକୁ ହସା । ଦେଖିବୁ ତୋର ସେହି ବିବର୍ଣ୍ଣ ପୃଥିବୀ ସୁନ୍ଦର ବନିଯିବ ।

କବାଟ ଖୋଲି ବାହାରକୁ ଆସିଲି । ଜହ୍ନକୁ ମେଘ ଘୋଡ଼ାଇ ଦେଇଛି । ଚାରିଆଡ଼େ କିଟ୍ କିଟ୍ ଅନ୍ଧାର । ମୁଁ ଚିତ୍କାର କଲି, ରମଣ ଚାଚା ! ଏତେ ଅନ୍ଧାର କାହିଁକି ? ଆଃ, ଅନ୍ଧାର ଯେ ମୁଁ ସହି ପାରୁନାହିଁ । ରମଣ ଚାଚା ଲଣ୍ଠନ ଧରି ଥରି ଥରି ଆସି ମୋ ପାଖରେ ଠିଆ ହେଲା, ହଜୁର ଆପଣ କହିଥିଲେ ଜହ୍ନଟାକୁ ଗୁଳିମାରି ଖସାଇ ଦେବାକୁ ଆଉ ମୁଁ ତାକୁ...

ଓଃ, ଗୁଳି କରି ଖସାଇ ଦେଇଛୁନା ? ମୁଁ ହସି ପକାଇଲି । ସେଇଥି ପାଇଁ ତେବେ ଏତେ ଅନ୍ଧାର !

ରମଣ ଚାଚା ଡରି ଡରି ମୁଣ୍ଡ ଟୁଙ୍ଗାରିଲା ।

ଆଚ୍ଛା ଗୋଟେ କାମ କର, ଏଥର ଜହ୍ନଟାକୁ ପୁଣି ଆକାଶରେ ଟାଙ୍ଗିଦେ ।

ଆକାଶରେ ଟାଙ୍ଗି ଦେବି ! କିନ୍ତୁ.....

କିନ୍ତୁ କଣ ? ଯାହା କହିଲି କର । ନଚେତ....

ହଜୁର, ହଁ ଜହ୍ନଟାକୁ ଟାଙ୍ଗିଦେବି ଆକାଶରେ ଆପଣ କହୁଛନ୍ତି ଯେତେବେଳେ, ଥଙ୍କେଇ ଥଙ୍କେଇ କହିଲା ରମଣ ଚାଚା । ମୁଁ ମୁରୁକି ହସି ଦେଇ ଭିତରକୁ ଯାଇ ସିଗାରେଟ ଧରାଇଲି । ହୃଦୟଟା ମୋ ବେଲୁନ୍ ଭଳି ହାଲ୍କା ହେଇ ଯାଇଥିଲା । ମୋ ଭିତରେ ମେଘ ସଂପୂର୍ଣ୍ଣ ଅପସରି ଯାଇଥିଲା । ମୁଁ ରମଣ ଚାଚା କହି ବାହାରି ଆସିଲି । ଆରେ ଏକଣ ! ଜହ୍ନ ଉପରେ ଘୋଡ଼ାଇ ରହିଥିବା କଳାବଉଦ ନ ଥିଲା । ଚୋପା ଆଲୁଅରେ ସାରା ବଗିଚାଟା ଝଲ୍‌ସୁଥିଲା । ଜହ୍ନର ଫୁଆର ବଗିଚାରେ ଲହଡ଼ି ପାଲଟି ଥିଲା । ଚମତ୍କାର ଦିଶୁଥିଲା । ଜହ୍ନରାତି ଫେର୍ ଏଡ଼େ ସୁନ୍ଦର । ଏତେ ସ୍ନିଗ୍ଧ ! ବହୁଦିନ ଅନ୍ଧାରରେ ରହିଲା ପରେ ଜହ୍ନରାତି ଏତେ ଭଲ ଲାଗେ ?

ରମଣ ଚାଚା କ'ଣ କହିବାକୁ ଚାହୁଁଥିଲା । ମୁଁ ତାକୁ ଫେରି ଅନାଇଲି ।

ହଜୁର ! ଆପଣ କହିବାମତେ ଗୁଳିକରି ଖସାଇ ଦେଇଥିବା ଜହ୍ନଟାକୁ ଆକାଶରେ ଟାଙ୍ଗି ଦେଇଛି ।

ମୁଁ ଫେଁ କରି ହସି ପକାଇଲି । ତୁ ଗୁଳି କରି ଖସାଇ ଦେଇଥିବା ଜହ୍ନଟାକୁ ପୁଣି ଟାଙ୍ଗିଦେଲୁ ?

ହଁ ହଜୁର । ଆପଣ କହିଥିଲେ ଗୁଳି କରି ଖସାଇ ଦେବାକୁ, ପୁଣି ଆକାଶରେ ଟାଙ୍ଗି ଦେବାକୁ । ମୁଁ ଆପଣଙ୍କ କଥା ଠିକ୍ ଠିକ୍ କରି ଦେଇଛି ।

ମୁଁ ହସିହସି ଗଡ଼ିଗଲି । ଗୁଡ଼ାଏ ବର୍ଷ ହେଲା ମନଖୋଲା ହସ ହସି ନ ଥିଲି । କହିଲି, ତୁଟା ବି ଗୋଟାଏ ମୋ ଭଳି ବୁଡ଼ିଫୁଲ୍ ରମଣ ଚାଟା । ଆଚ୍ଛା ତୁ ଗୁଳିଙ୍କଲୁ ଜହ୍ନକୁ କାହିଁ ମୁଁଚ ଶୁଣି ପାରିଲି ନାହିଁ । ରମଣ ଚାଟା ଏଥର କ'ଣ କହିବ ବୋଧହୁଏ ଶବ୍ଦ ଖୋଜି ପାଉ ନଥିଲା । ମୁଁ ଆଶ୍ୱାସନା ଦେବା ଭଙ୍ଗୀରେ କହିଲି ଆଚ୍ଛା ଆଚ୍ଛା ଜହ୍ନକୁ, ଫୁଲକୁ, ହୃଦୟକୁ ଗୁଳି କଲେ ଶବ୍ଦ ହୁଏ ନାହିଁ ନା ରମଣ ଚାଟା ?



# ବଣା ବାଟୋଇ

ଛାତିର ପଞ୍ଜୁରିଟାକୁ ମେଲାଇ ଧରିଲେ ବି ଅସହାୟ ପକ୍ଷୀଟା କାହିଁକି ଉଡ଼ି ଯାଉନି ଯେ ! ଆଃ, ଅସହାୟତା ଯେ ଅସହ୍ୟ । ଖାଇପିଇ ଏମିତି ବଞ୍ଚିବାରେ କିଛି ବି ଆଗ୍ରହ ଆସୁ ନାହିଁ । ଆଗେ କିଛି କାମ ନ ଥିଲା ବେଳେ ଚଦର ଘୋଡ଼ାଇହୋଇ ସେ କଲେଜର ବଦ୍‌ମାସି, ସ୍ୱାତୀ ଦାସ ଏମିତି ଅନେକ କିଛି ମନେ ପକାଉ ଥିଲା ଓ ମନେମନେ ହସୁଥିଲା । ଏବେ କିନ୍ତୁ ଚଦର ଘୋଡ଼ାଇ ହେଲେ ଅଣନିଃଶ୍ୱାସୀ ଲାଗୁଛି । ବାସ୍ତବତା ନଥିବା ସ୍ୱପ୍ନମାନଙ୍କୁ ଆଖିବୁଜି ସ୍ୱାଗତ କରିବାରେ କିଛି ମାନେ ହୁଏନା । ଆଜିକାଲି ତାକୁ କାହିଁକି କେଜାଣି କିଛି ବି ଭଲ ଲାଗୁନାହିଁ । ଲଗ୍ନ ଭାବୁଛି ତାକୁ ଏବେ କିଛି ଭଲ ନ ଲାଗିବାର ରୋଗ ଧରିଗଲାଣି । ନ ହେଲେ ଫୁଲ ବଗିଚା, ସାଙ୍ଗ ସାଥିଙ୍କ ମେଳ, ଗପସପ ପ୍ରଭୃତିରେ ଘୁରିବୁଲିବାକୁ କାହିଁକି ସ୍ପୃହା ଆସୁନାହିଁ । ଆଗରୁ ଏସବୁ ଦେଖିଲେ ମନେ ହେଉଥିଲା ପ୍ରତିଟି ଜୀବନରେ ଗୋଟାଏ ଆଡ଼ଭେଞ୍ଚର ଅଛି । ସେହି ଆଡ଼ଭେଞ୍ଚର ନେଇ ଖେଳି ପାରିଲେ ବୋର ଲାଗିବ ନାହିଁ । ହେଲେ କୁଆଡ଼େ ଗଲା ସେ ଆଡ଼ଭେଞ୍ଚର ? ଜୀବନକୁ ନିତ୍ୟନୂତନ କରି ବଞ୍ଚିବାର ସେହି ଅଦମ୍ୟ ଉଦ୍ଦୀପନା ? କୁଆଡ଼େ ଗଲା ନୂଆନୂଆ କଲେଜ ମାଡ଼ିଥିବା ସେଦିନ ସେହି ଲଗ୍ନର ଚପଳତା ଆଉ ଅସୀମ କୌତୂହଳ ?

ଚେଷ୍ଟାକରିବି ମନଖୋଲା ହସଟେ ଏବେ ନିଜ ପାଖରେ ହସିପାରିନି ଲଗ୍ନ । କାନ୍ଦିପାରନ୍ତା ଭଲା । କାନ୍ଦିହୁଅନ୍ତା କି ମନ ଭରିକରି, ଛାତିଫଟାଇ ତାହାଲେ ଶରତର କାଶତଣ୍ଡି ଭଳି ନିର୍ମଳ, ହାଲକା ହେଇ ଯାଆନ୍ତା ସେ ନିଜେ । ହେଲେ ଏ ବୟସରେ ସେ ଜମ୍‌ମା କାନ୍ଦି ପାରିବନି । ଏଇ କାନ୍ଦିବା ଫାନ୍ଦିବା ଅନ୍ତତଃ ତା'ପାଖରେ ହୋଇ ପାରିବ ନାହିଁ । ତେବେ କଣଟା ତା ଦେଇ ହେଇ ପାରିବ ? ବାପା ତ କହୁଥିଲେ ତା ଦେଇ ଶାଗ ସିଝିବ ନାହିଁ । ଭଉଣୀ ତ ତା ବ୍ୟବହାରରେ କହିଦେଇଛି ତମେ ଗୋଟେ ଅପଦାର୍ଥ ଭାଇ । ବୋଉ ତ ଜାଣେ ତା' ପୁଅ କେତେ ପାରଙ୍ଗମ । ଆଉ ଭାଉଜ... ତାଙ୍କ ଛାଡ଼ଛାଡ଼ ଭାବ କହିଦିଏ, 'ତମେ ଦିନକୁ ଦିନ ଝିଅ ବୋଝଠାରୁବି ଓଜନିଆ ହେଇ ପଡୁଛ ଲଗ୍ନ ।'

କୁଆଡ଼େ ପଳେଇ ଯାଇ ହୁଅନ୍ତାକି ! ତେବେ ଏଇ ପଳେଇବ କଥାଟା ଭାବିଦେଲା ମାତ୍ରେ କେଜାଣି କାହିଁକି ବୋଉର ଶ୍ୱେତାଳିଆ ଆଖି ଆସି ଯାଏ । ବାପାଙ୍କର ଝାଳ ସରସର ମୁହଁଟା ସ୍ନେହ ଜରଜର ଦିଶେ । ଭାଉଜଙ୍କ ସେହି ଗରଗର ମୁହଁ ଭିତରୁ ମମତାସବୁ ଉବୁକି ଉଠନ୍ତି । ଭଉଣୀ କୁନିର ଅପଦାର୍ଥ ଶବ୍ଦ ଭିତରୁ ଯେତେ ହେଲେ ମୋ ଭାଇତ, ଏମିତି ଏକ ଭାବ ଶୁଭି ଯାଏ । ଛନ୍ଦି ହେଇପଡ଼େ ଲଗ୍ନ । ପଳାଇବା କଥାଟା ସେଇଠି ରହିଯାଏ ।

ଥରେ ସ୍ୱାତୀ ଦାସ ମଧ୍ୟ ତାକୁ ଏମିତି ପଳାଇ ଯିବାର ପ୍ରସ୍ତାବ ଦେଇଥିଲା ଯେତେବେଳେ ତା'ର ବାହାଘର ଅନ୍ୟତ୍ର ଠିକ ହେଇ ଯାଇଥିଲା । ସେଦିନ ବେକାର ଲଗ୍ନ ଏ କଥା ଶୁଣି ସଂପୂର୍ଣ୍ଣ ଝାଳେଇ ଯାଇ କହିଥିଲା, କୁଆଡ଼େ ଯିବା ? ମୋ ଦେଇ ଏସବୁ ହେଇ ପାରିବନି ବାବା । ବାସ୍ ସ୍ୱାତୀ ବାହା ହେଇ ଚାଲିଗଲା । କହିଗଲା ମୋତେ କିନ୍ତୁ ତମେ କେବେ ଦୋଷ ଦେଇ ପାରିବନି । ସ୍ୱାତୀର ବାହାଘରେ ସଜ୍ଜିତ କାର୍ ତା ପାଖଦେଇ ଚାଲିଗଲା ବେଳେ ସେ ଭକୁଆଙ୍କ ଭଳି ଚାହିଁ ରହିଥିଲା । ମନେ ହେଇଥିଲା ସ୍ୱାତୀ ଯେମିତି କହିଗଲା, ତମେ କେବଳ ଦୂରରୁ ଭଲପାଇ ଶିଖ । ଦୂରରୁ ପାହାଡ଼ର ସୌନ୍ଦର୍ଯ୍ୟରେ ମୁଗ୍ଧ ହୁଅ । କିନ୍ତୁ ଦାବୀ କରି ପାରନା । ବାସ୍ତବତାକୁ ସାମ୍ନା କରିବାର ସାହସ ତମର ନାହିଁ ଲଗ୍ନ । ତମେ କାପୁରୁଷ, ଭୀରୁ । ସେଥିପାଇଁ ସୁଖ ତମ ଭାଗ୍ୟରେ ନାହିଁ । ଏମ୍ତି ଖିଆଲକୁ ନେଇ ନିଜର ସ୍ୱାଭିମାନକୁ ନେଇ, ଫମ୍ପା ଆଦର୍ଶକୁ ନେଇ ତମେ ସାରା ଜୀବନ ଘୁରି ବୁଲିବ । ଗୁଡ଼ବାୟ ବନ୍ଧୁ ।

ଆଃ, ରାସ୍ତା ମଝିଟାରେ ସାଇକେଲ ଉପରେ ବସି ଏସବୁ କଣ ସେ ଭାବୁଛି । ଆଜି ପରା ଇଣ୍ଟରଭ୍ୟୁ ଅଛି ଏ.ଜି.ଅଫିସରେ ? ବୋଉଠୁ କୋଡ଼ିଏ ଟଙ୍କା ଆଣିଥିଲା । ଏମ୍.ଏ. ପାଶ କରିବାର ଚାରି ବର୍ଷ ପାରି ହେଇଗଲା ପରେ ଭାଇକୁ ଆଜିକାଲି ଭରସି ଟଙ୍କା ମାଗି ହୁଏନା । କେମିତି ଏକ ସଙ୍କୋଚ ଭାବ ତାକୁ ଗିଳିପକାଏ, ଘାଣ୍ଟି କରିଦିଏ । ଅସହାୟ ଲାଗେ । ଏପରିକି ଇଣ୍ଟରଭ୍ୟୁ କିମ୍ବା କେଉଁଠି କଣ ଆପ୍ଲାୟ କରିବା ପାଇଁ ଟଙ୍କା ଦରକାର ହେଲେ ସେ ବୋଉକୁ ହିଁ କହେ । ବୋଉ ପାଖରେ ତାର ସବୁ ଅଳିଅର୍ଦ୍ଦଳି । ବୋଉ ବେଳେ ବେଳେ ବିରକ୍ତ ହୁଏ, କହେ କରୁଥା, କେତେ ଦହଗଞ୍ଜ । ମରିଗଲା ପରେ ବୁଝିବୁ । ତୁ କାହିଁକି ମରିବୁନା କହି ସେ ବୋଉର ମସଲା ଗନ୍ଧ ଆସୁଥିବା ଲୁଗା କାନିରେ ନିଜର ମୁହଁଟା ପୋଛିନିଏ ଆଉ ସେହି ଅବସରରେ କାନିରେ ଗଣ୍ଠିପଡ଼ିଥିବା ଖୁଚୁରା ପଇସାତକ ଫିଟାଇ ନିଏ । ବୋଉ ଜାଣିବି ଅଜଣା ହେ । ବେକାର ପାଠୁଆ ଏଡ଼େବଡ଼ ପୁଅକୁ କଣ ବା କହନ୍ତା ?

ସକାଳୁ ସକାଳୁ ଇଣ୍ଟରଭ୍ୟୁ ନାଁରେ ସାଇକେଲଟା ଧରି ସେ ଘରୁ ବାହାରି ଆସିଥିଲା । ଦୋକାନରେ ଚା କପେ ପିଇ ଘୁରାଘୁରି କରି ଏ.ଜି.ଅଫିସ୍ ସାମ୍ନାରେ ପହଞ୍ଚିଲା ବେଳକୁ ଇଣ୍ଟରଭ୍ୟୁ ପାଇଁ କ୍ୟୁ ଲାଗି ଯାଇଛି । ସେ ମଣିଷର କ୍ୟୁ ତାକୁ ପିମ୍ପୁଡ଼ିର ଧାଡ଼ି ଭଳି ଦିଶିଲେ । ନିଜେ ଜଣେ ପ୍ରାର୍ଥୀ ହିସାବରେ ସେହି କ୍ୟୁରେ ସେ ଠିଆ ହେଇ ପାରିଲା ନାହିଁ । ବରଂ ସେହି କ୍ୟୁଆଡ଼େ ଚାହିଁ ସେ ସାଇକେଲିଂ କରିବାର କ୍ଲାନ୍ତି ମେଣ୍ଟାଉଥିଲା । ତା'ପରେ ପାଖ ଦୋକାନରୁ ପାନ କିଣିଲା, ପୁଣି ଚା ପିଇଲା, ସିଗାରେଟ ଟାଣିଲା । ଇଣ୍ଟରଭ୍ୟୁ ଆରମ୍ଭ ହେଇଗଲା । ତା ନାଁ ଡକା ହେବାର ଶୁଣିଲା । ସେତେବେଳେ ସେ ସିଗାରେଟ ଫୁଙ୍କୁଫୁଙ୍କୁ ହସି ଦେଲା । ଇଣ୍ଟରଭ୍ୟୁ ସରିଗଲା । ଶୂନ୍‌ଶାନ୍ ହେଇଗଲା ସ୍ଥାନଟା ।

ଦିନ ଗଡ଼ିଗଲା ।

ଏ.ଜି.ଅଫିସ୍ ସାମ୍ନାରୁ ଅନିର୍ଦ୍ଦିଷ୍ଟ ଭାବରେ ସାଇକେଲଟା ଗଡ଼ାଇ ନେଲା ଲଗ୍ନ । କୁଆଡ଼େ ଯିବ ? ଘରକୁ ? ନା.... ଏତେ ଶୀଘ୍ର ସେ ସେହି ଜେଲଖାନାକୁ ଫେରିଯିବନି । ପହଁଞ୍ଚୁ ପହଞ୍ଚୁ ଇଣ୍ଟରଭ୍ୟୁ କେମିତି ହେଲା ବୋଲି ବାପା, ବୋଉ, ଭାଉଜ, ଭଉଣୀ ସମସ୍ତେ ପଚାରି ବସିବେ । ସେ ଯେ ଏ.ଜି.ଅଫିସ୍ ସାମ୍ନାରେ ଦିନସାରା ଠିଆ ହେଇ ଟା ସିଗାରେଟ ଭିତରେ କଟାଇଛି ଓ ଇଣ୍ଟରଭ୍ୟୁ ଦେଇ ନାହିଁ, ଏକଥାତ କାହାକୁ କହିହେବ ନାହିଁ । ବରଂଚ ସେମାନଙ୍କର ପ୍ରଶ୍ନର ଏକ ସୁନ୍ଦର ଉତ୍ତର ଠିକ୍ କରିନେବାର କ୍ଷତି କଣ ।

ସେ ଭାବିଲା, ତା'ନାଁ କିଏ ଲଗ୍ନ ଦେଲେ ଯେ ! ଏତେ ଅସଲଗ୍ନ ଭିତରେ ସେ କେମିତି ଲଗ୍ନ ପାଲଟି ଗଲା ! ଏଇଟା ନିଷ୍ଟେ ବୋଉର ପ୍ରଦତ୍ତ ନାଁ । ସତେ ବୋଉହିଁ ତାର ସବୁଠୁ ବଡ଼ ଦୁର୍ବଳତା । ହାୟ, ବୋଉ ନ ଥିଲେ ଏ ଟଙ୍କା ପଇସା ମଗାମଗି ଭିତରେ ସେତ ମରି ଯାଇଥାନ୍ତା । ମନ ବୁଝିଲା ଭଳି କିଏ ଅଛି ସେ ଘରଟାରେ ? କେଉଁଆଡ଼େ ପଳାଇ ଯିବା କଥା ଭାବିଲେ ବୋଉର ପେଜୁଆ ଆଖିହିଁ ତାକୁ ବାନ୍ଧି ପକାଏ । ଆଃ, ବୋଉମାନେ ଏତେ ସ୍ନେହୀ ହୁଅନ୍ତି କିଆଁ ? ପୁଅର ଦୋଷଦୁର୍ବଳତାରେ ସେମାନେ କାହିଁକି ଯେ ଅନ୍ଧୁଣୀ ପାଲଟି ଯାଆନ୍ତି ବୁଝିପାରେନି ଲଗ୍ନ । ସାଇକେଲର ପ୍ୟାଡ଼େଲ ଘୁରାଇ ଘୁରାଇ ଲଗ୍ନ ଭାବିଲା 'ନବପ୍ରଭାତ' ଯିବ କି ? ସେଠି ଯେ ରହନ୍ତି ତାଙ୍କୁ ସେ ରାଇଟର ବୋଲି ଡ଼ାକେ । ତାଙ୍କର କେତୋଟି ବହି ଓଡ଼ିଶାରେ ଚହଳ ପକାଇଦେଇଛି । ସେ ବହିଫଇର ଧାର ଧାରେନି । ବଡ଼ ଅଦ୍‌ଭୁତ ଏ ଲେଖକ ଜଣକ । ସବୁବେଳେ ହସହସ । ମନେହୁଏ ଦୁଃଖ ସତେକି ଏ ଲୋକଟାକୁ ଟିପେ ବି ଛୁଇଁନାହିଁ । ସବୁବେଳେ କହନ୍ତି, ଜୀବନରେ ଦୁଃଖ କଣ ? ଦୁଃଖ ବୋଲି କିଛି ନାହିଁ । ଜୀବନକୁ କେବଳ ନିରେଳା ଜୀବନ କରି ଦେଖ । ଅନ୍ୟଥା ଦର୍ଶନ ଭର୍ତ୍ତି କଲେ ଜୀବନ ବୋଝ ଲାଗିବ । ତୁମେମାନେ ମରୁଭୂମିରେ କଣ୍ଟା ଦେଖୁଛ ବୋଲି ତ ଜୀବନରେ ବଞ୍ଚିବାକୁ ଭଲ ଲାଗେନି ତୁମମାନଙ୍କୁ । ମୁଁ କିନ୍ତୁ ମରୁଭୂମିରେ ସବୁବେଳେ ଫୁଲ ଫୁଟିବାର ଦେଖେ । ଶହ ଶହ ବର୍ଷ ଧରି ବଞ୍ଚିବାକୁ ଚାହେଁ । ଏ ପୃଥିବୀ, ଏ ଆକାଶ କେତେ ସୁନ୍ଦର । ଏଠି କେତେ କେତେ ସୌନ୍ଦର୍ଯ୍ୟ, ଭଲ ପାଇବା ରହିଛି । କେତେ ଦେଖିବାର, ଜାଣିବାର ଚିଜ ରହିଛି । ତୁମେ ସେ ସବୁଠାରୁ କେମିତି ଏ ବୟସରୁ ମୁକ୍ତି ଖୋଜୁଛ । ଲଗ୍ନ ! ମୋର ମନେହୁଏ ତୁମେ ବୋଧହୁଏ ନିଜକୁ ଭଲପାଇ ପାରିନା । ଯିଏ ନିଜକୁ ଭଲପାଇ ପାରେନା ସେ କେମିତି ବାହାର ଜଗତକୁ ଭଲ ପାଇ ଶିଖିବ ଯେ ?

ଲଗ୍ନ ଚାହିଁରହେ ରାଇଟରଙ୍କ ଭାଷଣକୁ । ସଂସାର ଭିତରେ ଥାଇ ଏ ଲୋକଟାକୁ କେମିତି ଦୁଃଖ ଛୁଉଁନି ଯେ ! କେମିତି ବଞ୍ଚିବାରେ ଯା'ଙ୍କର ଏତେ ସ୍ପୃହା ଆସୁଛି । କିନ୍ତୁ

ସତ୍ୟର ପର୍ଦ୍ଦା ଉଠିଗଲା ପରେ ସେଦିନ ଆହୁରି ଆଶ୍ଚର୍ଯ୍ୟ ହୋଇ ଥିଲା ସେ । ଦୁଃଖକୁ ପିଇପିଇବି ମଣିଷ ଯେ ଅନ୍ୟକୁ ହସିବାକୁ କହିପାରେ, ଅନ୍ୟର ହସରେ ନିଜେ ହସ ମିଶାଇ ପାରେ ତାକୁ ଆଚମ୍ବିତ କରି ଦେଇଥିଲା । ରାଇଟରଙ୍କର ଥିଲା ଏକ ବିଚିତ୍ର ଜୀବନ । କେଉଁ ଏକ ଅନାଗତ ବନ୍ୟାରେ ତାଙ୍କର ଏକଦା ରେଭେନ୍‌ସାରେ ପଢୁଥିବା ଏକମାତ୍ର ଝିଅ ସବୁଦିନ ପାଇଁ ଭାସିଯାଇଥିଲା । ସେହିଦିନଠୁ ସ୍ତ୍ରୀଙ୍କର ପାଗଳାମି ଭଲ ହେଉନାହିଁ । ସେହି ଦାରୁଣ ପରିସ୍ଥିତିକୁ ସାମ୍ନା କରି ନପାରି ଚାକିରି ଛାଡ଼ି ସେ ଏ ସହରକୁ ଚାଲି ଆସିଛନ୍ତି । 'ନବପ୍ରଭାତ' ନାମକ ଦୋକାନଟେ ଖୋଲିଛନ୍ତି । ବାରମ୍ବାର ସେ କହନ୍ତି, 'ପ୍ରତିଟି ସକାଳ ମୋତେ ଗତାନୁଗତିକ ନ ଲାଗି ନୂଆ ନୂଆ ଲାଗେ ।' 'ନବପ୍ରଭାତ' ସୌନ୍ଦର୍ଯ୍ୟରେ ମୁଁ ଗାଧୋଇ ପଡ଼େ, ତାର ସୁନେଲି କିରଣ ମୋତେ ଅଭିଭୂତ କରିପକାଏ ।' ମୋଟ ଉପରେ ରାଇଟରଙ୍କୁ ସକାଳ ହିଁ ଭଲ ଲାଗେ । ଏ ସକାଳ ପୁଣି କୁଆଡ଼େ ତାଙ୍କୁ ନୂଆ ନୂଆ ସମ୍ବାଦ ଦିଏ, ନୂଆ କାହାଣୀ ଶୁଣାଏ; ନୂଆ ଭାବରେ ଆଉ ଗୋଟାଏ ସକାଳକୁ ଅପେକ୍ଷା କରିବାକୁ ପ୍ରେରଣା ଦିଏ । ରାଇଟରଙ୍କ ଜୀବନର ସେହି ଗୋପନ କଥାଟା ଜାଣିବାପରେ ଦିନେ ଲଗ୍ନ ପଚାରିଥିଲା, କହନ୍ତୁତ ମୃତ୍ୟୁ ଓ ପାଗଳାମି ଭିତରେ ଦୂରତ୍ୱ କେତେ ? ଚମକିଲା ଭଳି ତାକୁ ସେ ଚାହିଁଥିଲେ ପ୍ରଥମେ । ତାପରେ ଧୀରେ ଧୀରେ ସ୍ୱାଭାବିକ ହେଇଯାଇଥିଲେ । କହିଥିଲେ ପାଗଳାମି ଭିତରେ ଜୀବନର ହିସାବ ଢ଼ିଲା ହୋଇଯାଏ ଆଉ ମୃତ୍ୟୁରେ ସେ ହିସାବର ଶେଷ ହୁଏ । କିନ୍ତୁ ଲଗ୍ନ ! ବଞ୍ଚିବା ପାଇଁ ଜାଣତରେ ହେଉ କିମ୍ବା ଅଜାଣତରେ ହେଉ ଥରେ ନା ଥରେ ପାଗଳ ହେବା ଦରକାର । କିନ୍ତୁ କାହିଁକି ? ଏ ପ୍ରଶ୍ନଟା ପଚାରିବାକୁ ଯାଇ ସେ ପଚାରି ପାରିନଥିଲା ।

ଲଗ୍ନର ମନେ ହେଉଥିଲା ବଞ୍ଚିବା ଖୋଜି ଖୋଜି ସେ କ୍ଲାନ୍ତ ହେଇ ପଡ଼ିଛି । ଜୀବନର ହତାଶା ତାକୁ କ୍ରମଶଃ ମରଣ ପାଖକୁ ଆସ୍ତେ ଆସ୍ତେ ଟାଣି ନେଉଛି । ସତକୁ ସତ ଯଦି ତାର ମୃତ୍ୟୁ ହେଇଯାନ୍ତା... କଣ ହୁଅନ୍ତା ? କଣ ଆଉ ହୁଅନ୍ତା । ସେତ ମନ୍ତ୍ରୀ, ନେତା, ସମାଜସେବୀ କି ପ୍ରଖ୍ୟାତ ଲେଖକ ନୁହେଁ । ସାଧାରଣ କୋଟି କୋଟି ମଣିଷର ସମୁଦ୍ର ଭିତରେ ଗୋଟେ ଜିନିଷ ବାଦ୍ ପଡ଼ିଗଲେ ସଂସାର ତାର ହିସାବ ରଖେ ନାହିଁ । ତେବେ ସେ ବି ଦିନେ ବଡ଼ ମଣିଷ ହେବାର ସ୍ୱପ୍ନ ଦେଖିଥିଲା । ଇଞ୍ଜିନିୟର, ଡାକ୍ତର, ଆଇ.ଏ.ଏସ୍. କି ନେତା ନୁହେଁ, ଜଣେ ପ୍ରଖ୍ୟାତ କବି ହେବାର ସ୍ୱପ୍ନ ତାର ଥିଲା । ଏକଥା ଶୁଣି ସ୍ୱାତୀଦାସ ହସି ହସି ଗଡ଼ିଥିଲା । ତମେ ଗୋଟାଏ ପାଗଳନା କଣ ଲଗ୍ନ ? ସମାଜରେ ପ୍ରତିଷ୍ଠିତ ହେବା ପାଇଁ ପଦବୀ ଦରକାର । ବଞ୍ଚିବାର ଏତେ ଏତେ ଉପାୟ ଥିଲା ବେଳେ ତମେ କବି ହେବା କଥା ଭାବୁଛ ? ମୋର ଧାରଣା ହୁଏ ତମେ ବୋଧହୁଏ ତମ ପେଟ ଚାଖଣ୍ଡକୁ ବି ପୋଷି ପାରିବନି ।

ବଞ୍ଚିବାର ସହଜ ଉପାୟଟା ସ୍ୱାତୀ ଭଳି ଅନେକ ଜାଣନ୍ତି ଏମ୍.ଏ. ପରେ

ମୋଟାଅଙ୍କର ଚାକିରିଟେ କରିବା । ସୁଖ ଅର୍ଥ ବୁଝେଇ କୋଠା, ଗାଡ଼ି, ଗହଣା, ଗାର୍ଡ଼ନ ଭିତରେ ବସି ମାଳିକୁ ଭାଷଣ ମାରିବା । ବଞ୍ଚିବାର ଦୃଷ୍ଟିକୋଣ ଦିନକୁ ଦିନ କେତେ ବଦଳି ଯାଉଛି, କେତେ ସୀମିତ ହେଇ ଯାଉଛି ଭାବି ଲଗ୍ନ ହସିଲା । ହେଲେ ସେ କାହିଁକି ଏହି ବଦଳି ଯାଉଥିବା ଚିନ୍ତାଧାରା ସହିତ ନିଜକୁ ମିଶାଇ ପାରିଲା ନାହିଁ ? କାହିଁକି ବହୁ ସମ୍ଭାବନା ଥିବା ସତ୍ତ୍ୱେ ସେ କବିଟିଏ ହେବାଲାଗି ସ୍ୱପ୍ନ ଦେଖିଲା ? କାହିଁକି ଜୀବନରେ ସେ କିଛି ବି କରି ପାରିଲା ନାହିଁ ?

ପଚ୍ଛଜୀବନକୁ, ପଚ୍ଛଦିନର ଆଶାମାନଙ୍କର ସମାଧି ଦେଖିଲେ ଲଗ୍ନର ସହାନୁଭୂତି ଜନ୍ମେ । ଅତୀତର ଲଗ୍ନ କହେ, ହେ ନିର୍ବୋଧ । ତୁ କେମିତି କେବଳ କବି ହେବାର ସ୍ୱପ୍ନ ଦେଖିଲୁ ? ଜାଣୁ ଆଶା ସଫଳ ନ ହେଲେ କଷ୍ଟ ଲାଗେ । ତୁ ଆହୁରି କଷ୍ଟ ପା' ଲଗ୍ନ । କାରଣ ଏବେବି ତୁ ପୁଣି ସବୁ ଧ୍ୱଂସ ଉପରେ ଠିଆ ହୋଇ ସ୍ୱପ୍ନ ଦେଖିବା ଛାଡ଼ି ନାହୁଁ । ବର୍ତ୍ତମାନର ଲଗ୍ନ ଅତୀତ ଲଗ୍ନର କଥାରେ ଆହୁରି ଅସହାୟ ହୋଇପଡ଼େ ଓ ଭାବେ ମଣିଷ ମଣିଷ ପାଖରେ ଏଡ଼େ ଅବୁଝା ହେଇପାରେ ?

'ନବପ୍ରଭାତ' ପାଖରେ ସାଇକେଲଟା ଠିଆ କରାଇ ରାଇଟରଙ୍କୁ ନମସ୍କାର କଲା ଲଗ୍ନ । ରାଇଟର ତାକୁ ସ୍ୱାଗତ ଜଣାଇଲେ । ଝାଳୁଆ ମୁହଁଟାକୁ ପୋଛି ବସି ପଡ଼ିଲା ଲଗ୍ନ । ବସୁ ବସୁ ରାଇଟର ପଚାରି ଦେଲେ କେମିତି ଚାଲିଛି ଜୀବନ ? କଣ ଉତ୍ତର ଦେବ ହଠାତ୍ ଠିକ୍ କରି ପାରିଲାନି ଲଗ୍ନ । କାହିଁକି ମୁଁ ଏବେ ଆଦୌ ସ୍ୱପ୍ନ ଦେଖିପାରୁ ନାହିଁ ? ମୋର ସ୍ୱପ୍ନ ଦେଖିବା କଣ ଶେଷ ହେଇ ଯାଇଛି ? କାହିଁକି ଆଜିକାଲି ମୋ ଛାତି ଭିତରେ ପବନ ଅଟକି ଯାଉଛି ? କହିବେକି, ବହି, ମେଗାଜିନ୍ କିଛି ପଢ଼ିବାକୁ କିଆଁ ଆଜିକାଲି ସ୍ପୃହା ଜାଗୁ ନାହିଁ ? କୌଣସି ଲଙ୍ଗଳା ପୋଷ୍ଟର ଆଡ଼େ ଚାହିଁବାକୁ ଇଚ୍ଛା ହେଉନାହିଁ । ଏପରିକି କଲେଜ ଜୀବନରେ ନୂଆ ନୂଆ ସେକ୍ସକୁ ନେଇ ଗପୁଥିବା ଆଲୋଚନା ଆଦୌ ଆଜିକାଲି ଉତ୍ତେଜନା ଦେଉନାହିଁ । କାହିଁକି ସବୁ ଛାଡ଼ି ବେଳେବେଳେ ପଳାଇ ଯିବାର ଇଚ୍ଛା ହେଉଛି ? ଏପରିକି ମରିଯାଆନ୍ତି କି ଏମିତି ଏକ ଭାବ ଦିନକୁ ଦିନ ମୋତେ କାବୁ କରି ଦେଉଛି ।

ଲଗ୍ନ କିଛି ବି କହିପାରିଲାନି । ଅନେକ ଗୁଡ଼ିଏ ଭାବନା ଏକାଠି ହେଇଗଲେ ବୋଧହୁଏ ମଣିଷ ଶବ୍ଦହୀନ ହୋଇଯାଏ । ତା ନିରବତା ଦେଖି ହସିଲେ ରାଇଟର । କହିଲେ, ଜାଣନା ଲଗ୍ନ ! ପୃଥିବୀରେ ଗୁଡ଼ାଏ ବୋକା ଅଛନ୍ତି ଯେଉଁମାନେ କି କାରଣ ନ ଥାଇ ସେଣ୍ଟିମେଣ୍ଟାଲ ହେଇ ପଡ଼ନ୍ତି ଆଉ ବାରମ୍ବାର ସାବ୍ୟସ୍ତ କରନ୍ତି ମୁଁ ଏକା, ନିଃସଙ୍ଗ, ମୋତେ କିଛି ଭଲ ଲାଗୁନି । ଲଗ୍ନ ! ପୁଣି ଥରେ କହୁଛି ଏ ପୃଥିବୀ ବଡ଼ ସୁନ୍ଦର । ଏଠିକାର ଜହ୍ନ, ଆକାଶ, ମଣିଷ, ପଶୁପକ୍ଷୀ ଆଉ ବିଚିତ୍ର ଜୀବନ ଧାରା ଖୁବ୍ ମନୋହର । ଏସବୁକୁ

ଦେଖିବା, ବୁଝିବା ଆଉ ଉପଭୋଗ କରିବା ପାଇଁ ଆମ ଜୀବନ ଯଥେଷ୍ଟ ନୁହେଁ । ତୁମର ଏତେ ସୁନ୍ଦର ଆଖି ଯୋଡ଼ାକ ଥିବାସ୍ଥଳେ ତମେ କିଛି ଦେଖିବାର ସ୍ପୃହା କେମିତି ପାଉନା ? ଜାଣିଛ ଲଗ୍ନ, ମୋର ଜଣେ ସାଙ୍ଗ ଥିଲା ଯିଏକି ବସନ୍ତରେ ତାର ଦୁଇଟା ସାରା ଆଖି ହରାଇ ଦେଇଥିଲା । ସବୁବେଳେ ଆମେ ଦୁଃଖ କରୁ ତା ପାଇଁ । ସେ ହସେ ଆଉ କହେ ଏଇ ଅନ୍ଧାରର ପୃଥିବୀରେ ବି ମୁଁ ବଞ୍ଚିବାର ଆଲୋକ ପାଉଛି । ମୁଁ ଯେ ଏଠି ନିଃଶ୍ୱାସପ୍ରଶ୍ୱାସ ନେଇ ପାରୁଛି, ପକ୍ଷୀମାନଙ୍କ ଶବ୍ଦରୁ ସକାଳ ସଞ୍ଜ ଜାଣିପାରୁଛି ତାହା ମୋ ପାଇଁ ଯଥେଷ୍ଟ । ଭଗବାନ ମୋତେ ବଞ୍ଚେଇ ରଖି ହିଁ ଧନ୍ୟ କରି ଦେଇଛନ୍ତି । ଲଗ୍ନ ! ଆଖି ନଥିବା ମୋର ସେହି ଅନ୍ଧ ବନ୍ଧୁଟି କେବେ ଜୀବନ ଉପରୁ ବିଶ୍ୱାସ ହରାଇ ନାହିଁ କି ମରିଯିବାର ଏତେଟିକେ ଭାବ ପୋଷଣ କରି ନାହିଁ । ବାଡ଼ିଧରି ଅଣ୍ଡାଳି ଅଣ୍ଡାଳି ଚାଲିବାରେ ତାର ଫେର୍ କି ଆଗ୍ରହ । ନୂଆନୂଆ ଆବେଗକୁ ନେଇ ସେ ଜୀଇଁଥିଲା । କେବେବି ଭଗବାନଙ୍କୁ ନିନ୍ଦା କରି ନାହିଁ । ସେହି ମୋତେ ଶିଖାଇ ଦେଇ ଯାଇଛି ଯେ ଉପଭୋଗ କରିଯାଅ ସଂସାରର ସୌନ୍ଦର୍ଯ୍ୟକୁ । ମଣିଷ ଜନ୍ମ ପାଇବା ମହା ଭାଗ୍ୟ । ସେହିଦିନଠୁ ମୁଁ ମୋର ଅସହାୟ ମୁହୂର୍ତ୍ତରେ ମଧ କ୍ଳାନ୍ତିକୁ, ଅସହାୟତାକୁ ପାଖ ପଶାଇ ଦେଇନାହିଁ । ସବୁବେଳେ ନିଜକୁ ସତେଜ ରଖିବାକୁ ଚାହିଁଛି । ଲଗ୍ନ ! ମଣିଷର ଜୀବନ ପାଣିଫୋଟକା ଭଳି । ତାର ପ୍ରତି ମୁହୂର୍ତ୍ତ ମୂଲ୍ୟବାନ । ତାକୁ ନଷ୍ଟ କରିଦିଅନା ।

'ନବପ୍ରଭାତ' ଆସି ଲଗ୍ନ ଦେଖିଲା ରାତି ଆଠଟା ବାଜିଛି । ଘରକୁ ଫେରି ଯିବକି ? କେହି ପରିଚିତ ସାଙ୍ଗ ଦେଖାହୁଅନ୍ତାକି । ଆଜିକାଲି ପୁରୁଣା ସାଙ୍ଗଟେ ଦେଖା ହେଲେବି ତା ଭଳି ବେକାର ସହିତ ଗପିବାକୁ ସମୟ ପାଆନ୍ତି ନାହିଁ । ଯେ ଯାହାର ଧନ୍ଦାରେ ବ୍ୟସ୍ତ । ଦେଖାହେଲେ କଲେଜରେ ପଢ଼ିଲାବେଳର ଗୁଲିଖଟି ଜମେ ନାହିଁ । କେମିତି ଏକ ଫର୍ମାଲ ଫର୍ମାଲ ଭାବ ସେହି ପରିଚିତ ମୁହଁମାନଙ୍କ ସହ ମିଶିଯିବାଭଳି ଲାଗେ । ଲଗ୍ନ ପ୍ରଗଳ୍‌ଭ ହେଇ ଗପି ପାରେନା । କେମିତି ମାଡ଼ି ମାଡ଼ି ପଡ଼େ । ସେ ଏମିତି ବେକାର ହେଇ ରହିଗଲା... ଜୀବନସାରା କୌଣସି ପ୍ରକାରେ କମ୍ପ୍ରମାଇଜ କରି ପାରିଲା ନାହିଁ । ଏଇଟା ତା'ର ଅବଶୋଷ । ଆଃ, କୁଆଡ଼େ ଗଲା ସେ କଲେଜର ଖୋଲା ଜୀବନ, ସ୍ୱାତୀ ଦାସ ସହିତ ଭଲ ପାଇବାର ଖେଳ ଆଉ ଶୋଇଶୋଇ ଚଦର ଭିତରେ ଦିନବେଳା ସ୍ୱପ୍ନ ଦେଖିବାର ସମୟ ? ଅଥଚ ଆଜି କେହି ନାହାନ୍ତି ପାଖରେ । ବଡ଼ ବଡ଼ ମଣିଷମାନେ କହିଯାଇଛନ୍ତି, ବଞ୍ଚିବା ପାଇଁ ପ୍ରତ୍ୟେକ ମଣିଷର ଜଣେ ଜଣେ ସାଥି ଲୋଡ଼ା । ବନ୍ଧୁହୀନ ଜୀବନ ମରୁଭୂମି ଭଳି । ହସିଲା ଲଗ୍ନ । ଯାହା ନ ହେବାର କଥା ତାକୁହିଁ ମଣିଷ ଖୋଜିଥାଏ ବ୍ୟାକୁଳ ଭାବେ, ଯେଉଁଠି ନ ରହିବାର କଥା ଅଟକିଯାଏ । ଲଗ୍ନ ଆଜି ପ୍ରଥମ ଥର ପାଇଁ ଅନୁଭବ କଲା ସତରେ ମନର ବେଦନାକୁ ହାଲ୍‌କା କରିବା ପାଇଁ ତାର ଏକ ସାଥି ଲୋଡ଼ା । ବାହା ନ ହୋଇ ରହି ଯାଇହୁଏ କିନ୍ତୁ ବନ୍ଧୁହୀନ ଜୀବନ କଟାଇବା ବଡ଼ କଷ୍ଟ ।

ଘଡ଼ିକୁ ଅନାଇଲା ସେ, ଅନେକ ରାତି ହେଲାଣି । ସକାଳୁ ହିଁ ଇଣ୍ଟରଭ୍ୟୁ ନାଁରେ ଘରୁ ବାହାରି ଆସିଛି । ବୋଉ ସେ ଆଡ଼େ ନ ଖାଇ ନପିଇ ଚାହିଁ ରହିଥିବେ । ଅଜବ ଏ ବୋଉ ନାମକ ଜୀବଟା । ଯେତେ ବିଳମ୍ବ ହେଲେ ମଧ ଦ୍ୱାର ପାଖରେ ବସି ନ ଖାଇ ତା ଫେରିବା ବାଟକୁ ଚାହିଁଥିବ । ସେଇଥିପାଇଁ ଇଚ୍ଛାକରିବି ବାହାରେ ବେଶି ସମୟ ରହିହୁଏ ନାହିଁ ।

ପରିଚିତ ରାସ୍ତାରେ ଗଲାବେଳେ ଭାସି ଆସିଲା କେଉଁଠୁ ଏକ କାନ୍ଦଣାର ସ୍ୱର । ଲଗ୍ନର ମନଟା ଖରାପ ହୋଇଗଲା । କାହାର କଣ ହେଇଛି ଏ ଅଧରାତିରେ । ଅନ୍ୟମନସ୍କ ହେଇଗଲା ସେ । ନା... ଆଜି ସେ ଆଦୌ କିଛି ଖାଇବ ନାହିଁ । ପହଁଞ୍ଚି ପହଞ୍ଚି ଭଲ ନ ଲାଗିବାର ଅଭିନୟ କରିବ, ଯେମିତି ବୋଉ ଇଣ୍ଟରଭ୍ୟୁ କଥା ପଚାରିବାକୁ ଭୁଲିଯିବ । ରାସ୍ତା ମଝିଟାରେ ବୁଲାକୁତୀଟା କାନ୍ଦୁଛି । ଲଗ୍ନ ସାଇକେଲ ଗଡ଼ାଇ ଗଡ଼ାଇ ଚାଲିଲା । ଆଜି କଣ ବୋଉ ଶୋଇପଡ଼ିଛି ? କାହିଁ ଦିଶୁନିତ । ଘରର କବାଟଟା ବନ୍ଦ ଅଛି । ଠକ୍ ଠକ୍ କଲା । କିନ୍ତୁ ବୋଉ ବଦଳରେ କବାଟ ଖୋଲିଲେ ଭାଉଜ । ସେ ଏତେବେଳ ଯାଏଁ ଶୋଇନାହାନ୍ତି । ଇଣ୍ଟରଭ୍ୟୁ କଥା ପଚାରି ଦେବେକି ? ନା.... ସେମିତି କିଛି ପ୍ରଶ୍ନ ଆସିଲା ନାହିଁ ।

ବୋଉ କଣ ଶୋଇପଡ଼ିଛି ? ଆସ୍ତେ ପଚାରିଲା ଲଗ୍ନ । ଭାଉଜ ତା ଆଡ଼େ ଟିକିଏ ଚାହିଁ ଦେଇ ଚାଲିଗଲେ । ଏଥର ଅଗଣାରେ ବସିଥିବା କେତୋଟି ମଣିଷର ଛାଇ ଦେଖିଲା ଲଗ୍ନ । ବିସ୍ମୟରେ ତାର ସୀମା ରହିଲା ନାହିଁ । ଏତେ ରାତିରେ ଏତେଜଣ ଯେ ବସିଛନ୍ତି ସେ ପର୍ଯ୍ୟନ୍ତ ଲକ୍ଷ୍ୟ କରି ନଥିଲା । ସମସ୍ତେ ଏମିତି ମୁଣ୍ଡରେ ହାତ ଦେଇ ବସିରହିଛନ୍ତି କାହିଁକି ? ଲଗ୍ନର କାନ୍ଦୁଥିବା କୁତୀଟା ମନେ ପଡ଼ିଲା ।

ଏଇନା ଆସିଲୁ ? ଶେଷବେଳକୁ ଅଭାଗାଟା ବୋଉକୁ ଦେଖି ବି ପାରିଲୁ ନାହିଁ ? ବଡ଼ ଭାଇ ଗାଉଁ ଗାଉଁ ହେଇ କହିଗଲେ । ଥରି ଉଠିଲା ଲଗ୍ନ । ବୋଉର ହାଇବ୍ଲଡ଼ପ୍ରେସର ବାହାରି ପଡ଼ିଲା । ଲଗ୍ନ ଘରୁ ଗୋଡ଼ କାଢ଼ିଲା ପରେ ପରେ ଘଣ୍ଟାଏ ଭିତରେ ଶେଷ । ଭାଇ ଖବର ପଠାଇ ଥିଲେ । କିନ୍ତୁ କେହି ତାକୁ ଭିଡ଼ ଭିତରେ ପାଇଲେ ନାହିଁ । ଦିନସାରା ଶବକୁ ପକାଇ ରଖା ଯାଇଥିଲା ତାରି ଅପେକ୍ଷାରେ । ହେଲେ କେତେ ସମୟ ମଡ଼ା ବାସି ହେଇଥାନ୍ତା ? ଏଇନା ସବୁ କାମ ସାରି ଗଙ୍ଗାକୂଳିଆମାନେ ଫେରିଛନ୍ତି ।

ବୋଉ ସତରେ ଚାଲିଗଲା ? ଏତେ ସହଜରେ ବିପୁଳ ମୁକ୍ତିକୁ ସାଉଁଟି ନେଇ ପାରିଲା ?

ଆଉ କିଏ କଣ କହିବା ଆଗରୁ ଲଗ୍ନ ଦୌଡ଼ିବା ଆରମ୍ଭ କଲା । ତାକୁ ଡ଼ାକୁଥିବା ଆତ୍ମୀୟମାନେ ପଛରେ ପଡ଼ିଗଲେ । ମାର୍କେଟ ବିଲଡ଼ିଂର ପ୍ରଧାନ ରାସ୍ତାରେ ପହଞ୍ଚି ପାର୍କିଂ

କରୁଥିବା ଜାଗାଟା ମଧ ଖାଲି ପଡ଼ିଥିଲା । ଇଗ୍ନ ଧାଇଁଲା ନବପ୍ରଭାତ । ଭାବିଲା କହିବି ରାଇଟର ! ମୁକ୍ତିର ନିଶାରେ ଆଜି ମୁଁ ପାଗଳ ହେଇ ଯାଇଛି । ବିଶ୍ୱାସ କରନ୍ତୁ ସଂସାରରେ ବାନ୍ଧିହେବାର ସମସ୍ତ ବନ୍ଧନ ମୋ ତୁଟିଯାଇଛି । କିନ୍ତୁ ନବପ୍ରଭାତ ଯେ ବନ୍ଦ । ରାଇଟରର ଘରକୁ ଚାଲିଯାଇଛନ୍ତି । ଇଗ୍ନ ଥକି ପଡ଼ି ଠିଆ ହେଇ ଚାରିଆଡ଼େ ଆଖି ବୁଲାଇ ଆଣିଲା । ଏଇ କେପିଟେଲକୁ ହେତୁ ହେଲାଦିନରୁ ଦେଖିଛି ସବୁବେଳେ ଜନଗହଳି, ଦୋକାନ ବଜାରରେ କିଣାକିଣି ଆଉ ଅସଂଖ୍ୟ ମଣିଷଙ୍କର ଯା'ଆସ । ଏଠିକାର ଆଲୋକ ସଜା, ରଙ୍ଗ ବେରଙ୍ଗୀ ପୋଷାକ ସଭ୍ୟତା ଦେଖି ତାର ମନେ ହେଇଛି ପ୍ରାଚୁର୍ଯ୍ୟର ଏ ସହରରେ ଦୁଃଖ ପଶିପାରେନି । ମୃତ୍ୟୁ ଭଳି ଏକ ବିସ୍ଫୋରଣକୁ ସତେ ଯେମିତି ଏ ଜାଗାର ସମସ୍ତ ବାସିନ୍ଦା ପାଶୋରି ଦେଇଛନ୍ତି । ହେଲେ ଆଜି ରାତି ଦୁଇଟାବେଳେ ସେହି ମାର୍କେଟରେ ଠିଆ ହେଇ ଇଗ୍ନ ଦେଖୁଛି ନିଃଶବ୍ଦ ସହରକୁ । କିଏ ଯେମିତି କହୁଛି ଜୀବନକୁ ଦେଖି, ଭଲକରି ଦେଖି । ଏମିତି ବସନ୍ତ ଋତୁ ଆସିଲେ ସମସ୍ତେ ଥାନ୍ତି ପାଖରେ କିନ୍ତୁ ବୈଶାଖ ହେଲେ ସଭିଏଁ ନିଛାଟିଆ କରି ଚାଲି ଯାଆନ୍ତି । ଇଗ୍ନ ତା ଚାରିପଟର ପୃଥିବୀ ଉପରେ ଆଖି ବୁଲାଇ ନେଲା । ନିଜକୁ ପଚାରିଲା, ଆମ ଭଳି ମଣିଷ ପାଇଁ କଣ କେବଳ ଦୁଃଖ, ଅସହାୟତାର ସୃଷ୍ଟି ? ରାଇଟର ଥିଲେ ତାଙ୍କୁ ସେ କହିଥାନ୍ତା, ଅତୀତରେ ଆପଣ ଅନେକ ଉପଦେଶ ଦେଇଛନ୍ତି । ଅନେକ ଥର ବୁଝାଇଛନ୍ତି ମରୁଭୂମିର ଫୁଲ କଥା, ଆକାଶର ଜହ୍ନ କଥା କିନ୍ତୁ ଏହି ରାତିରେ ଦେଖନ୍ତୁ ମୁଁ ନିଜେ କେମିତି ମରୁଭୂମି ପାଲଟି ଯାଇଛି । ଜାଣନ୍ତି; ବୋଉକୁ ମୁଁ ଖୁବ୍ ଭଲ ପାଉଥିଲି । ଯେ କି ଦୁନିଆ ଯାକର ସବୁ ଆକର୍ଷଣ, ବନ୍ଧନ ଥିଲା । ରାଇଟର ! ମୋ ବୋଉ ପୋଡ଼ି ପାଉଁଶ ହେଇଯାଇ ଥିବା ସ୍ଥାନରେ କଣ ସତରେ ଫୁଲ ଫୁଟିବ ? କେବେ ଫୁଟିବ ? ସେ ଫୁଲର ରଙ୍ଗ କଣ ହେବ ?

ମୁକ୍ତିର ନିଶାରେ ଅନେକ ଥର ପାଗଳ ହେଇ ଉଠିଥିବା ଇଗ୍ନ ପାଇଁ ବୋଉହିଁ ଥିଲା ବନ୍ଧନ । ତାରି ଆକର୍ଷଣରେ ସେ ଅନେକ ଥର ମୁକ୍ତିକୁ ଅସ୍ୱୀକାର କରିଛି । ଆଜି କିନ୍ତୁ ଏବେ ମୁକ୍ତିକୁ ସେ ସ୍ୱୀକାର କରି ପାରୁନାହିଁ । ମୁକ୍ତି ଭିତରେ ଫେର୍ ଏତେ ଶୂନ୍ୟତା ଥାଏ ? ଆଜି ସେ ଭାବୁଛି ସତରେ କଣ ତାର ସାଥି ନଥିଲା । ଜୀବନରେ ବୋଉ କଣ ତାକୁ ସବୁଠୁ ବେଶି କମ୍ପାନୀ ଦେଇ ନଥିଲା ?

ସବୁ ମୁକ୍ତିର ଦ୍ୱାର ଖୋଲିଗଲା ପରେ ଜୀବନର ଏକ ଅଦ୍ଭୁତ ଛକରେ ଛିଡ଼ା ହେଇଛି ଇଗ୍ନ । ଆଗକୁ ଯିବ ନା ପଛକୁ ଯିବ କିଛି ଠିକ୍ କରି ପାରୁନାହିଁ । ଯେଉଁ ସହରଟାରେ ଦିନସାରା ଚକ୍କର ମାରୁଥିଲା, ସେ ସହରର ନିଃଶବ୍ଦ ରାତିରେ ସିଏ ବୋକା ପାଲଟି ଯାଇଛି ।

ଏତେ ମୁକ୍ତି ତାର କଣ ହେବ ଯେ ? ଏତେ ପରିମାଣରେ ମୁକ୍ତି ତ ସେ କେବେ ଚାହିଁ ନଥିଲା ? ଆଃ, ମୁକ୍ତିରେ ଫେର୍ ଥାଏ ଏତେ ଯନ୍ତ୍ରଣା ?



# କେବେ କେବେ ଭାଙ୍ଗିଯାଏ ସ୍ୱପ୍ନ ସବୁ

ଜାଣ ରୀତା ଆମ ଝିଅ ଇଗ୍ନାର ବାରବର୍ଷ ପୂରିଗଲା । ହେଇ ଦେଖ ସେ ଆସିଛି ତମକୁ ଦେଖା କରିବାକୁ । ଓଳଗି ହେଉଛି ।

ତମେ ମୋ କଥା ବୁଝିଲନା ନାହିଁ ଜାଣେନା । ଦାନ୍ତ ଦେଖାଇ ହସି ଦେଲ । ହସି ହସି ଗଡ଼ିଗଲ । ପୁଣି ଖିଙ୍କାରି ଉଠିଲ । ଝିଅ ଇଗ୍ନା ଡ଼ରିଯାଇ ମୋତେ ଜାବୋଡ଼ି ଧରିଲା ଆଖି ଛଳ ଛଳ କଲା । ତମେ ହସୁ ହସୁ ହାତ ହଲା ଆରମ୍ଭ କରି ଦେଇଥିଲ ।

ଦଶବର୍ଷ ତଳେ ତମକୁ ଏଇ ମେଣ୍ଟାଲ ହସ୍‌ପିଟାଲକୁ ଅଣାଯାଇଥିଲା । ମୁଁ କଣ ଜାଣିଥିଲି ତମେ ଆଉ ଘରକୁ ଫେରିବ ନାହିଁ ବୋଲି ? ଭାବିଥିଲି ତମେ ଭଲ ହେଇଯିବ । ପୁଣି ଆମେ ମିଳିମିଶି ଆମ ଘର ସଜାଇବା । ତମେ ଫୁଲ କୁଣ୍ଡରେ ପାଣିଦେବ, ଝିଅ ପାଇଁ ମୋଜା, ଟୋପି ବୁଣିବ, ପଡ଼ୋଶିନୀଙ୍କ ସହିତ ଗପିବ । ଆମେ ମନ୍ଦିର ଯିବା, ପାର୍କରେ ବସିବା । ଏହି ଏନ୍‌ଗେଜ୍‌ଡ୍ ପୃଥିବୀ ଭିତରୁ ବାହାରି ଗପିବା ପାଇଁ କିଛି ସମୟ ବାହାର କରିନେବା । କେବେ ପୁଣି ଭଙ୍ଗା ମେଘ ଭିତରୁ ହସୁଥିବା ଜହ୍ନକୁ ଦେଖିବା ତ ଶେଫାଳୀଫୁଲ ଗୋଟାଇବା । କୃଷ୍ଣଚୂଡ଼ା ମୂଳରେ ବସିଥିଲା ବେଳେ ଫୁଲ ସବୁ ଆମ ଉପରେ ଖସି ପଡ଼ିବ ଆଉ ଟିକି ଟିକି ଝୁରା ସ୍ୱପ୍ନସବୁ ତା ସହିତ ମିଶିଯିବେ । ଆମର ପ୍ରଥମ ବାହାଘରର ବର୍ଷ ଭଳି ସ୍ୱପ୍ନେଇ ଯିବ ତମେ, ସ୍ୱପ୍ନେଇ ଯିବି ମୁଁ । ସ୍ୱପ୍ନମୟ ହେଇ ଯିବ ଆମ ଦୁନିଆ । ଓଦାଳିଆ ସୁନ୍ଦର ସକାଳ ଭଳି ଆମ ଘରେ ସକାଳ ଆସିବ । ଭିଜା ମାଟିର ବାସ୍ନାରେ ତମେ ବିହ୍ୱଳ ହେଇ ଉଠିବ ଆଉ... ଛାଡ଼ । ଏ ସବୁ କଣ ହେଇଗଲା ରୀତା ?

ଦଶବର୍ଷ ହେଲା ମୁଁ ଆଶା ନେଇ ବଞ୍ଚିଛି ଯେ ତମେ ଭଲ ହେଇଯିବ । କିନ୍ତୁ ଏପରି ଆମର କାହିଁକି ହେଲା ? କେବେତ କାହାରି ଅନିଷ୍ଟ ଚିନ୍ତା କରିନାହୁଁ । କାହାରି କ୍ଷତି କି ମନ୍ଦ ପାଞ୍ଚି ନାହୁଁ । ତାହାଲେ ଆମ ଦୁହିଁଙ୍କର ଜୀବନ ଏଭଳି ଭାବରେ ନଷ୍ଟ ହୋଇଗଲା କିଆଁ ?

ବାହାଘରର ତିନିମାସ ପରେ ତମକୁ ଡାକ୍ତରଙ୍କ ପାଖକୁ ନେଇ ଯାଇଥିଲି । ସେ ହିଁ ଶୁଭ ଖବରଟି ଦେଇଥିଲେ ତମର ପ୍ରେଗ୍‌ନାଣ୍ଟ ହେବା କଥା । ତାପରେ ଆମ ଦୁହିଁଙ୍କର ସ୍ୱପ୍ନରେ ରାତି ଛୋଟ ହେଇ ଯାଇଛି । ପୁଅଝିଅର ରାଶିରାଶି ନାଁ ବଛାହେଇଛି । ତମେ କଣ୍ଢେଇ ସେଟ, ଛୋଟ ମୋଜା, ଟୋପି କିଣିବା, ବୁଣିବାରେ ସମୟ ବିତାଇ ଦେଇଛ ।

ମା' ହେବାର ଆନନ୍ଦ ତମକୁ ପରିତୃପ୍ତିରେ ବିଛଣାରେ ଶୋଇ ଦେଲାବେଳେ ବାପା ହେବାର ଆନନ୍ଦ ମୋତେ ଅଧିକ ପ୍ରଗଳ୍ଭ କରି ହେଉଥିଲା । ସେସବୁ ଦିନ କେତେ ଶୀଘ୍ର ଘୋଡ଼ା ପିଠିରେ ଉଡ଼ିଯାଇ ଜହ୍ନ ରାଇଜରେ ପହଞ୍ଚି ଯାଇ ନଥିଲା ସତରେ ।

ଅପେକ୍ଷାରେ ଦିନ ସରିଗଲା । କୁଆଁରବ ଦେଇ ଝିଅ ଆମର ପୃଥିବୀର ଆଲୁଅ ଦେଖିଲା । କାନ୍ଦୁରା ଛୁଆଟାକୁ ଅନଭ୍ୟସ୍ତ ହାତରେ ଧରି ହଲାଇ ପକାଇଲା ବେଳେ ଖୁସି ସବୁ ତମ ଗାଲରେ ଭଉଁରୀ ସୃଷ୍ଟି କରୁଥିଲା । ମା' ହେଲେ ନାରୀ ପେର୍ ଏଡ଼େ ଚମତ୍କାର ଦିଶେ !

ଝିଅର ନାଁ ଆମେ ରଖିଲୁ ମିଲନ । ମିଲନ ଆମ ମିଳନର ସାକାର ଥିଲା । ଧୀରେ ଧୀରେ ସେ ତାର ବାଲ୍ୟ, କୈଶୋରର ପାହାଚ ଚଢ଼ିଲା । ତାର କଥା, ହସ, ଅଙ୍ଗଭଙ୍ଗୀ, ବିଭିନ୍ନ ପ୍ରଶ୍ନଭିତରେ ଆମେ ଦୁହେଁ ଦୁନିଆ ଭୁଲିଲୁ । ତା ପରେ କେମିତି କେଜାଣି ପୁଅଟିଏ ଲାଗି ମୁଁ ବ୍ୟାକୁଳ ହେଲାବେଳେ ତମେ କିଛି ପାଇଁ ବି ରାଜି ହେଲ ନାହିଁ ।

ମିଲନ ନର୍ସରୀ ସାରି ସ୍କୁଲ ଗଲା । ପୁଣି ସ୍କୁଲ ଜୀବନ ସାରି କଲେଜରେ ପାଦ ଦେଲା । ତମେ ନିଜେ ଯାଇ ମହିଳା କଲେଜରେ ତାର ଆଡ୍‌ମିସନ କରି ଦେଇ ଆସିଲ । ଦୂର ରାସ୍ତା ଯୋଗୁଁ ଦିନେ ତା ପାଇଁ ସାଇକେଲଟାଏ କିଣା ହେଇ ଆସିଲା । ଝିଅ ବାହାଘର ଲାଗି ଏଥର ତମେ ଶାଢ଼ି, ଗହଣା ସାଇତିବା ଆରମ୍ଭ କରି ଦେଲ । ଏହା ଦେଖି ମୁଁ କହୁଥିଲି ଝିଅ ମୋର ଅନେକ ପାଠ ପଢ଼ିବ । ନିଜ ଗୋଡ଼ରେ ଠିଆହେବ, ଚାକିରି କରିବ ଆଉ ତାପରେ ସେ ନିଜେ ନିଜ ପାଇଁ ରାଜକୁମାରଟେ ନେଇ ଆସିବ । ମୋ ଗେହ୍ଲୀ ଝିଅ ମୋ ସପକ୍ଷରେ ବାହାରି ତମକୁ ଖତେଇ ହେଉଥିଲା, ମମୀର ତ ଖାଲି ବାହାଘର, ବାହାଘର । ହଁ ଡାଡ଼ୀ ! ମୁଁ ଚାକିରି କରିବି । ତମ ବୁଢ଼ା ବୟସରେ ତମ ପାଖେ ପାଖେ ଥିବି । ବାହାହେବି ନାହିଁ । ତା କଥା ଶୁଣି ତମେ ଚିଡ଼ି ଯାଇ ଗୋଡ଼ କଚାଡ଼ି ରୋଷେଇ ଘରକୁ ପଶି ଯାଉଥିଲ ଆଉ ବାପଝିଅ ଦୁହେଁ ଆମେ ହସି ହସି ଗଡ଼ି ଯାଉଥିଲୁ । ଅଫିସ୍‌ରେ ଫୋନ୍ ପାଇ ମୁଁ ପାଗଳ ଭଳି ଘଟଣାସ୍ଥଳକୁ ଧାଇଁଥିଲି । ମିଲନକୁ ଚିହ୍ନି ହେଉ ନଥିଲା । ରାସ୍ତାକଡ଼ରେ ସାଇକେଲଟା ପେଟେଇ ପଡ଼ିଥିଲା । ତାର ସାଲଓ୍ୱାର ପଞ୍ଜାବୀ ଫାଟି ଯାଇଥିଲା । ରକ୍ତ ଆଉ ରାମ୍ପୁଡ଼ା ଦାଗରେ ମୁହଁ ବିକୃତ ହେଇ ଯାଇଥିଲା । ପାଟିରୁ ଫେଣ ବାହାରି ଶୁଖି ଯାଇଥିଲା । ତା ବାନ୍ଧବୀଠୁ ଶୁଣି ମୁଁ ସ୍ତବ୍ଧ ହେଇ ଯାଇଥିଲି । ଦୁହେଁ କଲେଜରୁ ଫେରିଲା ବେଳେ କେତେଜଣ ଘେରି ଯାଇଥିଲେ ନିର୍ଜନ ବାଟ ଦେଖି । ଏ ସାଙ୍ଗଟି ଖସି ଆସିଥିଲା ଆଉ ମିଲନ....

ତମେ ପଥର ପାଲଟି ଯାଇଥିଲ । ମିଲନର ପୋଷ୍ଟମର୍ଟମ ପରେ ନିଜେ ତା ମୁହଁରେ ନିଆଁ ଦେଇଥିଲ । ଦେଖୁ ଦେଖୁ ପାଉଁଶ ହେଇଗଲା ଝିଅ ଆମର । ତା ସହିତ ତମର

ଶାଢ଼ି ଗହଣା ସାଇତା, ଝିଅ ବାହାଘର, ମିଲନର ଆମ ବୁଢ଼ା ବୟସରେ ସାହାରା ହେବାର ପ୍ରତିଶ୍ରୁତି ଆଉ ସବୁ ଭାବପ୍ରବଣତା ବି ପୋଡ଼ି ପାଉଁଶ ହେଇଗଲା ।

ତାପରେ କୋର୍ଟ ଦଉଡ଼ିବାର ପାଳି । ମିଳନର ସାଙ୍ଗ ଯେଉଁମାନଙ୍କୁ ଦେଖିଥିଲା ସମସ୍ତେ ବନ୍ଧା ହେଇ ଜାମିନରେ ଆସିଲେ । ଚାଲିଲା ଦୀର୍ଘଦିନ ଧରି ବିଚାର । ନ୍ୟାୟ ପାଇବା ପାଇଁ ଝିଅ ଲାଗି ରଖାଯାଇଥିବା ଶାଢ଼ି, ଗହଣା ବିକ୍ରି ହୋଇଗଲା । ବାରମ୍ବାର ଆମେ କୋର୍ଟ ଧାଇଁଲୁ । ଓକିଲ ହାତରେ ସଞ୍ଚିତ ଅର୍ଥ ଟେକି ଦେଲୁ । ଶେଷରେ ରାୟ ଶୁଣାଇ ଦିଆଗଲା, ପ୍ରମାଣ ଅଭାବରୁ କେସ୍‌ଟି ବରଖାସ୍ତ ହେଇଗଲା । ଦୋଷୀମାନେ ନିର୍ଦ୍ଦୋଷରେ ଖସିଗଲେ ।

ସେଦିନ ମୁଁ ଖୁବ୍ ଭାଙ୍ଗି ପଡ଼ିଥିଲି । ମିଲନର ମୃତ୍ୟୁକୁ ଯେମିତି ସହି ନେଇ ଥିଲି କୋର୍ଟର ରାୟକୁ ସେମିତି ପାରିନଥିଲି । ସର୍ବସ୍ୱାନ୍ତ ହେଇବି ନ୍ୟାୟ ଲାଗି ମୋର ଆଶା ଥିଲା, ଆଇନ୍ ଉପରେ ବିଶ୍ୱାସ ଥିଲା । ମୁଁ ଜାଣିଥିଲି ମିଲନ ଆଉ କେବେ ଫେରିବ ନାହିଁ । କିନ୍ତୁ ଆଉ କିଛି ମିଲନ ରକ୍ଷା ପାଇବେ । ଆଇନ୍ ପ୍ରତି ସେମାନଙ୍କର ଭୟ ରହିବ । ଥରେ ନାରୀମାଂସ ଚାଖିଥିବା ଲମ୍ପଟମାନେ ନିର୍ଦ୍ଦୋଷରେ ଖଲାସ ହେଇଗଲାପରେ ପୁଣି ସେମାନଙ୍କର ହିଂସ୍ରତା ବଢ଼ିଯିବ । ହେଲେ ସେତକ ବି ହେଇ ପାରିଲା ନାହିଁ । ମୁଁ ମୁଣ୍ଡରେ ହାତ ଦେଇ ସେଦିନ ପିଲାଙ୍କ ଭଳି କାନ୍ଦିଥିଲି ।

ଆଶ୍ଚର୍ଯ୍ୟ, ତମ ଭିତରେ ଏତେ ଧୈର୍ଯ୍ୟ କେମିତି ସେଦିନ ଆସିଥିଲା । ମୋତେ ବୁଝାଇ ଚାଲିଥିଲ, ଅବିନାଶ ! ଏତେ ଶୀଘ୍ର ନିଜ ପାଖରେ ହାରି ଯାଅନା । ଆମକୁ ତଥାପି ସଂଗ୍ରାମ କରିବାକୁ ହେବ । ଏମିତି ଟିକିଏ କଥାରେ ନିଜ ଉପରୁ ଆସ୍ଥା ହରାଇଲେ ଆଗାମୀ କାଲିର ମିଲନମାନଙ୍କୁ ତାଙ୍କ ବାପାମା ରକ୍ଷା କରିବେ କେମିତି ? ସେମାନଙ୍କୁ ତ ଆଉ ଘର ଭିତରେ ବନ୍ଦ କରି ରଖି ହେବ ନାହିଁ । ସେମାନେ ତଥାପି କଲେଜ ଯିବେ, ସାଇକେଲ, ଲୁନାରେ ବିଭିନ୍ନ ଦୂରବାଟକୁ ଅତିକ୍ରମ କରିବେ । ସେମାନଙ୍କୁ ନାଚ ପାଇଁ, ଟିୟୁସନ ପାଇଁ, ଡ଼ିବେଟ, ଚିତ୍ର ଆଙ୍କିବା ପାଇଁ, ଚାକିରି କରିବା ପାଇଁ ଏକୁଟିଆ ଛାଡ଼ିବାକୁ ପଡ଼ିବ । ପରିସ୍ଥିତିର, ସମସ୍ୟାର ସାମ୍ନା କରିବାକୁ ହେବ । ଦେଖୁ ଦେଖୁ ଦିନ ପୁରୁଣା ହେଇଗଲା ।

ଫେର୍ ତମେ ମୋ ସନ୍ତାନର ମା ହେବାକୁ ଯାଉଛ ବୋଲି ଡାକ୍ତର ଘୋଷଣା କଲେ । ପୁଣି ଆମେ ପଛଦିନକୁ ଭୁଲି କିଛି ସ୍ୱପ୍ନ ବୁଣିଲୁ, କିଛି ଆଶା ସାଇତିଲୁ ଆଉ ଆଶ୍ଚର୍ଯ୍ୟ ହେଲୁ କେତେ ଶୀଘ୍ର ମଣିଷ ପଛଦିନକୁ ପାଶୋରି ପକାଏ ବୋଲି ।

ପୁଣି ଦିନେ ତମକୁ ଡ଼ାକ୍ତରଖାନା ନିଆଗଲା । କୁଆଁରବରେ ତମ କୋଳ ପୂର୍ଣ୍ଣ ହେଲା । କଣ ହେଇଛି ବୋଲି ଅତି ବ୍ୟାକୁଳ ଭାବରେ ତମେ ପଚାରିଥିଲ । ନର୍ସଠାରୁ

ଝିଅ ବୋଲି ଶୁଣି ଚିତ୍କାର କରି ତମେ ବେହୋସ ହେଇଗଲ । ଆଉ ସେହି ରାତିରେ ହିଁ ତମେ ଝିଅର ଗଳାକୁ ଚିପିବାକୁ ବସିଥିଲ । ଡାକ୍ତର, ନର୍ସ ଗଦା ହେଇଯାଇ ଥିଲେ । ତାହାହିଁ ଥିଲା ତମର ପ୍ରଥମ ପାଗଳାମି । ତମେ ଚିତ୍କାର କରୁ ଥିଲ, ନା ତାକୁ ମାରିଦିଅ, ଗଳା ଦବାଇ ଦିଅ । ମୁଁ ତାକୁ ମିଲନ ହେବାକୁ ଦେବି ନାହିଁ । କଲେଜରୁ ଫେରିଲାବେଳେ ରାସ୍ତାରୁ ସେମାନେ ତାକୁ ପୁଣି ଟେକିନେଇଯିବେ । ଇଜ୍ଜତ୍ ନେଇ ମାରି ଫୋପାଡ଼ି ଦେବେ ଆଉ ନିର୍ଦ୍ଦୋଷରେ ଖଲାସ ହେଇଯିବେ । ନା ନା ତା ଆଗରୁ ମୁଁ ନିଜ ହାତରେ ତାକୁ...

ବହୁକଷ୍ଟରେ ତମକୁ ଘରକୁ ଅଣା ଯାଇଥିଲା । ମୁଁ ତମକୁ ଖୁବ୍ ବୁଝାଇ ଥିଲି । କହିଥିଲି, ରୀତା ! ତମେ ମୋତେ ଥରେ ବୁଝାଇଥିଲନା ନିଜ ପାଖରେ ହାରି ନ ଯିବାକୁ । ଆମକୁ ବଞ୍ଚିଥିବା ଯାଏଁ ସଂଗ୍ରାମ କରିବାକୁ ହେବ ବୋଲି । ମନେ ପକାଅ ତ ଦେବକୀଙ୍କ କଥା । ସାତସାତଟା ପିଲାର ମରଣ ନିଜ ଆଖି ସାମ୍ନାରେ ଦେଖି ବି ଦେବକୀ ପାଗଳୀ ହେଇ ନଥିଲେ କୃଷ୍ଣ ଆସିବେ ବୋଲି ! କିଏ ଜାଣେ ହୁଏତ ଆମ ଜୀବନରେ ତାର ପୁନରାବୃତ୍ତି ହୋଇପାରେ । ରାବଣର ସଂଖ୍ୟା ବଢ଼ିଗଲେ ଯେ କୃଷ୍ଣ ଆସନ୍ତି । ତମେ ଅଧୈର୍ଯ୍ୟ ହୁଅନା, ସେହି ସୁଦିନକୁ ଅପେକ୍ଷା କର । ହେଲେ... ଲଗ୍ନା ପେଟେଇବାଠୁ ଗୁରୁଣ୍ଡିବା, ଦରୋଟି କଥା କହିବା ଆରମ୍ଭ କଲା ବେଳକୁ ପୁରୁଣାଦିନର ପ୍ରଥମ ଝିଅର ପ୍ରତିଛବି ତା ଭିତରେ ଦେଖି ତମର ପ୍ରଳାପ ଆହୁରି ବଢ଼ିଯାଇଥିଲା । ଧୀରେ ଧୀରେ ମିଲନର ସମସ୍ତ ଫୋଟ ନଷ୍ଟ କରି ଦିଆଗଲା । ବହିପତ୍ର, ଡ୍ରେସ ସବୁ ଦେଇ ଦିଆଗଲା । ତଥାପି କିଛି ଲାଭ ହେଲାନାହିଁ । ମିଲନର ପ୍ରତିଟି ପିଲାଦିନର ଅଙ୍ଗଭଙ୍ଗୀକୁ ନେଇ ଆସିଥିଲା ଲଗ୍ନା ।

ପରିସ୍ଥିତି ଅସମ୍ଭାଳ ହେଲାପରେ ଦିନେ ତମକୁ ଏଇ ମେଣ୍ଟାଲ ହସପିଟାଲକୁ ଅଣାଗଲା । ଚିକିତ୍ସା ଚାଲିଲା । ସାଇକ୍ରିଆଷ୍ଟିକ୍‌ମାନେ ବିଭିନ୍ନ ସମୟରେ ବିଭିନ୍ନ ପରାମର୍ଶ ଦେଲେ । ପାଣି ସୁଅଭଳି ଖର୍ଚ୍ଚ ହେଇଗଲା ସମସ୍ତ ସଞ୍ଚିତ ଅର୍ଥ ଆଉ ଆମ ଜୀବନର ସୁବର୍ଣ୍ଣ ବୟସ । ତାରି ଭିତରେ ପଳାଇ ଗଲା ଦଶ ବର୍ଷ । ଦଶବର୍ଷ ତଳେ ତମକୁ ଯେମିତି ଭାବରେ ଏଠି ଛାଡ଼ି ଦେଇ ଯାଇଥିଲି ଦଶବର୍ଷ ପରେ ବି ତମେ ସେମିତି ଅଛ । କିଛି ପରିବର୍ତ୍ତନ ହେଲନାହିଁ । ଦଶବର୍ଷ ତଳେ ତମକୁ ହରାଇଥିଲି, ପନ୍ଦର ବର୍ଷ ତଳେ ମିଲନକୁ । ହରାଇ ହରାଇ ବୁଢ଼ା ହେଇଗଲି । ରୀତା ! ଆଜି ମୋ ପାଖରେ କେବଳ ଅଛି ବାରବର୍ଷର ଲଗ୍ନା । ମୁଁ କିନ୍ତୁ ତାକୁ ଦେଖି ଅଜାଣତରେ ଚମକି ଉଠୁଛି । ଆଉ କେତୋଟା ବର୍ଷପରେ ସେ କଲେଜ ଯିବ । ଆଉ ତମ ଅନୁମାନ ଯଦି ସତ ହେଇଯାଏ.... । ତାହାଲେ ମୋତେବି କଣ ଦିନେ ଏଇ ପାଗଳଖାନାକୁ ଆସିବାକୁ ପଡ଼ିବ ?

ଲଗ୍ନା ମୋ ଆଖିର ପାଣିକୁ ପୋଛି ଦେଉଛି । କହୁଛି, ଡାଡ଼ୀ, ମମୀ ନିଶ୍ଚେ ଭଲ

ହେଇଯିବେ । ପ୍ଲିଜ୍ କାନ୍ଦନା । ତମେ ଯଦି ପିଲାଭଳି କାନ୍ଦିବ ତାହାଲେ ମୁଁ କଣ କରିବି ଡ଼ାଡୀ ?

ରୀତା ! ମୁଁ ମୋର ବାରବର୍ଷର ଝିଅକୁ ନିର୍ବୋଧ ଭାବେ ଅନାଉଛି । ସେ ଅବା କେମିତି ବୁଝିବ ଏ ଆଖି ପାଣିର କାରଣ ସେ ନିଜେ । କୁହତ, ତାକୁ କେମିତି ବୁଝାଇ ହେବ ?



# ଯାତ୍ରାର ଶେଷ ପାଦ

କେତେ ଶୀଘ୍ର ଲିଭିଗଲା ଦୀପଟିଏ !

ଜଳାଇବାକୁ ସିନା କଷ୍ଟ, ଲିଭିବାକୁ ତ ମୁହୂର୍ତ୍ତେ ଲୋଡ଼ା ।

ଆମେ ସମସ୍ତେ ତା ଖଟ ଚାରିପଟେ ଚୁପ୍‌ଚାପ ବସିଥିଲୁ । କାହାରି ତୁଣ୍ଡରେ ଭାଷା ନଥିଲା । ଶବ୍ଦ ସବୁ ସତେକି ହଜି ଯାଇଥିଲେ । ଅନ୍ୟଦିନ ହୋଇଥିଲେ ଏଇ ଘରେ ପାଟିତୁଣ୍ଡ ଅସମ୍ଭାଳ ହୋଇଥାନ୍ତା । ଆମ ହଷ୍ଟେଲର ସୁପରିଟେଣ୍ଡେଣ୍ଟ ତାଙ୍କ ରୁମ୍‌ରୁ ଧାଇଁ ଆସି ପାଟି କରନ୍ତେ, ତମର କଣ ପାଠଶାଠ ନାହିଁ ? ଏଇଥିପାଇଁ ତମକୁ ବାପା ମା' ହଷ୍ଟେଲରେ ଛାଡ଼ିଛନ୍ତି ? ପାଠ ପଢ଼ିବା ଲାଗି ଇଚ୍ଛା ନାହିଁତ ଘୁଷୁରି ଚରେଇବ ଯାଅ । ସାର୍ ଗଲାପରେ ଆମେ ତାଙ୍କ ଚାଲିଚଲଣକୁ ଅନୁସରଣ କରି ଖତେଇ ହେଇଥାନ୍ତୁ ।

ଏଇ ରୁମ୍‌ରେ ମୁଁ, ଉମା, ଶଶୀ, ରଘୁ, ଅକ୍ଷୟ ରହୁ । ପାଞ୍ଚ ଜଣିଆ ସିଟ୍ ଗୋଟେ ରୁମ୍‌ରେ । ଆମ ପାଞ୍ଚଜଣ ବନ୍ଧୁଙ୍କ ଭିତରେ କିନ୍ତୁ ଅଭେଦ ପ୍ରୀତି । ପାଞ୍ଚ ଆତ୍ମା ଆସିଲେ ହେଁ ଏଇ ଗୋଟିଏ ରୁମ୍‌ର ଛାତତଳେ ଆମେ ଏକାତ୍ମା ହେଇଯାଉ । କେତେ ଭଲମନ୍ଦର ଦିନର ସାକ୍ଷୀ ଏ ରୁମ୍‌ଟି । କେତେବେଳେ କିଏ କାହା ସାର୍ଟ ଗଳାଇ କଲେଜ ପଳାଇଲାଣି ତ କିଏ କାହା ଚପଲ ପିନ୍ଧି । କିଏ କାହା ବିଛଣାରେ ଶୋଇଲାଣି ତ, କାହାଘରୁ କ'ଣ ଆସିଲ । ଯଦି ଘରୁ ଆସିଥିବା ପିଲାଟା ରେଡ଼ିଓ ବଜାଇଲାଣି ତ କିଏ ଭାଓଲିନ୍ । କିଏ ଶୋଇ ପଡ଼ିଲାବେଳେ ଅନ୍ୟ ଜଣେ ତା ମୁହଁରେ ଚିତ୍ର ଆଙ୍କି ବସିଲାଣିତ କିଏ କାହା ଉପରେ ପାଣି ଢ଼ାଳିଦେଲାଣି । ଆମ ଭିତରୁ ଜଣେ କେହି ଘରକୁ ଗଲେ ଅନ୍ୟ ଚାରିଜଣଙ୍କୁ ଖାଲିପଣ ଘେରାଇ ଯାଏ । କ୍ୟାଣ୍ଟିନ୍ ଦେଖ, ସିନେମାହଲ ଦେଖ ସବୁଠି ପାଞ୍ଚଜଣ । କେହି ଟେବୁଲ ବାଡ଼େଇ ଗୀତ ଗାଇଲାଣିତ କିଏ କାହା ପ୍ରେମିକାକୁ ନେଇ ଥଟ୍ଟା କଲାଣି । ଏମିତି ଖୁସୀଖୁସୀରେ ଗଡ଼ିଯାଏ ଦିନ, ମାସ, ବର୍ଷ । କିନ୍ତୁ.... ହଠାତ୍ ସେଇ ସା-ରେ-ଗା-ର ସ୍ୱର ଭଙ୍ଗ ହେଇଯିବ କିଏ ଜାଣିଥିଲା ?

କଣ ବା ହେଇଥିଲା ଉମାର ? ତିନି ଚାରିଦିନ ଜ୍ୱର । ଥଣ୍ଡାଜ୍ୱର । ମେଡ଼ିସିନ ଖାଉଥିଲା । ଜଣାପଡ଼ିଲା ଜଣ୍ଡିସ୍ ବୋଲି । ସକାଳ ପାହି ଥିଲେ ଆମେ ତାକୁ ଡାକ୍ତରଖାନା ନେଇ ଯାଇଥାନ୍ତୁ । ଜଣେ କିଏ ତା ଗାଁକୁ ଯାଇଥାନ୍ତା । କିନ୍ତୁ ସକାଳକୁ ସେ ଅବା ଅପେକ୍ଷା କାହିଁକି କରନ୍ତା ? ଚାଲିଗଲା ଜୀବନର ସବୁ ସୁନେଲି ସକାଳକୁ ଉପେକ୍ଷା କରି ।

ତାର ନିସ୍ତେଜ ଶରୀର ପାଖରେ ଆମେ ଚାରିଜଣ ବସିଥିଲୁ । ଆଖିର ଲୁହ ବାଧା

ମାନୁନଥିଲା । ହଷ୍ଟେଲର ସବୁ ପିଲା ଗଦେଇ ପଡ଼ିଥିଲେ । ବହୁଦିନ ହେଲା ଘର ଛାଡ଼ି ଏତେଦୂରରେ ରହି ଥିଲେବି ଆଜିଭଳି ଆମେ ଏତେ କେହି ଅସହାୟ ଅନୁଭବ କରି ନଥିଲୁ । ନିଜ ପରିଚିତ ଦୁନିଆ ଭିତରୁ ଜଣେ ଚାଲିଗଲେ ଅସହାୟତା, ଖାଲିପଣ ଏତେ ବାଧେ ?

ସୁପରିଟେଣ୍ଡେଣ୍ଟ ଦେଖି ଯାଇଥିଲେ । ହଠାତ୍ ସେହିଦିନ ଡାକ୍ତରଖାନାକୁ ନେଇଯିବାର ବୁଦ୍ଧିଟା ତାଙ୍କର କି ଆମର କାହାରି ମୁଣ୍ଡରେ ଜୁଟି ନଥିଲା । ଆମେ କେହି ଭାବି ନଥିଲୁ ଉମା ଏତେ ସିରିୟସ ବୋଲି । ରାତିରେ ତାର ଗୋଡ଼ହାତ ଥଣ୍ଡା ହେଇ ଆସିଥିଲା । କେମିତି ଏ ବିକଟାଳ ଚିତ୍କାରରେ ଆମେ ଚାରିଜଣ ଚମକି ଉଠିଥିଲୁ । ଜଣେ ସାରଙ୍କୁ ଉଠାଇବାକୁ ଗଲାବେଳେ ଆଉ ତିନିଜଣ ତାର ଗୋଡ଼ ଆଉଁସିବା, ଗ୍ଲୁକୋଜ ପାଣି ଦେବା, ମୁଣ୍ଡ ଚିପିବାରେ ଲାଗିଥିଲେ । ହିକ୍କା ଥରେ ଉଠାଇ ଥିଲା । ଦ୍ୱିତୀୟଥର ବେଳକୁ ହଠାତ୍ ବିଜୁଳି ଚାଲିଗଲା । ଫ୍ୟାନ୍ ଆସ୍ତେ ଆସ୍ତେ ଘୂରି ବନ୍ଦ ହେଇଯାଇଥିଲା । ଆମ ଭିତରୁ ଜଣେ କିଏ ଲ୍ୟାମ୍ପ ଜଳାଇବା ପାଇଁ ଡିଆସିଲି ଖୋଜି ହେଉଥିଲା । ଲ୍ୟାମ୍ପ ଜଳାଇଲା ପରେ ସେହି କ୍ଷୀଣ ଆଲୁଅରେ ତିନିଯୋଡ଼ା ଆଖି ଦେଖିଥିଲା ଉମାକୁ । ଉମା ବେକ ଭାଙ୍ଗି ଖଟର ଗୋଟିଏ କଡ଼କୁ ଢ଼ଳି ପଡ଼ିଥିଲା । ସାର ପହଁଞ୍ଚିଥିଲେ ଠିକ୍ ଦ୍ୱାର ପାଖରେ । ଆମେ କେହି ଆଖିର ପାଣିକୁ ଅଟକାଇ ପାରି ନଥିଲୁ । ତାପରେ ପ୍ରତି ରୁମ୍‌ରେ ଆମେ କବାଟ ବାଡ଼େଇଥିଲୁ ଉଠ ଉମା ଚାଲିଗଲା, ଉମା ଚାଲିଗଲା କହି । ଦେଖୁ ଦେଖୁ ହଷ୍ଟେଲ ସାରା ପିଲା ଗଦା ହେଇ ଯାଇଥିଲେ ଉମାର ଖଟ ଚାରିପଟେ । ନିଦ ମଳ ମଳ ଆଖିରେ ବିସ୍ଫାରିତ ହେଇ ସମସ୍ତେ ଦେଖୁଥିଲେ । ଉମାକୁ ନୁହେଁ, ସେମାନେ ତା ଭିତରେ ନିଜ ଶବକୁ ହିଁ ଯେମିତି ଦେଖିବାକୁ ପାଉଥିଲେ । କିଏ ଜାଣେ କାଲି ଆମ ଭିତରେ କାହାରି ଏହି ଅବସ୍ଥା ହେଇପାରେ । ଘର ଛାଡ଼ି ଏତେଦୂରକୁ ପାଠ ପଢ଼ି ଆସିଲା ବେଳେ ଆମରି ଭଳି ଆଖିଏ ସ୍ୱପ୍ନ ଥିଲା ଉମାର । ହେଲେ ସେ ସ୍ୱପ୍ନର ପରିଣତି କଣ ଏଇଯା ?

ପରେ ପ୍ରିନ୍‌ସପାଲ ଆସିଥିଲେ । ପରଲୋକଗତ ଆତ୍ମାର ଶାନ୍ତି ଲାଗି ଶୋକ ସଭାଟିଏ ହେଇଥିଲା । ସକାଳ ପର୍ଯ୍ୟନ୍ତ ଶବ ରଖା ଯାଇଥିଲା । ଘର ଲୋକଙ୍କୁ ଅପେକ୍ଷା କଲେ ମଧ ଏତେ ଦୂରକୁ ଆସି ଠିକ ସମୟରେ ପହଁଞ୍ଚି ପାରି ନଥିଲେ । କେତେ ସମୟ ବା ଶବ ବାସିହେଇ ପଡ଼ି ରହିଥାନ୍ତା । ଆମରି କାନ୍ଧରେ ଶେଷରେ ଉମାର ଯିବାର ଥିଲା । କେଉଁଠି ଜନ୍ମିଥିଲା ବିଚରା । ମଲା ଯେ ଆପଣା ଲୋକର ମୁହଁଟିକେ ଦେଖି ପାରିଲାନି, ପୋଡ଼ା ହେଲା ଯେ ତା ଶବ ଘର ଲୋକର ସ୍ପର୍ଶ ପାଇଲା ନାହିଁ । କେଉଁଠି ଜନ୍ମେ ମଣିଷ ପୁଣି କେଉଁଠି ମରେ । କେଡ଼େ ଅଜବ ଜୀବନ । କେଡ଼େ ବିଚିତ୍ର ତାର ଗତି ।

ଖାଇ ବିଞ୍ଚି ବିଞ୍ଚି ମାଲଭାଇର ଚିରାଚରିତ ଡ଼ାକରା ଭିତରେ ତାକୁ ବୋହିନେଇଗଲୁ ।

ଦେଖୁ ଦେଖୁ ଆଖି ଆଗରେ ଉମା ଗଦାଏ ପାଉଁଶ ହେଇଗଲା । ଗତକାଲି ଯିଏ ଆମ ସହ ହସୁଥିଲା, ଗପୁଥିଲା, ଟେବୁଲ ବାଡ଼େଇ ଗୀତ ଗାଉଥିଲା, ତା ପ୍ରେମିକାକୁ ନେଇ ମିଠାମିଠା ସ୍ୱପ୍ନ ଦେଖୁଥିଲା, କ୍ୟାଣ୍ଟିନ୍‌ରେ ଚା ପିଉଥିଲା ଆଜି ସେ ମୁଠାଏ ପାଉଁଶ । ବିଶ୍ୱାସ ହେଉ ନଥିଲା । ହେଇଥାନ୍ତା ବା କେମିତି ।

ଉମା ଥରେ ଗପୁ ଗପୁ କହି ପକାଇଥିଲା, ସେ ଏତେ ସ୍ୱପ୍ନ ଦେଖେ ଯେ ରାତି କୁଳାଏନା । ତା ସ୍ୱପ୍ନରେ ଆସନ୍ତି ତାର ରୋଗଣା ବାପା, ଅକାଳ ବାର୍ଦ୍ଧକ୍ୟ ଗ୍ରାସ କରିଥିବା ମା' ଆଉ ପାରାଲିସିସ୍‌ଗ୍ରସ୍ତ ଜେଜେ ବାପା । ପୁଣି ସ୍ୱପ୍ନରେ ଆସନ୍ତି ଛୋଟ ଭାଇ ଭଉଣୀ, ମାଟି ପିଣ୍ଡା ଉପରେ ଶୋଇ ରହୁଥିବା ପୋଷାକୁକୁର ଆଉ.. ଗାଁରେ ତା' ହାତ ସହିତ ହାତ ଛନ୍ଦି ତା ପାଦ ସହିତ ପାଦ ମିଳାଇ ସାରାଜୀବନ ଚାଲିବା ପାଇଁ ଚାହିଁ ବସିଥିବା ଗୋପପୁରର ରାଧା । ହେଲେ କେତେ ଶୀଘ୍ର ଉମାର ସ୍ୱପ୍ନ ମିଛ ହୋଇଗଲା ! ଉମା କଣ ଜାଣିନଥିଲା ମଣିଷର ସବୁ ସ୍ୱପ୍ନ ଲାଗି ରାତି ନ ଥାଏ ବା ରାତିର ଇମ୍ଫ କୁଳାଏନା ବୋଲି ? ଉମା କଣ ଜାଣି ନଥିଲା ରାଧାର ଜନ୍ମ କେବଳ କୃଷ୍ଣକୁ ଅପେକ୍ଷା କରି କରି ନିଃଶେଷ ହେଇଯିବା ? ପାଠ ପଢ଼ି ଚାକିରି କରିବ, ଜମି ମୁକୁଳାଇ ଆଣିବ, ବହୁ ଯାନି ଯୌତୁକ ଦେଇ ଏକମାତ୍ର ଭଉଣୀକୁ ବାହା କରିବ ଏମିତି ସ୍ୱପ୍ନ ଗୁଡ଼ିକ ତାର ଆକାଶ ଛୁଇଁଥିଲା । କିନ୍ତୁ ଅତି ଉପରକୁ ଗୁଡ଼ି ଉଠିଗଲେ ସୂତା ଯେ କଟିଯାଏ ଏକଥା କଣ ଜାଣି ନଥିଲା ଉମା ?

ତାପରେ ପୁଣି ଆସିଲା ରାତି । ଯେ ଯାହାର ରୁମ୍‌ରେ ଶୋଇପଡ଼ିଲେ ହାଲିଆ ହେଇ । ଆମ ଚାରିଜଣଙ୍କ ଆଖିରେ ନିଦ ନଥିଲା । ପାଞ୍ଚଟି ଖଟ ଭିତରୁ ଗୋଟିଏ ଖଟ ନଥିଲା । ସେହି ଖାଲି ଜାଗାଟାକୁ ଅନାଇ ଦେଲାପରେ ଆମେ ପରସ୍ପରକୁ ଚାହୁଁଥିଲୁ । ତଥାପି ର୍‍ୟାକ୍‌ରେ ଝୁଲୁଥିଲା ତାର ସାର୍ଟ ପ୍ୟାଣ୍ଟ, ଟେବୁଲ ସଜଡ଼ା ହେଇ ରହିଥିଲା ବହି, ଟେବୁଲ ଘଣ୍ଟା, କାନ୍ଥରେ ଲଗା ଯାଇଥିଲା ରୁଟିନ୍ । ଉପରେ ଗୋଲଗୋଲ ଅକ୍ଷରରେ ଲେଖା ଯାଇଥିଲା ଶ୍ରୀମାନ ଉମା । ଟେବୁଲଘଣ୍ଟାରେ ଚାବି ଦିଆ ଯାଇନଥିବାରୁ ସେଟା ବନ୍ଦ ହେଇ ଯାଇଥିଲା । ଆଲାରାମ ଦେଇ ଭୋର ପାଞ୍ଚଟାରେ ଆମର ନିଦ ଭାଙ୍ଗି ଦେଇଥିଲା ଉମା । ଅନେକ ଥର ବିରକ୍ତ ହେଇଛୁ ତା ଉପରେ । ସକାଳୁ ଉଠିବାଟା କୁଆଡ଼େ ତାର ଅଭ୍ୟାସ । ତେଣୁ ଚା ତିଆରି କରି ଆମକୁ ଉଠାଇ ହସି ହସି ଗରମ ଗରମ ଚା କପ୍ ବଢ଼ାଇ ଦେଉଥିଲା । ସେମିତି ପାଞ୍ଚଟି ଖାଲି କପ୍ ଥୁଆ ହେଇଛି । ଆଉ କିଏ ସକାଳୁ ଉଠି ଚା ପରଷିବ ? କିଏ ଆଲାରାମ ଦେଇ ଆମକୁ ଉଠାଇବ । ସବୁଜିନିଷର ଅବର୍ତ୍ତମାନରେ ତାର ମୂଲ୍ୟ ଏତେ ପରିମାଣରେ ବଢ଼ିଯାଏ ?

ତା ପରଦିନ ନିତିଦିନିଆ ସକାଳଟେ ବିଛାଡ଼ି ପଡ଼ିଥିଲା । ସୁନେଲି ସୁନେଲି ଖରା

ଆମ ମୁହଁ ଉପରେ ପଡ଼ିବାରୁ ନିଦ ଭାଙ୍ଗି ଯାଇଥିଲା । ଏତେବେଳ ପର୍ଯ୍ୟନ୍ତ ଆମେ କେବେ ଶୋଉ ନଥିଲୁ । ଉଠାଇବାକୁ କେହି ନ ଥିଲେ ।

ବେ ଉମା... ଚା କାହିଁ, ଏକାଏକା ପିଇଦେଲୁ କହି... ସଚେତନ ହେଇ ଅକ୍ଷୟ ଅଟକି ଗଲା । ଚମକି ପଡ଼ି ଆମେ ତାକୁ ଚାହିଁ ରହିଥିଲୁ ।

ଖାଲି କପ୍‌ଗୁଡ଼ିକ ଆମକୁ ଚାହିଁ ହସୁଥିଲେ ।

ପୁଣି ଦିନେ ଆଉଗୋଟେ ଖଟ ଆସି ସେହି ଖାଲି ସ୍ଥାନରେ ପଡ଼ିଲା ।

ଆମେ ଭାବୁଥିଲୁ; କିଏ ଆସିବ ତୁମକୁ ଉମା ସାଜିବାକୁ ?



# ସଂସାରୀ

ଯେଉଁ ଦିନ ମୀତା ବାହା ହୋଇଗଲା ସେଦିନ ସତରେ ମୁଁ ଭାଙ୍ଗି ପଡ଼ିଲି । ବର୍ଷ ବର୍ଷ ଧରି ଯେଉଁ ସ୍ୱପ୍ନ ସବୁ ମୁଁ ମୋର ଭାବପ୍ରବଣତାର ଇଲାକା ଭିତରେ ସାଇତି ରଖିଥିଲି ସେସବୁ ଟୁକୁରା ହୋଇଯିବା ଦେଖି ମୁଁ ସହିପାରିଲିନି । ସବୁ ହରାଇଦେବାର ଗ୍ଲାନିବୋଧ ମୋତେ ଏମିତି କରିଦେଲା ଯେ ବଞ୍ଚିବା ପ୍ରତି ବିତୃଷ୍ଣା ଆସିଗଲା । ସେଥିପାଇଁ ଆତ୍ମହତ୍ୟାର ନିଷ୍ପତ୍ତି ନେଇ ଯେଉଁଦିନ ମୁଁ ସ୍ଲିପିଙ୍ଗ ଟ୍ୟାବଲେଟ୍ ଖାଇ ଶୋଇ ପଡ଼ିବାର ଯୋଜନା କଲି ସେଦିନ ମୋ ବନ୍ଧୁ ଦୀପୁ ଆସି ମୋର ବୋକାମି ଲାଗି ବହେ ହସିଲା । ନିଦ ବଟିକା ଗୁଡ଼ିକୁ ଝରକା ଦେଇ ଫିଙ୍ଗୁ ଫିଙ୍ଗୁ କହିଲା, ଚିନୁ ! ତୁ ମରିଗଲେ ତୋ ପାଇଁ ସଭାସମିତି ହେବ ଅଥବା ରେଡ଼ିଓ, ସମ୍ବାଦପତ୍ରରେ ଶୋକ ଖବର କେତେ ଦିନ ଧରି ପ୍ରଚାରିତ ହେବ କିମ୍ବା ମୀତା ଆସି ତୋତେ ସମାଧିରେ ଅଞ୍ଜୁଳା ଭରି ଫୁଲ ଚଢ଼ାଇବ ତାହା ନୁହେଁ । ସାମାନ୍ୟ ପ୍ରେମପାଇଁ କଣ ମଉସା ତୋତେ ଜମି ବିକି, ଏତେ ଆଶା କରି ପଢ଼ାଉଛନ୍ତି ? ଏଇଥିପାଇଁ କଣ ମାଉସୀ କୋଳେଇ କାଖେଇ ତୋତେ ବଡ଼ କରିଛନ୍ତି ? ତୁ ମୀତାକୁ ଅଳ୍ପ ଦିନ ଭିତରେ ଏତେ ଚିହ୍ନି ପାରିଲୁ ଅଥଚ ତୋ ବାପା, ମା' ଯେଉଁମାନେ ଝାଳ ସରସର ହୋଇ ତୋର ଗୁହମୂତ ପୋଛିଛନ୍ତି, ସେମାନଙ୍କୁ କ'ଣ ଥରେ ହେଲେ ଚିହ୍ନି ପାରିଲୁନି ଚିନୁ ? ମାଉସୀ ସଞ୍ଜବତୀ ଜାଳିଲା ବେଳେ ହୁଏତ ଅପେକ୍ଷା କରିଥିବେ ଗୋଟାଏ ଲାଜକୁଳୀ ବୋହୂର ରୁଣୁଝୁଣୁ କାଚର ଶବ୍ଦ ପାଇଁ ମଉସା ଆଳିବି ବିଲରେ ମାଟି ହାଣୁ ହାଣୁ କେତେ କଣ ସ୍ୱପ୍ନ ଦେଖୁଥିବେ । ଆଉ ତୁ ତୋ ପ୍ରେମିକା ପାଇଁ ନିଜ ସହିତ ଏତେ ଜଣଙ୍କୁ ମାରି ଦେବାକୁ ଚାହୁଁଛୁ ?

ମୁଁ ଦୀପୁର ହାତଟାକୁ ଧରିପକାଇ କହିଲି, ଦୀପୁ ! ବିଶ୍ୱାସ କର, ଏହି ବ୍ୟର୍ଥତା ନେଇ ତିଳ ତିଳ ମୁଁ ଯେମିତି ମରି ଯାଉଛି । ଆଦୌ ଭଲ ଲାଗୁନି । ମୋତେ ଟିକେ ବୁଝିବାକୁ ଚେଷ୍ଟାକର ।

ମୋ କଥା ଶୁଣି ପୁଣିଥରେ ଦୀପୁ ହସିହସି ଗଡ଼ିଗଲା । ତାପରେ କହିଲା, ତୁ ନା' ଚିନୁ ! ମୀତାକୁ ନେଇ ଏଇ ସେଦିନ ଏତେ ସବୁ କଳ୍ପନା କରୁଥିଲୁ । ଅଧିକ ଦିନ ବଞ୍ଚି ରହିବାର ସ୍ୱପ୍ନ ଦେଖୁଥିଲୁ । ଆଜି ମୀତା ଚାଲିଗଲା ପରେ ତୋ ଆଖିରୁ ଏତେ ଶୀଘ୍ର ସେହି ବଞ୍ଚିବାର ଭଙ୍ଗୀ ଛାଡ଼ିଗଲା ? ମୀତା ଛଡ଼ା ତୁ ଆଉ କଣ କାହାରିକୁ ଆପଣାର ଭାବି ପାରିଲୁନି ? ଏତେଦିନ ଧରି ସ୍ନେହ କରି ଆସିଥିବା ମଉସା ମାଉସୀ ବି ତୋର ଆପଣାର ମନେ ହେଲେନି ? ପ୍ରେମକୁ ଛାଡ଼ିଦେଲେ ଜୀବନରେ କଣ ଆଉ କିଛି ହେଲେ

ନାହିଁ ?

ଦୀପୁର ପ୍ରଶ୍ନ ପାଖରେ ମୁଁ ମୂକ ପାଲଟି ଗଲି । ପ୍ରତିବାଦ କରିପାରିଲିନି । ଦୀପୁ ମୋ ନୀରବତା ଦେଖି ଭାଷଣ ଆରମ୍ଭ କରିଦେଲା, ଚିନ୍ନୁ ! ଥରଟିଏ ତୁ ତୋ ବୁଢ଼ା ବାପାଙ୍କର ଅବସ୍ଥା, ଭବିଷ୍ୟତ କଥା ଭାବିଲୁ ? ତୁ ଯାହାକୁ ଯନ୍ତ୍ରଣା ବୋଲି କହୁଛୁ, ସେଇଟା ଆଦୌ ଯନ୍ତ୍ରଣା ନୁହେଁ । ପ୍ରେମ କରି ଧୋକ୍‌କା ଖାଇବାଟା କେବଳ ଜୀବନର ସବୁତକ ବ୍ୟର୍ଥତା ନୁହେଁ । ତୁ ହୁଏତ ଜାଣୁନା, ଜୀବନର ସବୁ ବ୍ୟର୍ଥତା ସତ୍ତ୍ୱେ କେମିତି ପାଦ ଘୋଷାରି ଘୋଷାରି କ୍ଳାନ୍ତ ହୋଇଥିବା ମଣିଷକୁ ବଞ୍ଚିବାକୁ ପଡ଼େ । ଆଉ ଗୋଟାଏ ଆଶାରେ କାଲି ପାଇଁ ତାକୁ ମରଣ ଶେଯରେ ବି ଅପେକ୍ଷା କରିବାକୁ ପଡ଼େ ।

ମୁଁ ଆତ୍ମହତ୍ୟା ତ କରିପାରିଲିନି, ତା'ଛଡ଼ା ମୀତାକୁ ବି ଆଦୌ ଭୁଲି ପାରିଲିନି, ପ୍ରତି ମୁହୂର୍ତ୍ତରେ ସବୁ ହଜିଯିବାର ଗ୍ଳାନି ମୋତେ ଦୁର୍ବଳ କରିଦେଲା । ସେଥିପାଇଁ ଦୀପୁ ପରାମର୍ଶ ଦେଲା ପୂଜା ଛୁଟିରେ ତା' ଗାଁଆଡ଼େ ବୁଲି ଆସିବାକୁ । ଅନ୍ତତଃ ମନଟା ତ କିଛି ଦିନ ଲାଗି ଭଲ ରହିବ । ମନା କରିବାର କିଛି କାରଣ ନଥିଲା । ମୁଁ ରାଜି ହୋଇଗଲି । ଦୀପୁ ମା'ଙ୍କ ବ୍ୟବହାର ମୋର କିଛି ଦୁଃଖକୁ ଭୁଲାଇଦେଲା । ଦୀପୁ ତାଙ୍କ ପୋଖରୀ, ଆମ୍ବ ତୋଟା ବୁଲାଇ ଦେଖାଉଥିଲା । ମୋ' ନିଜ ଗାଁ କଥା ସେତେବେଳେ ଖୁବ୍ ମନେ ପଡୁଥିଲା । ସତରେ ସବୁ ଗାଁ'ଯାକ ଏକାଭଳି । ସେହି ଆମ୍ବତୋଟା ପୋଖରୀରେ ପଦ୍ମ, କଇଁଫୁଲ, ତା' ଚାରିଆଡ଼େ ଶାଗ ଓ ଶିମ୍ବ ଗଛର ବୁଦୁବୁଦିକା ଜଙ୍ଗଲ । ଦୂରରେ ମାଇଲ ମାଇଲ ଧରି ବିଲ, ତା' ପାଖକୁ ସବୁଜ ପାହାଡ଼ର ନାଲି ଧୂଳି ରାସ୍ତା ଓ ଶଗଡ଼ିଆର ପ୍ରାଣଖୋଲା ଗୀତ । ଦୀପୁ ଗାଁରେ ମୁଁ ପାଇଲି ସେହି ମିଠା ମିଠା ବହୁ ପରିଚିତ ବାସ୍ନା, ବଉଳଫୁଲ ତଳେ ବିଛି ହୋଇଯିବାର ଦୃଶ୍ୟ ।

ଦୀପୁ ମୋତେ ସାରା ଗାଁଟା ବୁଲାଇ ଦେଖାଉଥିଲା ଓ ଗାଁ ମୁଣ୍ଡରେ ସିନ୍ଦୁର ମୁଣ୍ଡି ଠାକୁରାଣୀଙ୍କ ମାହାତ୍ମ୍ୟ ବୁଝାଉଥିଲା । ଫେରିଆସିଲାବେଳେ ଗୋଟାଏ ଛୋଟ ନୂଆଣିଆ ଚାଳ ଘରଆଡ଼େ ହାତ ବଢ଼ାଇ ଦୀପୁ କହିଲା, ଚିନ୍ନୁ, ଏଠି ଯିଏ ରହନ୍ତି, ତାଙ୍କୁ ଆମେ ସମସ୍ତେ ରାଧିମାଉସୀ ବୋଲି ଡାକୁ । ରାଧିମାଉସୀ ଏକ ବିଚିତ୍ର ଚରିତ୍ର । ତାଙ୍କ କଥା ଯଦି ତୁ ଶୁଣନ୍ତୁ ପ୍ରକୃତ ବ୍ୟର୍ଥତା, ପ୍ରକୃତ ଯନ୍ତ୍ରଣା କ'ଣ, କେମିତି ସବୁ ବିପଦ ସତ୍ତ୍ୱେ ମଣିଷ ବଞ୍ଚି ରହିବାକୁ ଭଲପାଏ, ସୁଖରେ ରହିଛି ବୋଲି ଛଳନା କରେ ।

ମୁଁ ଦୀପୁ କଥା ଶୁଣୁଥିଲି । ରାଧି ମାଉସୀଙ୍କ ବିଷୟରେ ସତକୁ ସତ ମୋର କିଛି ଶୁଣିବା ଲାଗି ଆଗ୍ରହ ବଢ଼ି ଯାଉଥିଲା । ଆସୁ ଆସୁ ଏଆଡୁ ସେଆଡୁ କଥା ଭିତରେ ଦୀପୁ ରାଧି ମାଉସୀଙ୍କ କଥା କହିବାକୁ ଭୁଲି ଯାଇଥିଲା । ଖାଇସାରି ଖରାବେଳେ ଶୋଇବାକୁ ଯାଉଛୁ ଜଣେ ବିଧବା ସ୍ତ୍ରୀଲୋକ ଆସି ପିଣ୍ଡାରେ ବସି ଦୀପୁ ମା'ଙ୍କ ସହିତ ଗପ ଜମାଇ

ଦେଇଥିଲା । ଦୀପୁ ମୋତେ ଦେଖାଇ ଦେଲା, ଏଇ ରାଧି ମାଉସୀ । ସେ ହସି ହସି କ'ଣ ସବୁ କହୁଥିଲେ । ମୁଁ ବିଛଣାରେ ଶୋଉ ଶୋଉ ଦୀପୁକୁ ଚାହିଁ କହିଲି, ଡ୍ରାମା ନକରି ରାଧି ମାଉସୀଙ୍କ କଥା ସିଧା ସିଧା କହ । ଦୀପୁ ଗପ କହିଲାଭଳି ସଜାଡ଼ି ହୋଇ ବସୁ ବସୁ କହିଲା ରାଧି ମାଉସୀ ଦିନେ ହାତେ ଓଢ଼ଣା ଦେଇ, ବୋହୂ ବେଶ ହୋଇ ଏ ଗାଁକୁ ଆସିଥିଲା । ସେ ଅନେକ ବର୍ଷ ତଳର କଥା । ରଘୁ ମଉସାଙ୍କ ସହିତ ତାଙ୍କର ଛୋଟ ସଂସାର ଆରମ୍ଭ ହୋଇଥିଲା । ରଘୁ ମଉସା କ'ଣ ଏକ ସାନ ଚାକିରି କରୁଥିଲେ । ତାଙ୍କ ସଂସାରରେ ଅଭାବ, ଅନାଟନ ଲାଗି ରହିଥିଲା । ସବୁ ଅଭାବ, ଅସୁବିଧା ସତ୍ତ୍ୱେ ବି ରାଧି ମାଉସୀ ରଘୁ ମଉସାଙ୍କ ପାଇଁ ଓଠରେ ହସ ଖେଳାଉଥିଲେ । ତାଙ୍କର ଫେରିବା ବାଟକୁ ଆଖିଭରା ଅପେକ୍ଷା ନେଇ ଚାହିଁ ରହୁଥିଲେ । ରଘୁ ମଉସାଙ୍କ ସହିତ ସେ ଛଅଟି ବର୍ଷ କାଟିଥିଲେ । ଏହି ଛଅ ବର୍ଷ ଭିତରେ ରାଧି ମାଉସୀ ଗୋଟିଏ ପୁଅ ଓ ଗୋଟିଏ ଝିଅ ନେଇ ଏକ ପ୍ରକାର ଜୀବନ ଗଢ଼ାଇ ଦେଉଥିଲେ । ତାଙ୍କ ବଡ଼ପୁଅ ଥିଲା ମୋର ପିଲା ଦିନର ସାଙ୍ଗ, ଏକା ବୟସର । ତା'ପରେ ସାନ ଝିଅ ।

ଚିନୁ ! ଯେଉଁଦିନ ଏକମାତ୍ର ପୁଅ କୁନ୍‌ମୁନ୍ ରୋଗ ଶଯ୍ୟାରେ ଛଟପଟ ହେଉଥିଲା, ରାଧି ମାଉସୀ ଆଖିଭରା ଲୁହରେ ବିଛଣା ପାଖରେ ବସିଥିଲା । ଡ଼ାକ୍ତର ଲେଖି ଦେଇଥିବା ଔଷଧ ପାଇଁ ପାଖରେ ଟଙ୍କା ନଥିଲା । ସେହି ପ୍ରେସକ୍ରିପ୍‌ସନଟା ଧରି ରଘୁ ମଉସା ଥରେ କୁନ୍‌ମୁନ୍‌କୁ ଓ ଥରେ ମାଉସୀଙ୍କୁ ଦେଖୁଥିଲେ । ଦେହରେ ଟେମ୍ପରେଚର ବଢ଼ିବା ଦେଖି ସେମିତି ଔଷଧ ଚିଠାଟାକୁ ଧରି ରଘୁ ମଉସା ଘରୁ ବାହାରି ଯାଇଥିଲେ । ରୋଗଣା ପୁଅକୁ ନେଇ ଆଉ ମଉସାଙ୍କର ଔଷଧ ଧରି ଫେରିବା ବାଟକୁ ଚାହିଁ ଚାହିଁ ରାଧି ମାଉସୀଙ୍କ ଆଖିରୁ ପାଣି ମରିଗଲା । ରଘୁ ମଉସା ଆଉ ଫେରିଲେନି.... । ଚିନୁ ସେଦିନୁ ଆଜିକୁ ପ୍ରାୟ ଦୀର୍ଘ ଚଉଦ ବର୍ଷ ହେଲା ରଘୁ ମଉସାଙ୍କ ଖବର କେହିବି ଜାଣନ୍ତି ନି । ପୁଅ ପାଇଁ ଔଷଧ ଯୋଗାଡ଼ ନ କରିପାରିବାର ଅସହାୟତା ହିଁ ରଘୁ ମଉସାଙ୍କୁ ସବୁଦିନ ପାଇଁ ଘରଛଡ଼ା କରିଦେଲା... କେତେଟା ଟଙ୍କାର ଅଭାବ ହିଁ ତାଙ୍କୁ ତାଙ୍କ ସଂସାରରୁ ନିର୍ବାସିତ କରିଦେଲା ।

ଦୀପୁ ଆଉ କହିପାରିଲାନି । ମୁଁ ବିଛଣାରୁ ଏ ଭିତରେ ଉଠିପଡ଼ିଥିଲି । ଦୀପୁ ତା'ପର କଥା ସବୁକୁ ହୁଏତ ମନେ ପକାଇ ପକାଇ ଆରମ୍ଭ କରୁଥିଲା । ରଘୁ ମଉସା ଗଲାପରେ ତା'ଆରଦିନ ସକାଳେ ହିଁ କୁନ୍‌ମୁନ୍ ରାଧି ମାଉସୀଙ୍କ ସ୍ନେହ-ମମତାର ଡୋରିକୁ କାଟିଦେଇ ସବୁଦିନ ପାଇଁ ଚାଲିଗଲା । ନିଜ ହାତରେ ହିଁ କୁନ୍‌ମୁନ୍ ମୁହଁରେ ମୁଠା ମୁଠା ମାଟି ଦେଇ ରାଧି ମାଉସୀ ମଶାଣି ପଦାରେ ଶୁଆଇ ଦେଇ ଆସିଲେ । ଯେଉଁ କୁନ୍‌ମୁନ୍‌କୁ କେତେଥର କୋଳରେ ଚାପି ନିଜ ଲୁଗାରେ ତା' ମୁହଁକୁ ପୋଛି ଦେଇଛନ୍ତି, ସେହି କୁନ୍‌ମୁନ୍‌କୁ ଶେଷଥର ପାଇଁ ଗୋଟାଏ ଚୁମା ଦେଇ ସେଦିନ ରାଧି ମାଉସୀ ତା' ଉପରେ କୁଆଡ଼େ ନିଜେ ମାଟି ଚଳାଇ ଦେଇଥିଲେ । ମାଆଙ୍କଠୁ ଶୁଣିଛି ରାଧି ମାଉସୀ ଆଦୌ ମୁଣ୍ଡ ବାଡ଼େଇ

କାନ୍ଦି ନଥିଲେ କି ଗଳା ଫଟାଇ ପାଟି କରି ବି ନଥିଲେ । କେବଳ ପଥର ଭଳି କେତେ ଘଣ୍ଟା ସେମିତି ବସି ପଡ଼ିଥିଲେ । ହଲାଇଲେ କି ଡାକିଲେ ବି ଆଦୌ ଶୁଣି ନ ଥିଲେ । ତାଙ୍କର ସେହି ପଥର ଆଖିରୁ ଢଳ ଢଳ ହୋଇ ବଡ଼ ବଡ଼ ଲୁହ ଠୋପା ବାହାରିଥିଲା ସତ, ମାତ୍ର ଝରି ନଥିଲା ।

ପର ଘରେ କାମ କରି, ଦୁଇମାଣ ଜମିକୁ ସମ୍ବଳ କରି ଏକମାତ୍ର ଝିଅ ଝିଲୀକୁ ରାଧି ମାଉସୀ ବଡ଼ କରିଥିଲେ । ତା'ରି କଥା ବୁଝୁ ବୁଝୁ ପଛ ଦିନର ଦୁର୍ଘଟଣାକୁ ସେ ଯେମିତି ସଂପୂର୍ଣ୍ଣ ପାସୋରି ପକାଇ ଥିଲେ । ଝିଲୀକୁ ପାଖ ଗାଁରେ ବାହା ଦେଲାବେଳେ ସେ ସେଦିନ କୁଆଡ଼େ ଖୁବ୍ କାନ୍ଦିଥିଲେ । ଚିନୁ ! ଝିଲୀର ବାହାଘର ବର୍ଷେ ସରିଛି ନା ନାହିଁ ଝିଲୀ ବି ହଇଜାରେ ଚାଲିଗଲା... ରାଧି ମାଉସୀଙ୍କୁ ଏଡ଼େ ବଡ଼ ଦୁନିଆରେ ସଂପୂର୍ଣ୍ଣ ଏକା କରି, ଅସହାୟ କରି । ଝିଲି ମରିବାର ଖବର ପାଇ ସେଦିନ ବି ରାଧି ମାଉସୀ ଆଦୌ କାନ୍ଦି ନ ଥିଲେ । କେବଳ ପଞ୍ଜରାଥରା ଦୀର୍ଘ ନିଃଶ୍ୱାସଟିଏ ଛାଡ଼ିଥିଲେ । ଚିନୁ ! ଏଇ ଛୋଟିଆ ଜୀବନ ଭିତରେ ରାଧି ମାଉସୀ ନିଜକୁ ତିନିଥର ଶ୍ମଶାନରେ ପରିଣତ କରି ବି ବଞ୍ଚିଛନ୍ତି । ତଥାପି ସେ ଦୀର୍ଘ ଚଉଦ ବର୍ଷ ଧରି ରଘୁ ମଉସାଙ୍କ ଫେରିବା ବାଟକୁ ଚାହିଁ ରହିଛନ୍ତି । ପ୍ରତିଦିନ ସଞ୍ଜ ଦେଲାବେଳେ ତାଙ୍କର ମଙ୍ଗଳ କାମନା କରୁଛନ୍ତି; ଯେଉଁଠି ଥାଆନ୍ତୁ ଭଲରେ ଥାଆନ୍ତୁ ବୋଲି କହି ହେଉଛନ୍ତି । ଦୁଇ ଦୁଇଟା ମୃତ୍ୟୁକୁ ସ୍ୱୀକାର କରୁନାହାନ୍ତି; ଯଦିଓ ବାରବର୍ଷ ପରେ ପ୍ରଥା ଅନୁସାରେ ସେ ବିଧବା ହୋଇଛନ୍ତି । ଯେଉଁ ଦିନ ବାରବର୍ଷ ପୂରିଲା ରଘୁ ମଉସାଙ୍କ ଘର ଛାଡ଼ିବାର ସେଦିନ ସେ ନିଜେ ହାତରୁ ଶଙ୍ଖା କାଢ଼ିଦେଇ, ସିନ୍ଦୁର ପୋଛି ଦେଇ ପିଲାଙ୍କ ଭଳି କାନ୍ଦିଥିଲେ । କେହି ସାନ୍ତ୍ୱନା ଦେଇ ପାରି ନଥିଲେ । ଏସବୁ ସତ୍ତ୍ୱେ ବି ରାଧି ମାଉସୀ ଅପେକ୍ଷା କରିଛନ୍ତି, ସବୁ ହରାଇବା ସତ୍ତ୍ୱେ ବଞ୍ଚି ରହିଛନ୍ତି, କାଳେ ରଘୁ ମଉସା ହଠାତ୍ କେବେ ଫେରି ଆସିବେ, ନିଜ ହାତରେ ସେ ତାଙ୍କର ସୀମନ୍ତ ସଜାଇ ଦେବେ, ନୂଆ ଶଙ୍ଖା ପିନ୍ଧାଇ ଦେବେ ଓ ଆନନ୍ଦରେ ତାଙ୍କୁ ଆତ୍ମହରା କରିଦେବେ ।

ଏତେ ବିଦାୟ ପରେ ବି ପୁଣି ମଣିଷ ପାଇବାର ଆଶା ରଖେ ଦୀପୁ ? ମୁଁ ଭାବପ୍ରବଣ ହୋଇ ପଚାରିଦେଲି । ମୋ'ର କଥା ନ ଶୁଣିଲା ଭଳି ଦୀପୁ ସେମିତି କହି ଚାଲିଥିଲା, ଜାଣିଛୁ ନା ଚିନୁ ! ଏବେ ବି କୁନୁର ଜନ୍ମଦିନ ତିଥିରେ ମାଉସୀ ପିଠା ତିଆରି କରନ୍ତି । କୁନ୍‌ମୁନ୍‌ରେ ଖାଇବୁ ଆ' କହି ବିଛଣାରେ ତକିଆଟାକୁ ଶୁଆଇ ଡାକନ୍ତି । ଏବେ ବି ଝିଲିର ବାହାଘର ଦିନରେ ଶାଶୁଘରର ଭାର ସଜାଡ଼ିବା ପାଇଁ ରାଧି ମାଉସୀ ଉଖୁଡା, ମିଠାଇ ତିଆରି କରନ୍ତି । ଆମମାନଙ୍କୁ କୁନ୍‌ମୁନ୍‌ର ଜନ୍ମଦିନରେ, ଝିଲୀର ବାହାଘର ତିଥିରେ ଖାଇବା ପାଇଁ ଡାକନ୍ତି । ସବୁଠୁ ଆଶ୍ଚର୍ଯ୍ୟ କଥା କ'ଣ ଜାଣୁ ଚିନୁ ! ରାଧାର ସେହି ଅନନ୍ତ ପ୍ରତୀକ୍ଷା ନେଇ ନିଜ ବାହାଘରର ତାରିଖରେ ରାଧି ମାଉସୀ ନିଜକୁ ବଧୂ ବେଶରେ ସଜାନ୍ତି ।

କେଉଁ ପୁରୁଣା କାଳର ଦି'ପଟ ରୂପା ଚୁଡ଼ି ପିନ୍ଧନ୍ତି ଆଉ ପେଡ଼ି ଭିତରେ ସାଇତିଥିବା ସିନ୍ଦୂର ଫରୁଆରୁ ସିନ୍ଦୂର କାଢ଼ି ନିଜର ସାଦା ସୀମନ୍ତଟାକୁ ଭରି ଦିଅନ୍ତି । ବାହାଘରର ପୁରୁଣା ବଉଳପାଟଟାକୁ ପିନ୍ଧି ସାଇ ବୁଲିଆସନ୍ତି । ତୁ ଆଶ୍ଚର୍ଯ୍ୟ ହେବୁ ଚିନୁ, ରାଧି ମାଉସୀ ଟିକିଏ ଟିକିଏ କଥାକୁ ଭୁଲିଗଲେ ମଧ କୁନ୍‌ମୁନ୍‌ର ଜନ୍ମଦିନ, ଝିଅର ବାହାଘର ଦିନ ଏବଂ ନିଜର ଚଉଠି ତିଥିକୁ ଆଦୌ ଭୁଲି ଯା'ନ୍ତି ନାହିଁ । ପ୍ରତିବର୍ଷ ଏଇ ତିନିଟା ତାରିଖରେ ରାଧି ମାଉସୀଙ୍କ ଉଦାସ ଓଠରେ ସବୁ ହସ ଚହଟି ଉଠେ । କହନ୍ତି, ସଂସାର ଏକ ଦୁଃଖର ସମୁଦ୍ର, ପରୀକ୍ଷାରେ ସମୁଦ୍ର, ଯିଏ ସଂସାରର ସବୁ ଦୁଃଖକୁ ପିଇପାରେ, ସେ ହିଁ ବଡ଼ ସଂସାରୀ । ତେବେ ତୁ କହ ଚିନୁ ! ବ୍ୟର୍ଥତା କ'ଣ, ଯନ୍ତ୍ରଣା କ'ଣ ? ଜୀବନର ଏତେ ବ୍ୟର୍ଥତା, ଏତେ ବିଚ୍ଛେଦ ନେଇ ବି ତ ରାଧି ମାଉସୀ ବଞ୍ଚିଛନ୍ତି । ସେ ବି କ'ଣ ଆତ୍ମହତ୍ୟା କରି ପାରନ୍ତେ ନି ? ତାଙ୍କ ପାଇଁ ଝୁରିବାକୁ ବି କିଏ ଅଛି ?

ଦୀପୁ ମିଛ କହୁ ନଥିଲା । ସତେ ତ ରାଧି ମାଉସୀଙ୍କର ମାୟା-ସଂସାରରେ ସବୁ ବନ୍ଧନ ଛିଡ଼ି ଯାଇଥିଲେ ବି ଆଉ ଥରେ ମାୟା-ମୋହକୁ ସାଉଁଟି ନେବାକୁ ସେ ପ୍ରତୀକ୍ଷା କରିଛନ୍ତି । ଜୀବନର ଏତେ ତୁଚ୍ଛତା ଭିତରେ ବି ତ ସେ ହସୁଛନ୍ତି । କାଚର ଦୁନିଆରେ କାଚ-ସଂସାର ତାଙ୍କର ଚୁନା ହୋଇଗଲା ପରେ ବି ସେ ତଥାପି କାଚ ଯୋଡ଼ି ହେବାର ସ୍ୱପ୍ନ ଦେଖୁଛନ୍ତି । ରଘୁ ମଉସାଙ୍କର ଫେରିବାର କୌଣସି ସମ୍ଭାବନା ନଥିଲେ ବି, ହାତରୁ ଚୁଡ଼ି ଭାଙ୍ଗିଦେଲା ପରେ ବି ରାଧି ମାଉସୀ ତୁଳସୀ ଚଉରା ମୂଳେ ସଞ୍ଜଦୀପ ଜାଳି 'କାଚବନ୍ଧ' ହେଉ ବୋଲି ନିତି ମନାସୁଛନ୍ତି । ତଥାପି ପୁଅଝିଅଙ୍କ ବାହାନାରେ ପିଠା ତିଆରି କରୁଛନ୍ତି । ଝିଅ ପାଇଁ ବାହା ସଜ ପ୍ରସ୍ତୁତ କରୁଛନ୍ତି । ଜୀବନଟା ତା'ହେଲେ ଏକ ଖିଆଲ ନୁହେଁ, ଏକ ଛଳନା ଭିତରେ, ଅଭିନୟ ଭିତରେ ବଞ୍ଚିବାର ନବୀକରଣ । ତାରି ଭିତରେ ଯେ ନୂଆ କରି ଜୀଇଁ ଶିଖେ ସେ ହିଁ ତ ପ୍ରକୃତରେ ବଞ୍ଚିବା ଭଳି ବଞ୍ଚିପାରେ ।

ମୋତେ ହଲାଇ ଦେଇ ଦୀପୁ କହୁଥିଲା, ତେବେ ତୁ କହ ଚିନୁ, କ'ଣ ପାଇଁ ରାଧି ମାଉସୀ ମରିବାର ଶପଥ ନେଇପାରୁ ନାହାନ୍ତି ? କାହିଁକି ସେ ଏତେ ଯନ୍ତ୍ରଣା ଭିତରେ ବି କାନ୍ଦିପାରୁ ନାହାନ୍ତି ? କାହିଁକି ଦଶ ବର୍ଷ ଧରି ଏକ ମିଛ ଖେଳଘରକୁ ନେଇ ବଞ୍ଚିବା ଶିଖିଛନ୍ତି ? ଆଉ ତୁ ସାମାନ୍ୟ ପ୍ରେମିକାଟିଏ ପାଇଁ ଭାଙ୍ଗି ପଡୁଛୁ ? ଜୀବନରେ ସାଥି ଯୋଗାଡ଼ କରିବା, ସାଥି ନେଇ ବାଟ ଚାଲିବା କେବଳ ମାୟା ନୁହେଁ ତ ଆଉ କ'ଣ ?

ଝରକା ଦେଇ ମୁଁ ଉଙ୍କି ମାରିଲି । ରାଧି ମାଉସୀ ପିଣ୍ଡାରୁ ଓହ୍ଲାଇ ଚାଲି ଯାଉଛନ୍ତି । କେତେ ନୀରବ ସେ ଚାଲି ! କେତେ ଶବ୍ଦହୀନ ସେ ଗତି ! ଦୁନିଆରେ ଏ ମଣିଷଟି କେତେ ଅସହାୟ ସତେ ! ଅନେକ ସମୟ ଧରି ରାଧି ମାଉସୀଙ୍କ ଯିବା ବାଟକୁ ମୁଁ ଚାହିଁ ରହିଥିଲି । ଦୀପୁ ମୋତେ ହଲାଇ ଦେଇ କହିଲା, କ'ଣ ଦେଖୁଛୁରେ ? ଶୋଇବୁନି ? ମୁଁ ସେମିତି

ଝରକା ଦେଇ ସେ ଅଙ୍କାବଙ୍କା ନାଲି ସଡ଼କଟାକୁ ଚାହିଁ ଚାହିଁ କହିଲି, ପ୍ରଥମ ଥରପାଇଁ କାଚ ଆଖିକୁ ଛାଡ଼ି ମୁଁ ମୋ' ନିଜକୁ ଦେଖୁଛି ଦୀପୁ ! କେବଳ ମୋ' ନିଜକୁ ଦେଖୁଛି... । ଦୀପୁ ମୋ' କଥା ଶୁଣି ହସି ହସି କହିଲା, ଦେଖ୍, ଭଲ କରି ଦେଖ୍, ଆଖି ପାଇବା ଯାଏଁ, ଆଖି ଥକି ନ ଯିବା ଯାଏଁ ଦେଖ୍ ।

ଛୁଟିଟା ଦୀପୁର ସେଇ ସବୁଜ ଗାଁରେ କଟାଇ ଦେଲି । ବସ୍ ବେଳ ହୋଇଯାଉଛି ବୋଲି ଦୀପୁ ଓ ମୁଁ ଶୀଘ୍ର ଶୀଘ୍ର ଚାଲି ଆସୁଥିଲୁ । ହାତେ ଓଢ଼ଣା ଦେଇ ରଙ୍ଗୀନ ପାଟଟିଏ ପିନ୍ଧି ଆସୁଥିବା ବୋହୂଟିଏ ଦେଖି ଦୀପୁ ମୋତେ ଚିମୁଟି ଦେଇ କହିଲା, ରାଧିମାଉସୀ ଆସୁଛନ୍ତି । ଆଜି ବୋଧହୁଏ ତାଙ୍କର ବାହାଘର ତାରିଖ । ଏଇ ଶାଢ଼ୀଟା କୁଆଡ଼େ ବାହାଘର ବେଳେ ନିଜେ ରଘୁ ମଉସା ତାଙ୍କୁ ପ୍ରେଜେଣ୍ଟ କରିଥିଲେ । ସବୁବର୍ଷ ଏଇ ଦିନରେ ସେ ଏମିତି ସଜ ହୋଇ ସାହିସାରା ବୁଲି ଆସନ୍ତି । ନିଜକୁ ଏମିତି ସେ ଦୀର୍ଘ କୋଡ଼ିଏ ବର୍ଷ ତଳକୁ ଫେରାଇ ନିଅନ୍ତି । ସବୁ ବୟସକୁ, ସବୁ ବିଚ୍ଛେଦକୁ, ଜୀବନର ଅସଂଖ୍ୟ ଅନୁଭୂତିକୁ ଅସ୍ୱୀକାର କରି ସେ ଏଇ ଦିନରେ ହିଁ ଯେମିତି ଯୁବତୀ ବଧୂଟିଏ ପାଲଟି ଯାଆନ୍ତି ।

ମୁଁ ଚାହିଁ ରହିଥିଲି ଏକଲୟରେ । ଚାହିଁ ରହିଥିଲି ଧୀରେ ଧୀରେ ଝୁଲି ଝୁଲି ଚାଲୁଥିବା ସେହି ନୂଆ ରଙ୍ଗ ମାଖି ବେଶ ହୋଇଥିବା ବୋହୂଟିକୁ । କେତେ ବିଚିତ୍ର ଏ ରାଧି ମାଉସୀ ! କେତେଦିନ ସେ ଏମିତି ନିଜକୁ ନିଜ ପାଖରେ ଭୁଲାଇ, ଦୁନିଆ ପାଖରେ ଭୁଲାଇ ଓଠରେ ହସ ଖେଳାଇ ଅଭିନୟ କରି ଚାଲିଥିବେ ? କେତେଦିନ ସେ ନିଜସ୍ୱ ଜ୍ୱଳନକୁ ନିଜ ଭିତରେ ଚାପି ଧରି ଏମିତି ବର୍ଷ ବର୍ଷ ଧରି ପୁଆଣୀ ବୋହୂ ସାଜୁଥିବେ ? କେତେଦିନ ସେ ନିଜ ବାହାଘର ଶାଢ଼ୀରେ ଲୁହ ସବୁକୁ ସାଇତି ରଖି, କୁନ୍‌ମୁନ୍, ଝିଲୀର ସ୍ମୃତିକୁ ଧରି ରଘୁ ମଉସାଙ୍କ ଫେରିବା ବାଟକୁ ଚାହିଁ ରହିଥିବେ ? ସେ ଅପେକ୍ଷାର ବି ମୂଲ୍ୟ କ'ଣ ? ସେ ଦୀର୍ଘ ଅପେକ୍ଷାର କ'ଣ ସତରେ ଏକ ପରିସମାପ୍ତି ଅଛି ? ଅପେକ୍ଷା କରି କରି ରାଧି ମାଉସୀ ସ୍ୱୟଂ ନିଜେ ଶେଷ ହୋଇ ଯିବେନି ତ ?

କୃଷ୍ଣ କ'ଣ ସତରେ ଆଉ ଗୋପକୁ ଫେରିଥିଲେ ? ତଥାପି ରାଧା ପ୍ରତି ରାତିରେ ହୁଏତ ଅଭିସାରିକା ସାଜି ଦଗାଦିଆ କାହ୍ନୁକୁ ମରିବା ପର୍ଯ୍ୟନ୍ତ ଅପେକ୍ଷା କରିଥିଲେ । ତଥାପି ସେ ଯମୁନା କୂଳରେ କାହାର ଏକ ଆକୁଳ ବଇଁଶୀ ଭିତରେ 'ରାଧା ରାଧା' ନାଆଁ ପାଇଁ କାନ ଡେରୁଥିଲେ । ନିତି କୃଷ୍ଣମୟ ସେହି ଅଜସ୍ର ସ୍ମୃତି ଭିତରେ ରାଧା ହଜି ଯାଉଥିଲେ । ଲୁହ ତାଙ୍କ ବିଛଣା ଛୁଉଁଥିଲା । ସେମିତି ଠିକ୍ ସେହି ବିରହିଣୀ ରାଧା ଭଳି ତୃଷ୍ଣାଭରା କ୍ଳାନ୍ତ ଆଖିପତା ନେଇ ଅନାଇଛନ୍ତି ରାଧି ମାଉସୀ । ପୁଅଝିଅଙ୍କ ଚିତା ନିଜ ହାତରେ ପ୍ରସ୍ତୁତ କରି ବି ଗୋଟାଏ ଆଶା ନେଇ ସେ ବଞ୍ଚିଛନ୍ତି; ହୁଏତ କେବେ ନା କେବେ ତାଙ୍କର ସେ କୃଷ୍ଣ ଫେରିବେ, ରାଧି ମାଉସୀଙ୍କ ଶୂନ୍ୟ ପତ୍ରଝଡ଼ା ସଂସାରରେ ପୁଣି

ପରିପୂର୍ଣ୍ଣତାର ପତ୍ର କଅଁଳି ଉଠିବ, ତାଙ୍କର ନିର୍ଜନ ନିରାସକ୍ତ ଜୀବନରେ ପୁଣି କୋଇଲି ଗାଇବ, ସେଠି ଆମ୍ବ କଷି ଧରିବ ଆଉ ଅତୀତର ସେହି ଦୁଃଖଦ ଦିନଗୁଡ଼ିକ ମନ-ସିଲଟରୁ ପୋଛି ହୋଇଯିବ, ଅବଲମ୍ବନହୀନ ଶେଷ ଜୀବନଟା ହୁଏତ ସାହାରା ପାଇବ, ମରୁଭୂମିରେ ଫୁଲ ଫୁଟିବ ।

ହେଲେ... କିଏ ବା ଦେବ ରାଧାକୁ ସେହି ହଜିଲା କୃଷ୍ଣର ଠିକଣା ?

ପ୍ରତି ଯୁଗରେ କୃଷ୍ଣ ପ୍ରତିଶ୍ରୁତି ଦେଇ ମଥୁରା ଯାଇଛି । ରାଧାକୁ ଫେରିଆସିବା ଯାଏଁ ଅପେକ୍ଷା କରିବାକୁ କହିଛି । କିନ୍ତୁ ଗଲା କୃଷ୍ଣ କେବେ ବି ମଥୁରାରୁ ଫେରିଆସିନି । ଆଉ ଗୋପପୁରରେ ତା'ର ବଂଶୀ ଲହରେଇନି କି ଯମୁନା କୂଳରେ 'ରାଧା' ଡ଼ାକ ଶୁଭିନି । ଅଥଚ ପ୍ରତିଯୁଗରେ ଅନନ୍ତ ପ୍ରତୀକ୍ଷାକୁ ନେଇ ରାଧା ବାଟ ଚାହିଁ ବସିଛି । ରାଧାର ସୃଷ୍ଟି ସତେ ଯେମିତି ଅପେକ୍ଷା ଭିତରେ ଜଳି ଯିବାକୁ, ରାଧାର ସାର୍ଥକତା ସତେ ଯେମିତି ଅପ୍ରାପ୍ତିର କ୍ରନ୍ଦନ ଭିତରେ ।

ରାଧୀ ମାଉସୀ ଯଦି ଏ ଯୁଗରେ ସେମିତି ଏକ ପ୍ରାପ୍ତିର ଆଶା ରଖି କୃଷ୍ଣର ବାଟ ଚାହିଁ ପାରନ୍ତି ତେବେ ଚିନୁ ନାମକ ମୁଁ କାହିଁକି ନିଜକୁ ଆତ୍ମବଳି ଦେବି ? ବଞ୍ଚିବାର ଏତେ ସରଳ ବୃଝାମଣାଟିଏ ଥିଲାବେଳେ ସଂସାରୀଟିଏ କାହିଁକି ସଂସାର ରାସ୍ତା ଭୁଲେ ?

ସତରେ ସଂସାର ଏକ ସମୁଦ୍ର । ସେ ସମୁଦ୍ର ଭିତରେ ମିଶିଯିବା ପାଇଁ ହିଁ ତ ମଣିଷର ଅନନ୍ତ ପରୀକ୍ଷା ! ସେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଉଥିବା ମଣିଷଟି ତ ପ୍ରକୃତ ସଂସାରୀ । ସଂସାରୀଟିଏ ହେବା ପାଇଁ ତେଣୁ ପ୍ରଥମେ ଦରକାର ନୂଆ କରି ବଞ୍ଚି ଶିଖିବା, ସବୁ ଦୁଃଖ ବେଦନା, ଝଡ଼ ସତ୍ତ୍ୱେ ଜୀବନକୁ ଭଲ ପାଇବା, ସବୁ ପରିସ୍ଥିତିକୁ ନିଜର କରି ନେବା... । ୟୁରେକ୍‌କା ! ଜୀବନର ନୂଆ ମନ୍ତ୍ରଟିଏ ମୁଁ ପାଇଯାଇଛି ଏଠି । ଆମ୍ବ ବଉଳ ଭଳି ମୋ ଚାରିପଟେ ମୁକୁଳି ଯାଉଛି ଜୀବନର ଫୁଲ । ମୋ ଭିତରୁ କିଏ ଅନାହତ ସ୍ୱରରେ ଜୀବନର ବନ୍ଦନା ଗାଉଛି ? ସତରେ ଜୀବନ ଏଡ଼େ ଲୋଭନୀୟ ?



# ନୂଆ ଘର

ରାମଭାଇଙ୍କର ଘର ପ୍ରତିଷ୍ଠା । ବାରମ୍ବାର ଆସିବାକୁ କହିଥିଲେ ବଡ଼ବୋଉ । ତେଣୁ ବାଣୀବିହାରରୁ ଟାଉନ ବସ ପାଇଲା ମାତ୍ରେ ହଷ୍ଟେଲରୁ ଚାଲି ଆସିଲି । ସମସ୍ତେ ଏକ ପ୍ରକାର ମୋତେ ଅପେକ୍ଷା କରୁଥିଲେ । ପହଞ୍ଚିଲା ମାତ୍ରେ ସମସ୍ତେ ଉଲ୍ଲସି ଉଠିଲେ । ଗୋଟାଏ ଘର ଦଶ ବର୍ଷ ପକାଇ ସାରି ସମ୍ପୂର୍ଣ୍ଣ କରି ପାରିଥିବାର ଆତ୍ମପ୍ରତ୍ୟୟ ଭାବ ରାମ ଭାଇଙ୍କୁ ଦିପ୍ତୀମାନ କରୁଥିଲା । ସୌରି ଭାଇ, ସାନ ଅପା, ମୁଁ, ବଡ଼ବୋଉ ସେଥିପାଇଁ ବି ଖୁବ୍ ଖୁସିଥିଲୁ ।

ଘରେ ପହଞ୍ଚିଲା ମାତ୍ରେ ରାମଭାଇ ଉତ୍ସାହର ସହିତ ଦେଖାଉଥିଲେ, ଏଇଟା ଡ୍ରଇଂରୁମ୍, ଏଇଟା ଡାଇନିଂ, ସେଟା ବେଡ୍‌ରୁମ୍, ଏପଟ ଗେଷ୍ଟ ରୁମ୍ । ସେ ପଟରେ ସିଡ଼ିଘର । ଆମେ ସବୁ ତନ୍ନ ତନ୍ନ କରି ନୂଆ ଘରଟା ଦେଖୁଥିଲୁ । ବଡ଼ ବୋଉ ଏକବାରେ ବୁଢ଼ୀ । ଅଶୀ ବର୍ଷ ପାଖାପାଖି ହୋଇଗଲାଣି । ଅଣ୍ଟା ପଡ଼ି ଗଲାଣି । ତଥାପି ସେ ଏଘର ସେଘର ଯାଇ ନୂଆ ଘରଟାକୁ ଦେଖୁଥିଲେ ।

ରାମଭାଇ ସମସ୍ତଙ୍କୁ ଅତି ଖୁସିରେ ଘର ଦେଖାଉଥିଲେ । ସତେ ଯେମିତି ଘର ନୁହେଁ, କୋଣାର୍କଟିଏ ଗଢ଼ିଛନ୍ତି । ସବୁଠୁ ଆଗ୍ରହରେ ଦେଖୁଥିଲେ ବଡ଼ ବୋଉ । ଦଶ ବର୍ଷ ଧରି ଘରଟାକୁ ସଂପୂର୍ଣ୍ଣ କରିବାକୁ ଯେଉଁ ଧାଁ ଧାପଡ଼ା ତାହାର ବିବରଣୀ ରାମ ଭାଇ ଦେଲାବେଳେ ବଡ଼ବୋଉ ହିଁ ଆମଠୁ ବେଶି ପିଇ ଯାଉଥିଲେ ।

ଶେଷରେ ସିଡ଼ିଘର ଦେଇ ସମସ୍ତେ ମାର୍ଚ୍ଚିଂ କଲାଭଳି ଛାତ ଉପରକୁ ଉଠିଲୁ । ରାମଭାଇ ଯେମିତି କ୍ୟାପ୍‌ଟେନ୍ ସାଜିଥିଲେ । ବଡ଼ବୋଉ ଛାତ ଉପରକୁ ଆଦୌ ଚଢ଼ି ପାରିବେନି ଜାଣି ଆମେ ମନାକଲୁ, ତୁମେ ଥାଅ, ଆମେ ଉପରୁ ଆସୁ । ବଡ଼ବୋଉ କିନ୍ତୁ ବିରକ୍ତ ହେଲେ । କହିଲେ, 'ମୋ ପୁଅ ଘର କରିଛି, ମୁଁ ଛାତ ଉପରକୁ ଚଢ଼ିବାକୁ ବଳ ପାଇବିନି ?'

ସାନ ଅପା ସାହାଯ୍ୟ କଲେ ତାଙ୍କୁ ଛାତ ଉପରକୁ ଯିବାକୁ । ସେତିକିବେଳେ ନୀଳାଚଳ ଏକ୍‌ସପ୍ରେସ୍ ଷ୍ଟେସନ ଛାଡୁଥିଲା । କଳା ଧୂଆଁ ଛାଡ଼ି ଚାଲି ଯାଉଥିବା ଦୃଶ୍ୟକୁ ବଡ଼ବୋଉ ଅନାଇ ରହିଥିଲେ । ହଠାତ୍ ରାମଭାଇ ପିଲାଙ୍କ ଭଳି ଚିତ୍କାର କରି ଉଠିଲେ, ଦେଖ, ଏଇ ଏରୋପ୍ଲେନ । ପୂନାମାଗେଟ୍ ପାଖରେ ନୂଆ ଘରଟା ହୋଇଥିବାରୁ ଲେବୁଲ୍‌କ୍ରସିଂ ଓ ଏରୋପ୍ଲେନ ପଡ଼ିଆ ଖୁବ୍ ପାଖ ଥିଲା । ମାଡ୍ରାସକୁ ଯିବାଲାଗି ହଳଦିଆ

ରଙ୍ଗର ପ୍ଲେନଟା ଚକ୍କର ମାରୁଥିଲା । ସେହି ଦୃଶ୍ୟଟାକୁ ଅଙ୍ଗୁଳି ବଢ଼ାଇ ଆକର୍ଷଣ କରାଉଥିଲେ ରାମଭାଇ ।

ବାସ୍ତବିକ ଘରଟା ଚମତ୍କାର ସ୍ଥାନରେ ହୋଇଥିଲା । ଛାତ ଉପରେ ଯଦି ଜଣେ କେହି ବସେ ତେବେ ସେ ଘଣ୍ଟା ଘଣ୍ଟା ବସିଲେ ବି କ୍ଲାନ୍ତି ଅନୁଭବ କରି ପାରିବନି । ମୁଁ ଅନାଇଲି ସେହି ଏରୋଡ୍ରମ୍ ପଡ଼ିଆକୁ । ହଠାତ୍ ବଡ଼ବୋଉଙ୍କ ଉପରେ ଆଖି ପଡ଼ିଗଲା । ଟ୍ରେନ୍ ଗଲାବେଳେ ଯେଉଁ ଆଗ୍ରହ ଦୃଷ୍ଟିରେ ସେ ଚାହିଁଥିଲେ ସେହିଭଳି ଅତି ବିସ୍ମୟ ଆଉ ଆଗ୍ରହ ସହିତ ସେ ଚାହିଁଛନ୍ତି ଉଡ଼ାଜାହାଜକୁ ।

ସମସ୍ତେ ଖୁସିରେ ଛାତ ଉପରୁ ଓହ୍ଲାଇଥିଲେ । ବଡ଼ବୋଉ ପଛରେ ପଡ଼ିଗଲେ । ତାଙ୍କୁ ଧରିବାକୁ ସାହାଯ୍ୟ କଲି । ଲକ୍ଷ୍ୟକଲି ଘର ଦେଖିବା ପାଇଁ ସେ ଯେମିତି ଆଗ୍ରହ ସହିତ ଆସିଥିଲେ ଓ ଉତ୍ସାହ ନେଇ ଛାତ ଉପରକୁ ଉଠିଥିଲେ ଓହ୍ଲାଇଲାବେଳ କିନ୍ତୁ ସେହି ଆଗ୍ରହ, ସେହି ଉତ୍ସାହ କେମିତି ତାଙ୍କ ଭିତରୁ ମରି ଯାଇଥିଲା । ସେ କ୍ଲାନ୍ତ ଜଣା ପଡୁଥିଲେ ।

ବ୍ରାହ୍ମଣ ଆସିବା ବେଳ ହୋଇ ଯାଇଥିଲା । ସାନ ଅପା ପୂଜା ସରଞ୍ଜାମ ଯୋଗାଡ଼ିବାରେ ଓ ରାମଭାଇ ମନ୍ଦିରରୁ ପ୍ରସାଦ ଆଣିବାରେ ବ୍ୟସ୍ତ ଥିଲେ । ଅନ୍ୟମାନେ ଘର ସାରା ଖେଳେଇ ହୋଇ କଉଁଠି କଉଁ ଜିନିଷ ରହିବ, କେମିତି ରଖିଲେ ସାଜିବ, କେଉଁଠି କେଉଁ ଫଟୋ ଟଙ୍ଗାଯିବ, ରବୀନ୍ଦ୍ର ଟାଗୋରଙ୍କ ଷ୍ଟେଚ୍ୟୁଟା କଉଁଠି ସୁନ୍ଦର ଦିଶିବ, କାହାର ଖଟ କଉଁଠି ପଡ଼ିଲେ ସୁବିଧା ହେବ, ଏଇ ବିଷୟରେ ଚର୍ଚ୍ଚା କରୁଥିଲେ । ମୁଁ ଝରକା ପାଖରେ ବସି ଟ୍ରେନ୍‌ର ଯିବା ଆଉ ଆସିବା ଦେଖୁଥିଲି ଆଉ ଭାବୁଥିଲି ନିଜେ କେଉଁଠୁ ଆସି କେଉଁଠି ପହଞ୍ଚି ଗଲିଣି ବୋଲି । କେତେକ୍ଷଣ ଭାବି ପକାଇଥାନ୍ତି, ବଡ଼ବୋଉ ଡ଼ାକିଲେ-ଇତି ! ଏ ଘରକୁ ଆ, ଖିରି କରିବା । ଆଜି ମୁଁ ପ୍ରଥମେ ରାନ୍ଧି ସମସ୍ତଙ୍କୁ ଖିରି ଖୁଆଇବି । ତୁ ଟିକେ ମୋତେ ସାହାଯ୍ୟ କରିବୁ ।

ମୁଁ ରୋଷେଇ ଘରକୁ ଆସିଲି । ଚୂଲିରେ ପ୍ରଥମେ ନିଆଁ ଧରାଇଲେ ବଡ଼ ବୋଉ । ସବୁ ଜିନିଷକୁ ଯେମିତି ଯେଉଁଠି ରଖାଯିବ, କହି ଯାଉଥିଲା । ଅଳ୍ପ ସମୟ ଭିତରେ ଘରଟା ବହୁ ପରିଚିତ ପରିଚିତ ଭଳି ମୋତେ ଲାଗିଲା । ଖିରି ଫୁଟୁଥିଲା । ଚୂଲୀ ମୁହଁ ପାଖରେ ବସି ବଡ଼ବୋଉ କେମିତି ଗମ୍ଭୀର ଲାଗୁଥିଲେ । ସେଆଡ଼େ ବ୍ରାହ୍ମଣ ଆସି ଯାଇଥିଲେ । ହୋମ ହେଉଥିଲା । ରାମଭାଇ ନୂଆ ଧୋତି ପଞ୍ଜାବୀ ପିନ୍ଧି ମୁଣ୍ଡରେ ଚନ୍ଦନ ଓ ସିନ୍ଦୁର ଲଗାଇ ବେଶ୍ ଖୁସିରେ ବସିଥିଲେ । ପରିପୂର୍ଣ୍ଣ ଆନନ୍ଦ ଯୋଗୁଁ, ନିଆଁରେ ତାଙ୍କ ମୁହଁ ଚକ୍ ଚକ୍ କରୁଥିଲା ।

'ବଡ଼ବୋଉ ହୋମ ଆରମ୍ଭ ହୋଇଗଲାଣି ।'

ମୋ କଥା ବୋଧହୁଏ ସେ ଶୁଣି ପାରିଲେନି । ଆଉ ଥରେ ନିଜ କଥାକୁ ମୁଁ ଦୋହରାଇଲି । ଭାବନାରୁ ଫେରି ଚମକିଲା ଆଖିରେ ସେ ମୋତେ ଚାହିଁଲେ ।

ହୋମ ଆରମ୍ଭ ହୋଇଗଲାଣି ।

ଏଥର ବଡ଼ବୋଉ ଅଣ୍ଟା ସଳଖି ଉଠିଲେ ଓ କେମିତି ଗୋଟାଏ ନିଃଶ୍ୱାସ ଛାଡ଼ିଲେ । ଦ୍ୱାର ପାଖରେ ଆସି ଠିଆ ହେଲେ । ବ୍ରାହ୍ମଣ ମନ୍ତ୍ର ପଢୁଥିଲେ । ସୌରିଭାଇ ପଥରରେ ତିଆରି ଘରଟାକୁ ଇଞ୍ଚ ଇଞ୍ଚ କରି ପରୀକ୍ଷା କରୁଥିଲେ କାଳେ ସେ ଭିତରୁ ତାଙ୍କର ଗୋଟାଏ କବିତା ସୃଷ୍ଟି ହୋଇ ପାରିବ ଭାବି । ଖିରି ଓହ୍ଲାଇ ଦେଇ ମୁଁ ବି ବଡ଼ବୋଉଙ୍କ ପାଖରେ ଆସି ଠିଆ ହେଲି । ବଡ଼ବୋଉ ଆହୁରି କ୍ଲାନ୍ତ ଜଣା ପଡୁଥିଲେ ।

ତୁମ ଦେହ କଣ ଭଲ ନାହିଁ ବଡ଼ବୋଉ ?

କାହିଁ ନା ତ ... ସେ ଧୀରେ ଧୀରେ କହିଲେ । ତାଙ୍କର ବୋଧେ ଖିରି ବସାଇଥିବା କଥା ମନେ ପଡ଼ିଗଲା । ତେଣୁ ଚଞ୍ଚଳ ସେ ନଇଁ ନଇଁ ରୋଷେଇ ଘରକୁ ଚାଲିଗଲେ । ମୁଁ ତାଙ୍କ ପଛେ ପଛେ ଗଲି । ଦ୍ୱାର ପାଖରେ ପହଞ୍ଚୁ ପହଞ୍ଚୁ ଅଟକିଗଲି । ବଡ଼ବୋଉ ଗୁଣୁଗୁଣୁ ହୋଇ କହୁଥିଲେ- 'ହୁଁ, ଘର କରିଛି, ପଥର ଘର, ଏଘର ମୋର କଣ ହେବ ?' ଭିତରକୁ ଯାଉ ଯାଉ ସେମିତି ରହିଗଲି ମୁଁ । ହଠାତ୍ କେତେ କଥା, କେତେ ଦୃଶ୍ୟ ଯେମିତି ମୋ ଆଖିରେ ନାଚି ଯାଉଥିଲା । ତା'ହେଲେ ବଡ଼ବୋଉ ଏପର୍ଯ୍ୟନ୍ତ ବି ଭୁଲିପାରି ନାହାନ୍ତି ? ଏପର୍ଯ୍ୟନ୍ତ ବି ଯାହା ବାସ୍ତବ ତାକୁ ସ୍ୱୀକାର କରି ପାରି ନାହାନ୍ତି ? ଘର କରିବା, ଘରଟିଏ ଦେଖିବାର ଏପର୍ଯ୍ୟନ୍ତ ବି ସ୍ୱପ୍ନ ଦେଖୁଛନ୍ତି ? ଏ ଘରଟା ତାଙ୍କୁ ପଥର ଘର ଛଡ଼ା ଆଉ ଅଧିକା କିଛି ନୁହେଁ ? ସତ କଥାତ... ଏ ଘରଟା ନେଇ ବଡ଼ବୋଉ କଣ କରିବେ ?

ବଡ଼ବୋଉଙ୍କର ଗୋଟାଏ ବୋଲି ପୁଅ ରାମଭାଇ । ତାଙ୍କୁ କେନ୍ଦ୍ର କରି ତାଙ୍କର ଅନେକ ସ୍ୱପ୍ନ, କଳ୍ପନା ଥିଲା । ସେହି ପୁରୁଣା ସ୍ୱପ୍ନ, ସବୁ ମାଆଙ୍କ ଭଳି । ସବୁ ମାଆ ଯେମିତି ପୁଅକୁ ନେଇ ଦେଖନ୍ତି, ବୋହୂ ରନ୍ଧା ଖାଇବା ଓ ବୋହୂର ହାତ ଆଉଁଷା ପାଇବାର ଆଶା ରଖନ୍ତି । ନାତିନାତୁଣୀ, ପରିପୂର୍ଣ୍ଣ ଘର, ବୋହୂର ମା' ଡାକ ଏମିତି... । ସେହି ଏକ ଭଳି ସରଳ ସ୍ୱପ୍ନଟିକୁ କେମିତି ମାଆ ହୋଇ ବଡ଼ବୋଉ ବାଦ୍ ଦିଅନ୍ତେ ? କେମିତି ନ ଦେଖିଥାନ୍ତେ ଯେ ? ଦଶ ମାସ ଧରି ଯେଉଁ ପୁଅକୁ ସେ ଗର୍ଭରେ ଧରିଛନ୍ତି ତାହାଠୁ ଏହାଭଳି ଆଉ ଅଧିକା କଣ ଚାହିଁଥାନ୍ତେ ? ହେଲେ... ସବୁ ସ୍ୱପ୍ନ ସାକାର ନ ହେଲା ଭଳି ବର୍ଷ ବର୍ଷ ଧରି ଯେଉଁ ବାସ୍ତବତାକୁ ନିଜ ଅନୁଭବର ପରିସର ଭିତରେ ଦେଖିବାକୁ ଚାହିଁଥିଲେ ବଡ଼ ବୋଉ, ତାହା ହୋଇ ପାରିଲା ନାହିଁ । ଯୁଦ୍ଧ ଘୋଷଣା କଲା ଭଳି ରାମଭାଇ ଦିନେ ଚିରକୁମାର ରହିବାର ଘୋଷଣା କଲେ । ସେ ଘୋଷଣାକୁ ପ୍ରଥମେ ଆମେ ସମସ୍ତେ

ଅବିଶ୍ୱାସରେ ଉଡ଼ାଇ ଦେଇଥିଲୁ । କିନ୍ତୁ ଶେଷରେ ରାମଭାଇ ତାଙ୍କ କଥାରେ ଅଟଳ ରହିଲେ । ଆମେ ଘରର ସମସ୍ତେ ତାଙ୍କର ବାକ୍ୟବାଣ ପାଖରେ ହାରି ଯାଇଥିଲୁ । ଏପରିକି ନିଜେ ବଡ଼ବୋଉ ବି । ଦିନରାତି ସେ କାନ୍ଦୁଥିଲେ । ରାମଭାଇଙ୍କ ଭଳି ବଡ଼ବୋଉ ନିଜ ପାଖରେ ନିଜେ ଅବୁଝା ହୋଇ ଉଠିଥିଲେ । ରାମଭାଇଙ୍କୁ ବୁଝାଇ ବୁଝାଇ ଥକି ପଡ଼ିଲା ଭଳି ବଡ଼ବୋଉଙ୍କୁ ବି ସମସ୍ତେ ସାନ୍ତ୍ୱନା ଦେଇ ଦେଇ କ୍ଳାନ୍ତ ହୋଇ ପଡ଼ିଥିଲେ ।

ସେହିଦିନୁ ରାମଭାଇଙ୍କ ଭଳି ବଡ଼ବୋଉ କେମିତି ଏକ ଅଜଣା ମଣିଷ ପାଲଟି ଗଲେ । ଖୁବ୍ କମ୍ ହସୁଥିଲେ । ଖୁବ୍ କମ୍ ଖାଉଥିଲେ । ବେଳେ ବେଳେ ଉଦାସ ହୋଇ ପଡୁଥିଲେ । ପୁଣି ମନହେଲେ ସୁଁ ସୁଁ କାନ୍ଦୁଥିଲେ । ମନକୁ ମନ ହସୁଥିଲେ । କାହା ଘରେ ବାହାଘର ହେବା ଶୁଣିଲେ କିମ୍ବା ନିଜ ଘର ସାମ୍ନାରେ କୌଣସି ବର ପ୍ରସେସନ୍ କରି ଯିବା ଦେଖିଲେ ବଡ଼ବୋଉ ଚମକି ପଡୁଥିଲେ । ଦେଖୁ ଦେଖୁ ଧଡ଼୍ କି କବାଟ ବନ୍ଦ କରି ଦେଉଥିଲେ ।

ଏତ ଆମଘରର ଇତିହାସ, ଅନେକ ବର୍ଷ ତଳର କଥା । ତାଙ୍କର ଏ ଢ଼ଙ୍ଗ, ଚାଲିଚଳଣି ସବୁରେ ଅଭ୍ୟସ୍ତ ହୋଇ ପଡ଼ିଥିଲୁ । ଚାକିରୀ ଭିତରେ ରିଟାୟାର୍ଡ ପୂର୍ବରୁ ରାମଭାଇ ଘରଟିଏ କରିବାର ପ୍ରସ୍ତାବ ଦେଲେ ଓ ପୁନାମା ଗେଟ୍ ପାଖରେ ଜାଗାଟିଏ ସୁବିଧା ଦେଖି କରିପକାଇଲେ । ଏଥିଲା ଦଶ ବର୍ଷ ତଳର କଥା । ଘର ଶୁଭ ହେଲାବେଳେ ବଡ଼ବୋଉଙ୍କୁ ନେଇ ରାମଭାଇ ଆସିଥିଲେ । ବଡ଼ବୋଉ ସେଦିନ ଖୁସି ଥିଲେ ଆଉ କହୁଥିଲେ, ପାଗଳାଟା, ଯାହା କରୁଛି କରୁ ତା ଖୁସିହିଁ ମୋ ଖୁସି । ମୁଁ ଲକ୍ଷ୍ୟ କରିଛି ବର୍ଷ ବର୍ଷ ଧରି ବଡ଼ବୋଉ କେବେବି ବାଧା ଦେଇ ନାହାନ୍ତି । ଖୁସି ନହେଲେ ବି ଖୁସି ହେବାର ଅଭିନୟ କରିଛନ୍ତି । ସେ ଚାହୁଁଥିଲେ ରାମଭାଇ ଦୁଃଖ ନପାଆନ୍ତୁ । ପୁଣି ଝିଅ ଭିତରୁ ଯଦି କେହି ବାହା ହେବନି ବୋଲି କୌଣସି ମୁହୂର୍ତ୍ତରେ କେବେ କହି ପକାଏ, ତେବେ ବଡ଼ବୋଉ ପାଟି କରନ୍ତି ଓ ଉପଦେଶ ଦିଅନ୍ତି - 'ଏ ପିଲା ବୁଦ୍ଧି ଛାଡ଼ । ଘର ସଂସାର ନ କଲେ ପିତୃପୁରୁଷ ପାଣି ପାଇବେନି' ସଂସାରରେ ମଣିଷର ଘର ସଂସାର କରିବା ହିଁ ବଡ଼ବୋଉଙ୍କ ଆଖିରେ ସବୁଠୁ ମହତ କାମଥିଲା । ସେଥିପାଇଁ ପାଖ ପଡ଼ୋଶୀ ଭିତରୁ କେହି ଯଦି ରାମଭାଇଙ୍କ ଭଳି ଅଝଟ ହୋଇ ଉଠନ୍ତି - ସେଠି ବିନା ନିମନ୍ତ୍ରଣରେ ପହଞ୍ଚି ଯାଆନ୍ତି ବଡ଼ବୋଉ ଓ ସ୍ନେହମିଶା ଶାସନ, ଉପଦେଶ ଦେବାକୁ ଆରମ୍ଭ କରନ୍ତି । ପ୍ରାଣପଣେ ବୁଝାସୁଝା କରିବାକୁ ଚେଷ୍ଟା କରନ୍ତି ।

ବୋଧହୁଏ ଯାହାର ନିଜ ଘର ଭାଙ୍ଗି ଯାଇଥାଏ ଓ ଭାଙ୍ଗି ଯାଇଥିବାର କଷ୍ଟଟିଏ ନିଜ ରକ୍ତମାଂସ ଭିତରେ ଭେଦାଇ ଗହରେଇ ଅନୁଭବ କରିଥାଏ - ସେ ହିଁ ଅନ୍ୟ ଘର ଭାଙ୍ଗିଯିବାର ଦୃଶ୍ୟ ଦେଖି ପାରେନି । କାରଣ ସେ ବୁଝେ ଘର ଭାଙ୍ଗିଯିବାର କଷ୍ଟ, ଘରଟିଏ

ଗଢ଼ିବାର କଷ୍ଟ ଆଉ ସବୁ କପଟ ଭିତରେ ମାସ ମାସ ବର୍ଷ ବର୍ଷ ଧରି ଜୀଇଁ ରହିବାର କଷ୍ଟ ।

ଦୀର୍ଘ ପଚିଶ ବର୍ଷ ପରେ ସେହି କଷ୍ଟ ପାଖକୁ - ଘର ଭାଙ୍ଗିଯିବାର - ଘରଟିଏ ଗଢ଼ି ନ ପାରିବାର ଅପାରଗତା ପାଖକୁ ଫେରି ଯାଉଛନ୍ତି । ସେଇଥି ପାଇଁ- ଦଶ ବର୍ଷ ଧରି ପଥରରେ ତିଆରି କରିଥିବା ରାମଭାଇଙ୍କର ବହୁ କଷ୍ଟସାଧ କୋଠାଘରକୁ ବଡ଼ବୋଉ ସାଧାରଣ ପଥର ଘରଠୁ ଅଧିକା କିଛି ଗ୍ରହଣ କରି ପାରୁନାହାନ୍ତି । ସେଇଥିପାଇଁ ବ୍ରାହ୍ମଣ ଘର ପ୍ରତିଷ୍ଠାର ମନ୍ତ୍ର ପଢୁଥିଲା ବେଳେ ରାମଭାଇଙ୍କୁ ସେଇଠି ବସିଥିବା ଦେଖି ବାହାଘରର ବେଦୀ ଉପରେ ରାମଭାଇଙ୍କୁ କଳ୍ପନା କରି ବଡ଼ବୋଉ କ୍ଲାନ୍ତ ଦେଖାଯାଉ ଥିଲେ ।

ମୁଁ ଭିତରକୁ ଆସି ବଡ଼ବୋଉଙ୍କ ପାଖରେ ବସିଲି । ବଡ଼ବୋଉ ପ୍ଲେଟରେ ଖିରୀ ଥଣ୍ଡା କରୁଥିଲେ । ଖିରୀରୁ ଉଠୁଥିଲା ବାଷ୍ପ ତାଙ୍କର ମୁହଁସାରା ଖେଳାଇ ହୋଇ ଯାଇଥିଲା । ସେ ଝାଳେଇ ଯାଇଥିଲେ । ସତକଥା ତ - ବୋହୂ ଥିଲେ ବଡ଼ବୋଉ କଣ ଏ ଘରେ ନିଆଁ ଧରାଇ  ପ୍ରଥମେ ଖିରୀ ରାନ୍ଧିଥାନ୍ତେ ? ସାନ ଅପା ଡ଼ାକିଲା, ବୋଉ, ଏଠିକୁ ଆ, ଘରର ଚାରିଆଡେ ପୂଜାଥାଳୀ ନେଇ ବୁଲାଇ ଆଣିବୁ । ବଡ଼ବୋଉଙ୍କ ଖିରୀ ବାଢୁଥିବା ସେହି ଚଞ୍ଚଳ ଦେହରେ ଯେମିତି  ଶୀଥିଳତା ଖେଳାଇ ହୋଇଗଲା । ବେକରେ ଲୁଗା କାନିଟା ଗୁଡ଼ାଇ ଧରି ସେ ନଇଁ ନଇଁ ସବୁଆଡ଼େ ପୂଜାଥାଳୀ ବୁଲାଇ ଚାଉଳ ଫିଙ୍ଗୁଥିଲେ । ମୁହଁ ପୋଛିଲେ ବଡ଼ବୋଉ, ଆଉ ଥାଳୀ ନେଇ ଗଲାବେଳେ କହିଲେ - 'ବୋହୂଟେ ଥିଲେ ମୋତେ କଣ ଏଇ ବୁଢ଼ୀ କାଳରେ ଏସବୁ କରିବାକୁ ପଡ଼ିଥା'ନ୍ତା । ଗୁଣ୍ଡୁଣୀ ହାତୀ ଭଳି ଏଇନା ସେ ଏଘରୁ ସେଘର ଧାଇଁ ବୁଲୁଥାନ୍ତା । ଏଘର ତାକୁ ଖୁବ୍ ମାନିଥାନ୍ତା ।' ବଡ଼ବୋଉ ଅସମ୍ଭବ ଭାବରେ ମୋତେ ଦେଖି ଚୁପ୍ ହୋଇଗଲେ । କେଉଁ ଏକ ରାଜକୁମାରୀକୁ ବୋହୂକରି ଆଣିବାର ଯେଉଁ ଭାବକୁ ପଚିଶ ବର୍ଷ ତଳେ ଦେଖିଥିଲେ ତାହାକୁ ଏଇ ନୂଆଘରେ ଆଣି ଯୋଖୁଛନ୍ତି - ଏ ଘର ସହିତ ତାଙ୍କ କଳ୍ପିତ ବୋହୂ କେମିତି ମାନୁଛି, ବଢ଼େଇ ଦ୍ୱାରବନ୍ଧରେ କବାଟ ଯୋଖିଲାଭଳି ଯୋଖୁଛନ୍ତି ।

ବୋଉ । ଘର ତୋର ମନ ପାଇଲାତ ?

ପୂଜା ସାରି ରାମଭାଇ ପଚାରୁଥିଲେ । ତାଙ୍କରି ସେହି ଚନ୍ଦନ ସିନ୍ଦୁର ମିଶା କପାଳକୁ ସ୍ୱପ୍ନ ବିଭୋର ପରଳ ଢ଼ଙ୍କା ଆଖିରେ ଚାହିଁଥିଲେ ବଡ଼ବୋଉ, ଉତ୍ତରରେ 'ଖୁବ୍ ଭଲ ହୋଇଛି' ବୋଲି ମନ୍ତବ୍ୟ ଦେଲେ । ମୋତେ ଲାଗିଲା ଏଇ ଖୁବ୍ ଭଲ ହୋଇଛି ସ୍ୱରଟା ଯେମିତି ବଡ଼ବୋଉଙ୍କ ନିଜସ୍ୱ କଣ୍ଠସ୍ୱର ନୁହେଁ । ତାଙ୍କ ଭିତରୁ ଯେମିତି ଆଉ କେହି ଅଜଣା ମଣିଷଟିଏ କଥା କହୁଛି । ହସକାନ୍ଦ ଏକାଠି ମିଶିଗଲେ ଯେମିତି ଶୁଭେ, ବଡ଼ବୋଉଙ୍କ କଣ୍ଠ ସ୍ୱରଟା ଠିକ୍ ସେମିତିଆ ଶୁଭୁଥିଲା । ଭୟ ହେଉଥିଲା ହୁଏତ ଅନେକ ଦିନରୁ ଚାପିଥିବା

କୋହ ସବୁ ଆଜି ଫାଟି ପଡ଼ିବ । ମୋର କିନ୍ତୁ ସେମିତି କିଛି ହେଲା ନାହିଁ । ଏ ଭିତରେ ନିଜ ମନକୁ ସାନ୍ତ୍ୱନା ଦେବାର କାଇଦା ଯେମିତି ନିଜେ ନିଜ ପାଖରେ ଆବିଷ୍କାର କରିଛନ୍ତି ବଡ଼ବୋଉ । ଦୁଃଖ ପିଇ ପିଇ ମଣିଷ ଯେ ପୁଣି ଦୁଃଖ ସହିତ ସାମିଲ ହୋଇପାରେ-ଜୀବନରେ ସବୁକିଛି ହରାଇ ବି ମଣିଷ ଯେ ପୁଣି ହରାଇବା ଭିତରେ ହସିପାରେ, ସେମିତି ଏକ ମଣିଷକୁ ମୁଁ ବଡ଼ବୋଉଙ୍କ ଭିତରେ ପ୍ରଥମ କରି ଦେଖୁଥିଲି, ପ୍ରଥମ ଥର ସାମ୍ନା କରୁଥିଲି ।

ବିନା ପ୍ରତିବାଦରେ ବର୍ଷ ପରେ ବର୍ଷ ଡ଼େଇଁ ଏଇ ବଞ୍ଚି ଆସୁଥିବା ମଣିଷଟି କେତେ ନିର୍ବିକାର ହୋଇ ଯାଇଛି ! ଜୀବନକୁ, ସଂସାରକୁ ଯିଏ ଏତେ ଭଲ ପାଉଥିଲା-ଘରଟିଏ ଗଢ଼ିବା ପାଇଁ ଯିଏ ଏତେ ସ୍ୱପ୍ନ ଦିନରାତି ଦେଖି ପାରୁଥିଲା; ସେ ମଣିଷଟି ସତରେ ଏ ଭିତରେ କେତେ ଉଦାସ ହୋଇ ଯାଉଛି; ମୋହମୁକ୍ତ ଆସକ୍ତିହୀନ ହୋଇ ଯାଇଛି !!

ଯିଏ ଜୀବନକୁ ଖୁବ୍ ଭଲପାଏ ସେହି ଦୁଃଖ ପାଏ । ସବୁଠୁ ସଂସାରୀ ମଣିଷ ହିଁ ସଂସାର କରିପାରେ ନାହିଁ; ସଂସାର ଦେଖି ପାରେନାହିଁ । ଯାହା ଜୀବନରେ ବହୁତ ସମ୍ଭାବନା-ତା ଜୀବନରେ ବହୁତ ଦୁର୍ଘଟଣା ।

ରାମଭାଇଙ୍କଠୁ ଘରଟିଏ ଆଶା କରିଥିଲେ ବଡ଼ବୋଉ । ରାମଭାଇ ଅନେକ ବର୍ଷ ପରେ ଗୋଟାଏ ଘର ତିଆରି କରିଛନ୍ତି । ଉପହାର ଦେଉଛନ୍ତି ବଡ଼ବୋଉଙ୍କୁ, ହେଲେ ପଥର ଘରଟାକୁ ନେଇ କଣ କରିବେ ଭାବି ପାରୁନାହାନ୍ତି ବଡ଼ବୋଉ । ଏ ପଥର ଘର ଭିତରେ ଯେମିତି ସେ ଆପେ ଆପେ ବନ୍ଦୀ ହୋଇ ପଡୁଛନ୍ତି । ରାମଚନ୍ଦ୍ରଙ୍କ ଦୃଷ୍ଟାନ୍ତ ନେଇ ବୋଧହୁଏ ବଡ଼ବୋଉ ନିଜର ଏକମାତ୍ର ପୁଅର ନାମ ରାମଚନ୍ଦ୍ର ରଖିଥିଲେ । ହେଲେ ସେ କଣ ଜାଣିଥିଲେ ସବୁ ରାମଚନ୍ଦ୍ର ଶିବଧନୁ ଭାଙ୍ଗି ପାରନ୍ତି ନାହିଁ ? ରାମ ନାଁ ସମସ୍ତେ ରାମଚନ୍ଦ୍ର ହୋଇ ଯାଆନ୍ତି ନାହିଁ ବୋଲି ? କିଏ ତାଙ୍କୁ ବୁଝାଇବ ? କିଏ ତାଙ୍କୁ ବୁଝାଇ ପାରିବାର ପାଠ ପଢ଼ିଛି ଯେ ବୁଝାଇବ ?

ପ୍ରତିଦିନ ନୀଳାଚଳ ଏକ୍ସପ୍ରେସ୍ ଯାଉଥିବ, କୋଣାର୍କ ଆସୁଥିବ । ପ୍ରତିଦିନ ମାଡ୍ରାସକୁ, ଦିଲ୍ଲୀକୁ ପ୍ଲେନ ଯାଉଥିବ । ଉଠୁଥିଲା ବେଳେ ପଡ଼ିଆ ସାରା ଚକ୍କର ମାରୁଥିବ । ବଡ଼ବୋଉଙ୍କୁ ଧରି ଧରି ରାମଭାଇ ଛାତ ଉପରକୁ ନେଇ ଯାଉଥିବେ ଆଉ, 'ଏଇ ଦେଖ୍ ଟ୍ରେନ୍ ଆସୁଛି, ଏଇ ଦେଖ୍ ପ୍ଲେନ୍ ଉଠୁଛି' ବୋଲି ପାଟି କରୁଥିବେ । ଜୀବନର ଆଶା ନିରାଶା, ଉତ୍‌ଥାନ,ପତନ, ପାଇ ହରାଇବାର ଆତ୍ମଗ୍ଲାନି ଉପରେ ଠିଆହୋଇ ବଡ଼ବୋଉ ନିଜ ଜୀବନର ଗାଡ଼ି ଛାଡ଼ି ଦେଉଥିବା ଦେଖୁଥିବେ, ନିଜେ ଗାଡ଼ି ଫେଲ୍ ହୋଇ ଧରି ନପାରିବାର ଦୁଃଖ ଭିତରେ ହଜି ଯାଇ ଅନୁଭବ କରୁଥିବେ ଷ୍ଟେସନ ପାଖରେ ଘର କରୁଥିବା ମଣିଷହିଁ ବେଶୀ ଗାଡ଼ିଫେଲ୍ ହୁଏ ବୋଲି, ଆଉ ରାମଭାଇଙ୍କୁ ଖୁସି କରାଇବା ପାଇଁ,

ନିଜ ମନକୁ ମିଛ ସାନ୍ତ୍ୱନା ଦେବା ପାଇଁ କହୁଥିବେ, 'ହଁରେ, ଏ ଗାଡ଼ିଟା ଖୁବ୍ ଚଞ୍ଚଳ, ଏ ଉଡ଼ାଜାହାଜଟା ଖୁବ୍ ସୁନ୍ଦର... ତୁ ଭଲ ଯାଗାରେ ଭଲ ଘରଟିଏ ଏତେଦିନ ପରେ ବାଛି ବାଛି କରିଛୁ । ଏ ରେଳଗାଡ଼ି, ଉଡ଼ାଜାହାଜର ଯିବାଆସିବା ନିତି ଦେଖି ଦେଖି ମୁଁ ସବୁ ଦୁଃଖ ଭୁଲି ଯାଉଛି, ସବୁ କଷ୍ଟ ମୋର ଉଭେଇ ଯାଉଛି, ତୋ ଭଳି ପୁଅ ପାଇ ମୋର ମାତୃତ୍ୱ ସାର୍ଥକ ହୋଇଛି, ମୋର ଆଉ ଚିନ୍ତା କଣ ?'

ବଡ଼ବୋଉଙ୍କ ମନର ଘର ଏକ ସୁନ୍ଦର ଘର । ଯୋଉ ଘର ପାଖରେ ହଜାର ହଜାର ପଥର ଘର ସମାନ ହୋଇ ପାରେନା । ମନର ଘରଠାରୁ ବଳି ସୁନ୍ଦର ଘର ବୋଧହୁଏ ଆଉ କିଛି ନାହିଁ । ମନର ଘର ଥରେ ଖଣ୍ଡ ଖଣ୍ଡ ହୋଇଗଲା ପରେ ଆଉ ଯେତେ ଘର ଗଢ଼ିଲେ ବି ସେ ଘର ସହିତ କିଛି ବି ସମାନ ହେଲା ଭଳି ଲାଗେନା ।

ଏକାଠି ରିକ୍ସାରେ ଫେରିଲାବେଳେ ବଡ଼ବୋଉଙ୍କୁ କହିଲି 'ତୁମକୁ ଖୁସି କରାଇବା ପାଇଁ ରାମଭାଇ ବର୍ଷ ବର୍ଷ ଧରି ଘରଟା ତିଆରି କରୁଥିଲେ । ତୁମକୁ କେମିତି ଲାଗିଲା ?'

ବଡ଼ବୋଉ ଶବ୍ଦକରି ହସିଲେ । ଆସ୍ତେ କହିଲେ, 'ସାତ ସାତଟା ପିଲା ଜନ୍ମ ହୋଇ ମରିଗଲା ପରେ ଯେତେବେଳେ ହୀନକପାଳୀଟିଏ ଜାଣେ ସେ ପୁଣି ମା' ହେବାକୁ ଯାଉଛି, ତାର ଯେମିତି ଖୁସି, ରାମର ଘର ତିଆରି ମୋତେ ସେମିତି ଲାଗିଲା... ।'



# ମେଳା

ମିଷ୍ଟର ମୋତେ ମେଳାର ଭିଡ଼ ଭିତରେ ଏମିତି ଭାରାକ୍ରାନ୍ତ ହୋଇ ଠିଆ ହେଇଯିବା ଦେଖି ଆଶ୍ଚର୍ଯ୍ୟରେ ଚାହିଁ ରହିଥିଲେ । କହିଲେ, କଣ ଦେହ ଭଲ ଲାଗୁନାହିଁ ? ମୁଁ କିନ୍ତୁ ଦେଖୁଥିଲି ଚାର୍ଟ ଦୋକାନ, ଚା ଦୋକାନ, ପେଂକାଳି ହରେକ୍‌ମାଲର ପସରା, ମନ୍ଦିର ଆଉ ଇଲେକ୍‌ଟ୍ରିକ ଦୋଳି ଆଉ ମେଳାରେ ଉଡୁଥିବା ଧୂଳି ଭିତରେ ସ୍ମୃତି ନଟୁପରି ଘୂରି ବୁଲିବାର । ମୋ ସ୍ୱାମୀଙ୍କର ବ୍ୟସ୍ତତା ବଢ଼ିଯାଇ ଥିଲା ମୋ ନିରବତା ଦେଖି । ବ୍ୟାଗରୁ ହଳଦିଆ ପଡ଼ି ଯାଇଥିବା ଫଟୋଟା ବାହାର କରି ତାଙ୍କ ଆଡ଼େ ବଢ଼ାଇ ଦେଲି । ସେ କହିଲେ, ଏଇଟାକୁ ବି ମେଳାକୁ ନେଇ ଆସିଛ । ତାହାଲେ ସହେଲୀମାନେ ମନେ ପଡ଼ିଗଲେ । ସେ ହୋହୋ ହସି ଉଠିଲେ ।

ମୁଁ କହି ଚାଲିଥିଲି, ଦେଖତ ବସିଥିଲୁ, ଚାର୍ଟ ଖାଇଥିଲୁ ଆଉ ଏଇ ଶ୍ମଶାନ ଘାଟରେ ପରସ୍ପରକୁ ସାନ୍ତ୍ୱନା ଦେଇଥିଲୁ । ଆଜି ପନ୍ଦର ବର୍ଷ ପରେ ମୋର କଣ ମନେ ହେଉଛି ଜାଣ ? ଆମେ ସମସ୍ତେ ବଞ୍ଚିଛୁ କିନ୍ତୁ ପୃଥିବୀ ଭଳି ଏକ ବିରାଟ ମେଳାରେ ସମସ୍ତେ ହଜିଯାଇଛୁ । ଅନିଚ୍ଛା ସତ୍ତ୍ୱେ ସମସ୍ତଙ୍କୁ ହଜାଇ ଦେଇଛୁ । ଏମିତି କାହିଁକି ହୁଏ କୁହତ ?

ସେ କିଛି ଉତ୍ତର ଦେଲେ ନାହିଁ, ପାଖ ଦୋକାନରୁ ଦୁଇଟା ଗ୍ଲାସ୍‌ରେ ଚା ଆଣି ବଢ଼ାଇ ଦେଲେ । ଚା ର ବାଷ୍ପ ଭିତରେ ଅତୀତର କିଛି ପୃଷ୍ଠା ଯେମିତି ପଛକୁ ଉଡ଼ିଗଲେ ।

ଭିଡ଼ ଜମି ଉଠିଛି । ଇଲେକ୍‌ଟ୍ରିକ ଦୋଳି ଘିର୍ ଘିର୍ ଘୂରୁଛି । ଚିଡ଼ିଆଖାନା ପାଖରେ ବେଶ୍ ଗହଳି । ରାସ୍ତାର ଦିପଟେ ଚଣା, ଉଖୁଡ଼ା, ବାଦାମଭଜାର ବସ୍ତା ଓ ଧାଡ଼ି ଧାଡ଼ି ଜଳଖିଆ ଦୋକାନ । ଟିକେ ଭିତରକୁ ଗଲେ ହାର, କାନଫୁଲର ଷ୍ଟେସନାରୀ ଦୋକାନ । ଏପଟେ ପେଁକାଳି, ବେଲୁନ ବାଲା । ତା ପାଖରେ କାନ୍ଥ, କୁଣ୍ଡିଆ, ମଲମ ବିକୁଥିବା ଲୋକଟିର ମାଇକରେ ଚିତ୍କାର । ତାକୁ ଲାଗି ବସିଛି ଲକ୍ଷପତିର ସ୍ୱପ୍ନ ଦେଖାଇବାକୁ ଲଟେରୀବାଲା । ବାସନ, ଶିଳ ପ୍ରଭୃତି ଦୋକାନରେ ସ୍ୱାମୀସ୍ତ୍ରୀ ଝିଅ ବାହାଘର ପାଇଁ ମୂଲଚାଲ କରିବାରେ ବ୍ୟସ୍ତ । ସେଠି ଉତ୍କଳିକା, କଳାନିକେତନର ଦୋକାନ । ପିପିଲି ଚାନ୍ଦୁଆ ଠାରୁ ହ୍ୟାଣ୍ଡିକ୍ରାଫ୍‌ଟର ବିଭିନ୍ନ ଜିନିଷ । ସେଠି ହରେକ୍ ମାଲବାଲା ପସରା ମେଲାଇଛି । ଆଇସକ୍ରିମ୍ ବାଲା ପାଖରେ ଧାଡ଼ି ଧାଡ଼ି ଚାର୍ଟ ଦୋକାନ । ତାପାଖରେ ବଡ଼ ବଡ଼ ପୁରୀ ଛଣା ହେଉଛି, ଚା କେଟଲିରେ ଚା ବସିଛି । ଜଣେ ବାଘ, ଛେଳି, ହରିଣ, ରଜାରାଣୀର ମୁଖା ନେଇ ବସିଛି । ପୁଣି ଅଛି ଭଳିଭଳିକି କଣ୍ଢେଇ ଆଉ ଗାନ୍ଧୀ, ନେହେରୁ ଠାରୁ ଶ୍ରୀଦେବୀ, ହେମାମାଳିନୀ, ଜିତେନ୍ଦ୍ର, ଅମୀର ଖାଁ ପର୍ଯ୍ୟନ୍ତ ବିଭିନ୍ନ କ୍ୟାଲେଣ୍ଡର ।

ପୁରାଣ ବହିଗୁଡ଼ିକର ଛୋଟ ଷ୍ଟଲଟିଏ ବସିଛି । ପୁଣି ଦୁଇତିନୋଟି ଛାଞ୍ଚ ଦୋକାନ । ଥାକୁ ଚିପ୍‌ସ୍, ସେଭ କରିବା ପାଇଁ କେତେଜଣ ବୁଝାଉଛି ସେଲ୍‌ସମ୍ୟାନ୍ । ସେ କଡ଼େ ମାଗଣାରେ ପାଣି ହାଣ୍ଡିସବୁ ରଖାଯାଇଛି । ସେଠି ବାବାଜୀ ଜଣେ ବିଭିନ୍ନ ଚେରମୂଳ ସହିତ ରୁଦ୍ରାକ୍ଷମାଳ ନେଇ ବସିଛନ୍ତି । ଚିତା ଚୈତନ୍ୟ ଲଗାଇ ହନୁମାନ ଫୋଟସହ ମଣିଷ ମୁଣ୍ଡର ଖପୁରୀ ଉପରେ ସିନ୍ଦୁର ଲଗାଇ ଜ୍ୟୋତିଷ ଜଣକ ହାତ ଦେଖାରେ ବ୍ୟସ୍ତ । ନିଜର ଭବିଷ୍ୟତ ଜାଣିବା ପାଇଁ କିଛି ପୁଅଝିଅ ଭିଡ଼ କରିଛନ୍ତି । ସ୍ତ୍ରୀଲୋକ କେତେଜଣ ବାଇସ୍କୋପ୍ ଦେଖୁଛନ୍ତି । ନାଲି କନାରେ ରୂପା, ଷିଇମୁଦି, ହାର, ଗୋଡ଼ମୁଦି, ଫାସିଆ, ଡେଉଁରିଆ, କଟୁରି ଧରି ଲୋକଟି ବସିଛି । ତାପାଖରେ ଫୁଲଦାନି, ଚା କପ୍ ପ୍ଲେଟ, ଗ୍ଲାସ ମଗ୍ ପ୍ରଭୃତି ବିକ୍ରି ହେଉଛି । ମନ୍ଦିରକୁ ଲାଗି ଭିକାରୀଙ୍କ ଆହ୍ୱାନ, ପ୍ରତିଯୋଗିତା ଲାଗିଛି କିଏ କେତେ କଅଁଳ ସ୍ୱରରେ ଦାତା ଦାତ୍ରୀଙ୍କୁ ଡାକି ପାରିବ । ଶିବ ମନ୍ଦିରରୁ ଘଣ୍ଟା ଶୁଭୁଛି, ନାଲି ନେତ ଉଡୁଛି । ଭୋଗ, ନଡ଼ିଆ ଦୋକାନରେ ଦୀପ, ନଡ଼ିଆ, ଧୂପ ବିକିବାରେ ଦୋକାନୀ ବ୍ୟସ୍ତ । ମନ୍ଦିରର ଅଳ୍ପଦୂରରେ ସାଇକେଲ, ଚପଲ ଷ୍ଟାଣ୍ଡ । ସେଠି ଚପଲ ରଖି ପାହାଚରୁ ଓହ୍ଲାଇଯିବା ନଈକୁ । ଗୋଡ଼ହାତ ଧୋଇ ମନ୍ଦିରକୁ ଯିବ ।

ଆମେ ଚାରିଜଣ ବାନ୍ଧବୀ ଏମୁଣ୍ଡରୁ ସେମୁଣ୍ଡ ମେଳା ବୁଲିବାକୁ ଆରମ୍ଭ କରିଥିଲୁ । ଏଇ କଲେଜରେ ନୂଆ ହୋଇ ଅଞ୍ଜନା, ମମତା ମୁଁ ଜୟେନ୍ କରିଛୁ । ବର୍ଣ୍ଣାଳୀ ମ୍ୟାଡ଼ମ୍ ଆମ ଆଗରୁ ଦିବର୍ଷ ହେଲା ଏଇ କଲେଜରେ । ପୁଣି ଏଇଠି ତାଙ୍କର ଶାଶୁଘର, ବାପଘର । ତେଣୁ ଆଜିର ମେଳାରେ ଗାଇଡ୍ ଭୂମିକା ସେ ହିଁ ନେଇଛନ୍ତି ।

ମେଳା ବୁଲୁ ବୁଲୁ ମମତା ପଇସା ଗଳାଇ ବାଇସ୍କୋପ ଦେଖିଲାବେଳେ ଅଞ୍ଜନା ପିପିଲି ଚାନ୍ଦୁଆର ଦାମ୍ ବୁଝୁଥିଲା । ବର୍ଣ୍ଣାଳୀ ମ୍ୟାଡ଼ମ୍ ତାଙ୍କ ମିଷ୍ଟରଙ୍କ ପାଇଁ ଭଲ ଉପହାରଟେ କିଣିବା ପାଇଁ ଖୋଜୁଥିଲେ । ଗହଳି ଭିତରେ ନାରୀ ପୁରୁଷର ଅପୂର୍ବ ସମାହାର ଓ ସମଗ୍ର ମେଳାକୁ କୌତୁହଳୀ ହେଇ ମୁଁ ଚାହିଁ ରହିଥିଲି । ତାପରେ ଆମେ ଚାରି ଝାଳନାଳ ହେଇ ବି ଉଠା ଷ୍ଟୁଡ଼ିଓରେ ଫଟୋଟେ ଉଠାଇଲୁ । ଘଣ୍ଟାକ ଭିତରେ ଫୋଟଟା ପାଇ ହସି ହସି ଗଡ଼ିଗଲୁ । କିଏ ଦାନ୍ତ ଦେଖାଇଛିତ କିଏ ଖତେଇ ହେଉଛି । ହଠାତ୍ ଫଟୋଟା ଦେଖୁ ଦେଖୁ ଅଞ୍ଜନାର ମୁହଁ ଥମ୍ ଥମ୍ ଦିଶିଲା । ସେ କେମିତି ତା ପଛଦିନର ଘଟଣା ଭିତରକୁ ପଶିଗଲା । ବହୁ ପଚାରିବା ପରେ କହିଲା, ଏମିତି ଏକ ମେଳାରେ ସେମାନେ ଭାଇଭଉଣୀ ଚାରିଜଣ ଫଟୋ ଉଠାଇଥିଲେ । ମେଳାରେ ବୁଲାବୁଲି, ଜିନିଷ କିଣାକିଣି ଭିତରେ କେମିତି ସାନ ଭାଇଟା ହଜିଗଲା । ଅନେକ ଖୋଜାଖୋଜି, ପୋଲିସ୍‌ରେ ଦେଲେ ବି ମିଳିନଥିଲା । ସେହିଦିନୁ ତାଙ୍କ ଘରେ କେହି ମେଳା ଯାନ୍ତି ନାହିଁ । ଆଜି ଏଇ ମେଳା, ଫଟୋ ଦେଖି ତାର ସେହି ହଜାଇ ଦେଇଥିବା ଭାଇଟିର କଥା ମନେ ପଡ଼ିଗଲା । କିଏ ଜାଣେ ସେ ବି ଆଜି ଏମିତି ଏଇ ମେଳାରେ ତାର ମା, ଭଉଣୀକୁ ଖୋଜି ହେଉଥିବ କିମ୍ବା କୌଣସି

ଦୋକାନରେ ସେଲ୍ସମ୍ୟାନ୍ ସାଜିଥିବ । କେତେ ବଡ଼ ହୋଇଯାଇଥିବ । କେମିତି ଚିହ୍ନିହେବ ?

ଏଇ ଅଞ୍ଜନା, ଅତୀତର ପୃଷ୍ଠା ଓଲଟାଇ ଆଜିର ମେଳାର ମଜାକୁ ନଷ୍ଟ କରି ଦିଅନା । ଏମିତି ଆମେ ଆମର ନିତିଦିନିଆ ଜୀବନରେ ସବୁବେଳେ ପଛଦିନକୁ ଦେଖୁଛୁ । ପାଇବା ହରାଇବାର ହିସାବ କେବେ ଆମର ପିଛା ଛାଡୁନାହିଁ । ଅଳ୍ପ ସମୟ ପାଇଁ ଏଇଠି ଆଜି ସବୁ ଭୁଲି ଯାଅ, ମେଳାର ଆନନ୍ଦରେ ମିଶାଇ ଦିଅ ନିଜକୁ କହି ମୁଁ ଟାଣିନେଲି ସମସ୍ତଙ୍କୁ ଚାଟ୍‌ବାଲା ପାଖକୁ । ଚାଟ୍‌ଖିଆ, ଗପ ଭିତରେ କ୍ଷଣକ ଆଗରୁ ଅନ୍ୟମନସ୍କା ହେଇଥିବା ଅଞ୍ଜନା ସ୍ୱାଭାବିକ ହେବାକୁ ଚେଷ୍ଟାକଲା । ଆକାଶରୁ ମେଘ ଅପସରି ଗଲା ।

ମନ୍ଦିର ପାହାଡ଼ ଭିତରୁ ଉଙ୍କି ମାରୁଥିଲା । ପାହାଚଗୁଡ଼ିକ ଅଙ୍କାବଙ୍କା ଭଳି ଲମ୍ବିଯାଇଥିଲା । ବୁଲାବୁଲି କରି ଫେରି ଆସିଲାବେଳକୁ ଆମ ଭିତରେ ମମତା ହିଁ ବେଶି ଥକ୍କା ହେଇ ବସିଗଲା । ତାର ଝାଳ ସରସର ଚେହେରା ଦେଖି ଆମେ ବ୍ୟସ୍ତ ହେଇ ପଡ଼ିଲୁ । ପାଣି ଆଣି ଛିଞ୍ଚି ଦେଲୁ । ତାର ଉଦାସ ଚେହେରା ଆଉ ଭାବନାରେ ଭାରାକ୍ରାନ୍ତ ଆଖି ଦେଖି କଣ ହେଲା ପଚାରିଲୁ । ଅନେକ ପଚାରିଲା ପରେ ସେ କହିଲା, ଏମିତି ଏକ ମେଳାରେ ସଞ୍ଜୟ ସହିତ ତାର ପରିଚୟ ହେଇଥିଲା । ଏମିତି ଏକ ମନ୍ଦିରରେ ସେମାନେ ଶପଥ କରିଥିଲେ ଜୀବନସାରା ପରସ୍ପରର ଛାଇ ହୋଇ ରହିବେ । କେହି କାହା ବିନା ବଞ୍ଚି ପାରିବେନି । କିନ୍ତୁ ଆଜି କେହି କାହା ଛାଇ ନ ହେଲେବି ବଞ୍ଚି ପାରିଛନ୍ତି । ଏ ମନ୍ଦିରକୁ ଚାହିଁ ତାର ମନେ ହେଉଛି ମଣିଷର ପ୍ରତିଜ୍ଞା କେତେ ମିଛ, ସ୍ୱପ୍ନ ଦେଖା କେତେ ଅଳିକ ।

ମୁଁ ତା ପାଖରେ ବସି ପଡ଼ିଲି । କହିଲି, ମମତା ! ଅତୀତକୁ ଅତୀତରେ ରଖିଦିଅ । ଯାହା ଚାଲିଯାଇଛି ତାକୁ ଯଦି ଫେରାଇ ଆଣି ହେବନି, ସୁଧାରି ହେବ ନାହିଁ ତେବେ ତା ପାଇଁ ମନ ଖରାପ କରି ବର୍ତ୍ତମାନକୁ ନଷ୍ଟ କରିବା କି ଦରକାର । ଚିନ୍ତାକର ଏ ଯେଉଁ ଘଟଣା ତମ ସହିତ ଘଟିଯାଇଛି ତାହା ପୃଥିବୀର ସର୍ବ ପ୍ରଥମ ଘଟଣା ନୁହେଁ । ଯା ଆଗରୁ ଅନେକଙ୍କ ଜୀବନରେ ଘଟିଛି ଓ ଆହୁରି ବି ଘଟିବ । ଜୀବନର ଗୋଟାଏ ଭୁଲ ସମଗ୍ର ଜୀବନର ନୁହେଁ ମମତା । ଗୋଟାଏ ଅସଫଳତା ସଂପୂର୍ଣ୍ଣ ଜୀବନର ବିଫଳତା ନୁହେଁ । ଜୀବନ ଯେ ଅନନ୍ତ ।

ତାବୋଲି... ଏହାକୁ... ମମତା କଣ କହିବାକୁ ଯାଇ କହିପାରିଲା ନାହିଁ । ବର୍ଣ୍ଣାଳୀ ମ୍ୟାଡ଼ାମ କହିଲେ ହଁ ମମତା, କିଛି ହଜି ଗଲେ ଏହା ହଜିଜିବାର ଥିଲା କହି ନିଜ ପାଇଁ ନିଜକୁ ସାନ୍ତ୍ୱନା ଯୋଗାଡ଼ କରିବାକୁ ହେବ । ଛାଡ଼, ଚାଲ କପେ କପେ ଚା ପି' ନେବା ।

ବେଞ୍ଚରେ ବସି ପଡ଼ିଲୁ ଆମେ ଚାରିଜଣ । ସ୍ୱେଶାଙ୍କ ଚା ଅର୍ଡ଼ର ଦିଆଗଲା । ଗରାଖମାନଙ୍କୁ ଦେଖି ଦୋକାନି ଗୀତ ଲଗାଇ ଦେଲା । ବର୍ଣ୍ଣାଳୀ ମ୍ୟାଡ଼ାମ୍ କହିଲେ,

ମେଳା ଦେଖି ମୋର ଗୋଟେ କଥା ମନେ ପଡୁଛି । ମୁଁ କହିଲି, ସିରିୟସ କଥା ନୁହେଁତ । ନହେଲେ ମୋତେ ପେର୍ ଆପଣଙ୍କୁ କିଛି ବୁଝାଇବା ପାଇଁ, ସାନ୍ତ୍ୱନା ଦେବା ପାଇଁ ଶବ୍ଦ ଖୋଜିବାକୁ ପଡ଼ିବ । ସେ କହିଲେ, ନାହିଁ ନାହିଁ । ସେମିତି କିଛି ନୁହେଁ । କଥାହେଲା ଆରଥର ମୋ ମିଷ୍ଟରଙ୍କ ସହ ବୁଲି ଆସିଥିଲି ମେଳାକୁ । ମୋ ପାଖରେ ଥିବା ଟଙ୍କାରେ ଏଣୁତେଣୁ କିଣି ସାରିଥିଲି । ହୋଟେଲରେ ପଶି ଖାଇସାରି ଏ ପର୍ସ ଅଣ୍ଡାଳିଲା ବେଳକୁ ପକେଟମାର ହୋଇଯାଇଛି । କଣ କରିବୁ । ଏ କହିଲେ କଣ ଜାଣ, ବନି, ତମେ ବନ୍ଧାପଡ଼ । ମୁଁ ଚାହିଁଲି । କେତେ ସ୍ୱାର୍ଥପର ଦେଖ । ନିଜେ ପର୍ସ ହଜାଇବେ, କହିବେ ସ୍ତ୍ରୀକୁ ବନ୍ଧାପଡ଼ିବାକୁ ।

ପେର୍ କଣ କଲେ ? ଆମେ ତିନିହେଁ ଏକାଠି ପଚାରିବସିଲୁ ।

ମୋ ମିଷ୍ଟର ତାଙ୍କ ଘଡ଼ି ବନ୍ଧା ଦେବାକୁ କହିବାରୁ ଦୋକାନି ମନାକଲା । କହିଲା ମେଳାତ କିଛିଦିନ ବସିବ । ସୁବିଧା ଦେଖି ଟଙ୍କା ଦେଇଯିବେ । ଏ ତା ପରଦିନ ଆସି ଦେଇଗଲେ । ଦେଖତ ଅଚିହ୍ନା ହେଲେବି ଦୋକାନିର କେତେ ବିଶ୍ୱାସ । ଏ ଯାଏଁ ଆମ ଭିତରୁ ସଂପୂର୍ଣ୍ଣ ବିଶ୍ୱାସ ହଜିଯାଇ ନାହିଁ ।

ହଁ, ମଣିଷ ମଣିଷକୁ କିଛିଟା ବିଶ୍ୱାସ କରିବା ଦରକାର । ଅଞ୍ଜନା କହିଲା ।

କିନ୍ତୁ ମେଳାରେ ବି ବିଶ୍ୱାସ ହଜିଯାଏ, ମମତା କହିଲା ।

ତଥାପି ଆଜିକାଲି ବିଶ୍ୱାସ ଆସ୍ତେ ଆସ୍ତେ ମହଙ୍ଗା ହେଇ ଯାଉଛି । ମୁଁ କହିପକାଇଲି ।

ମେଳା ଛାଡ଼ିଲାବେଳକୁ ସମସ୍ତଙ୍କର ଇଲେକ୍ଟ୍ରିକ୍ ଝୁଲାରେ ଝୁଲିବାକୁ ମନ ହେଲା । ମୁଁ କିନ୍ତୁ ମୁଣ୍ଡ ବୁଲାଇ ଦେବ କହି ପ୍ରତିବାଦ କରୁଥିଲି । କିନ୍ତୁ ତିନିବାନ୍ଧବୀ ଟାଣିନେଲେ । ଓହ୍ଲାଇଲା ବେଳକୁ ମୁଣ୍ଡମୋର କଣ ହେଇଗଲା । ତିନିହେଁ ବ୍ୟସ୍ତ ହେଇ ଉଠିଲାବେଳକୁ ମୁଁ ଅତୀତ ଭିତରେ ପସି ସାରିଥିଲି । ଅନେକ ବର୍ଷ ତଳେ ବୋଉ, ବାପା, ମୁଁ ମେଳାକୁ ଆସିଥିଲୁ । ଇଲେକ୍ଟ୍ରିକ୍ ଝୁଲାରୁ ଓହ୍ଲାଇଲାବେଳକୁ ବାପାଙ୍କର ଛାତି କଣ ହେଇଗଲା । ପାଣି ଆଣି ଦେଲାବେଳକୁ ସେ ଆଉ ନ ଥିଲେ । ଆଉ ଆଜି...

ଆମେ ସମସ୍ତେ ଏଥର ଶ୍ମଶାନଘାଟ ଗଲୁ ବୁଲିବାକୁ । ଥୁଣ୍ଟା ପଳାଶ ଗଛ କେତୋଟିରେ କଢ଼ି ଆସୁଛି । ଛୋଟବଡ଼ କେତୋଟି ସମାଧି । ଏମିତି ଏକ ଜାଗାରେ ବାପାଙ୍କର.. । ବର୍ଣ୍ଣାଳୀ ମ୍ୟାଡ଼ାମ୍ ମୋ କାନ୍ଧରେ ହାତ ରଖିଲେ । ତମେ ସମସ୍ତଙ୍କୁ ବୁଝାଉଥିଲ । ପାଇବା ହାରିବାର ଦର୍ଶନ ଶୁଣାଉଥିଲ ଆଉ ନିଜେ ଅବୁଝା ହେଇଗଲ କବିତା ? ନିଜ ପାଇଁ ସାନ୍ତ୍ୱନାର ଶବ୍ଦଟେ ଖର୍ଚ୍ଚ କରିବାରେ ଏତେ କାର୍ପଣ୍ୟ ତମର ? କାହିଁକି ! କିଏ ନ ହରାଇଛି କହିଲ । ଏଇ ଦେଖ ଶ୍ମଶାନ ଘାଟର ଏ ମୂର୍ତ୍ତିଗୁଡ଼ିକୁ । ଜନ୍ମରୁ

ମୃତ୍ୟୁ ଯାଏଁ ମଣିଷର ବିଭିନ୍ନ ଅବସ୍ଥାକୁ ନେଇ ସ୍କେଚ୍ୟସବୁ ଗଢ଼ା ହେଇଛି । ପିଲାଟି ଜନ୍ମ ହେଉଛି, ଗୁରୁଣ୍ଡୁଛି, ସ୍କୁଲ ଯାଉଛି, ଯୁବକ ପାଲଟୁଛି, ବାହା ହେଉଛି, ଛୁଆପିଲାର ବାପ ହେଉଛି, ବୁଢ଼ା ହେଉଛି ପୁଣି ଶ୍ମଶାନରେ ପୋଡ଼ା ହୋଇ ପାଉଁଶ ପାଲଟୁଛି । ଏହାହିଁ ଜୀବନର ସତ୍ୟତା । ନିଷ୍ଠୁର ସତ୍ୟ ପାଖରେ ମିଥ୍ୟା ଯୋଡ଼ା ହେଇଛି ବୋଲିତ ଜୀବନ ଏଡ଼େ ସୁନ୍ଦର । ସ୍ୱପ୍ନ, ଆଶା ଖଞ୍ଜା ହେଇଛି ବୋଲିତ ଜୀବନ ଆକର୍ଷଣୀୟ ଆଉ ମରଣ ନାମକ ପରିଣତିଟି ଅଛି ବୋଲିତ ଜୀବନ ଏତେ ଲୋଭନୀୟ । ଚାଲ ଆଉ କପେ କପେ ଚା ପିଇନେବା ।

ଆମେ ଚିୟର୍ସ କହି ଚା ଗ୍ଲାସ୍ ଉଠାଉଥିଲୁ ଓ ଯେ ଯାହାର ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଥିଲୁ । ପେଁକାଳି, ବେଲୁନର ଦୁନିଆ ଭିତରେ ହଜି ଯାଇଥିଲୁ । ଟିକିଏ ଆଗରୁ ଥିବା ସିରିୟସନେସ୍ କୁଆଡ଼େ ଉଡ଼ିଯାଇଥିଲା । ବାଦାମ ଚୋବାଇଲାବେଳକୁ ମନେ ହେଉଥିଲା, ନା ଜୀବନରେ ଦୁଃଖ ନାହିଁ, ହଜାଇବା ନାହିଁ । ଆଜି ଖୁସୀ, କାଲି ଖୁସୀ, ଖୁସୀର ତ ଏ ଜୀବନ ।



## ବଦଳି ଯାଉଥିବା ଜୀବନ

ମନେ ହେଉଛି ଯେମିତି ସେ ଏ ଘରେ କେବେ ଜନ୍ମି ନଥିଲା । ଏଇ ଘରର ମଣିଷମାନଙ୍କ ସହିତ ତା'ର ଯେମିତି କେବେହେଁ ପରିଚୟ ନଥିଲା । ଏଇଠି ଯେ ତା'ର ଦିନେ ବାଲ୍ୟ, କୈଶୋର, ଯୌବନର ପ୍ରଥମ ପାଦ କଟିଥିଲା, ସେକଥା ଭାବିଲେ ହିଁ ଆଶ୍ଚର୍ଯ୍ୟ ଲାଗୁଛି ।

ଏଇତ ଦଶ ବର୍ଷ ତଳେ ସେ ଏହି ଘର, ଏହି ମଣିଷମାନଙ୍କ, ଏଠିକାର ପରିବେଶ ସବୁକୁ ଛାଡ଼ି ଯାଇଥିଲା । ପାଞ୍ଚବର୍ଷ ତା'ର ଘର ବାହାରେ କଟିଥିଲା ପଢ଼ାପଢ଼ିରେ, ବାକି ପାଞ୍ଚବର୍ଷ ତା'ର କଟିଛି ଦେଶ ବାହାରେ । ହେଲେ ବର୍ଷବର୍ଷ କ'ଣ ଏମିତି ଦୀର୍ଘ ସମୟ ହୋଇଛି ଯେ ସବୁକିଛି ଭୁଲି ହୋଇଯିବ ? ଅତି ଚିହ୍ନା ମାଟି, ଜନ୍ମ ହୋଇଥିବା ସ୍ଥାନ ଏଡ଼େ ଅଚଣା ଲାଗିବ ? ଏପରିକି ନିଜ ବାପାଙ୍କର ମୁହଁ ବି ଝାପ୍‌ସା ଦୋ-ଦୋ ଚିହ୍ନା ଲାଗିବ ?

ପରିବର୍ତ୍ତନ ଭିତରେ ସେ ଟିକେ ମୋଟା ହୋଇଯାଇଛି । ବୟସ ଲାଗୁଛି ଆଉ ଘରେ ମା'ର ମୃତ୍ୟୁ ଘଟିଛି, ବାପା ଅଧିକ ବୁଢ଼ା ହୋଇଯାଇଛନ୍ତି । ବିଦେଶରେ ରହି ସେ ମା'ଙ୍କର ଦାରୁଣ ମୃତ୍ୟୁ ଖବର ଶୁଣିଥିଲା । ହେଲେ ପାଖ ହୋଇଛି ଯେ ଶୁଣିଲାମାତ୍ରେ ଧାଇଁ ଆସିବ । ଭିସା ପ୍ରଭୃତି ଯୋଗାଡ଼, ଚାକିରୀରୁ ଛୁଟି ନେଇ ଆସୁ ଆସୁ ଛ'ମାସ ଚାଲିଗଲା । ଏଇତ ସେ ଆଜି ଆସି ପହଁଞ୍ଚିଛି । ଗୁମାସ୍ତା ବସ୍‌ଷ୍ଟାଣ୍ଡ ଯାଇଥିଲା । ଘରେ ଆଉ କିଏ ଅଛି ଯେ ଆସିବ ? ବାପାତ ଆଜିକାଲି ଚଲାବୁଲା ଭଲ କରି ପାରୁନାହାନ୍ତି । ଆଉ ଭଲା ତାଙ୍କର ଗୋଟେ ପୁଅ କି ଝିଅ ଥା'ନ୍ତା !

ମା' ସେଇଥିପାଇଁ ତାକୁ ଆଦୌ ଦୂରକୁ ଛାଡ଼ିବାକୁ ରାଜି ହେଉ ନଥିଲେ । ଗୋଟେ ବୋଲି ପୁଅ । କ'ଣ ଅଭାବ ଯେ, ବିଦେଶରେ ରହି ସେ ପେଟ ପାଇଁ ଦାନା ସଂଗ୍ରହ କରିବ ? ବାପାତ କେବେ କିଛି କୁହନ୍ତି ନାହିଁ । ମା'ଙ୍କର ଯୁକ୍ତି କାଟ ଖାଇଲା । ସେ ବିଦେଶ ସେଇ ଯେ ଗଲା ଆଉ ଆସିବ ଆସିବ କହି ଆସି ପାରିଲାନି । ଯଦିବା ଆସିଲା ସେତେବେଳେ ଆକଟ କରୁଥିବା ଏ ଘରର ମମତାମୟୀ ଜଣକ ସବୁଦିନ ପାଇଁ ଚାଲିଯାଇଥିଲା ।

ବାପାଙ୍କୁ ସେ ପ୍ରଣାମ କଲା । ବାପା ତା'ର ମୁହଁ କପାଳସବୁ ଅଣ୍ଡାଳି ପକାଇଲେ । ସେ ବାପାଙ୍କୁ ଅନାଇଲା । ଦଶ ବର୍ଷ ଭିତରେ ଚେହେରାରେ ପୁଣି ଏତେ ପରିବର୍ତ୍ତନ ? ଏ

ରୁକ୍ଷ ଦାଢ଼ି, ଟାଆଁସିଆ କେଶ ତାଙ୍କର ତ ନଥିଲା । ଏ ଭିତରେ ବାପା ସତରେ ଏକ ଉପୁଡ଼ି ଯାଇଥିବା ଗଛଟେ ପାଲଟି ଯାଇଛନ୍ତି ।

ସେ ଘର ଭିତରେ ପଶିଲା । ସାର୍ଟ ବଦଳାଇଲା । ଏଡ଼େବଡ଼ ଘରଟା ଖାଁ ଖାଁ ଗୋଡ଼ାଉଛି । ଜଣେ ମଣିଷର ଅନୁପସ୍ଥିତିରେ ଏତେ ନିଃସଙ୍ଗ ଲାଗେ ଘର ? ହେଲେ ସବୁ ସେମିତି ରହିଛି । ଶୋଇବା ଘର ଓ ସେଠି ପଡ଼ିଥିବା ପଲଙ୍କ, ଦାଣ୍ଡଘର, ଠାକୁରଘର, ରୋଷେଇଘର । କେବଳ ଏସବୁକୁ ସଜାଡୁଥିବା ମଣିଷଟି ନାହିଁ । ତା'ର ହାତ ତିଆରି ସଂସାରଟା ସେମିତି ରହିଛି । ସେ ଘର ଚାରିପଟେ ଆଖି ବୁଲାଇ ନେଉଥିଲା ।

କ'ଣ ଦେଖୁଛୁରେ ? ତୋ ମା'ତ ମୋତେ ଦାଣ୍ଡରେ ବସାଇ ଚାଲିଗଲା... ବାପାଙ୍କ କଣ୍ଠରୁଦ୍ଧ ହୋଇଗଲା । ଏ ବୟସରେ ବାପା କାନ୍ଦୁଛନ୍ତି ସୁଁ ସୁଁ ହୋଇ । ଛ'ମାସ ଧରି ଚାପି ରହିଥିବା ରୁଦ୍ଧ ଯନ୍ତ୍ରଣା ସତେକି ସମୁଦ୍ର ପାଲଟି ଯାଉଛି । ବାପା କ'ଣ ତା' ଆଗରେ ସମୁଦ୍ର ପାଲଟି ଯିବେ ବୋଲି ତାକୁ ଛ'ମାସ ଧରି ବ୍ୟାକୁଳଭାବେ ଅପେକ୍ଷା କରିଥିଲେ ? ଛ'ମାସ ତଳେ ଘଟି ଯାଇଥିବା ସେହି ବିୟୋଗାନ୍ତକ ନାଟକ ଆଉ ପଇଁତିରିଶ ବର୍ଷରୁ ଊର୍ଦ୍ଧ୍ୱ ଘରସଂସାର କ'ଣ କମ୍ ହୋଇଛି ।

ମା'ର ଫଟୋ ଫୁଲମାଳ ଭିତରେ ଝୁଲା ହୋଇଛି । ତା' ଉପରେ ବୁଢ଼ୀଆଣି ଜାଲ । ସେ ଫଟୋକୁ ଚାହିଁଦେଲା ମାତ୍ରେ ଅନେକ ଅନେକ କଥା ମନେ ପଡ଼ିଗଲା । ତେବେ ସେ ବାପାଙ୍କ ବିଷୟରେ ହଠାତ୍ ସଚେତନ ହୋଇଉଠିଲା । ତାଙ୍କ କାନ୍ଧରେ ହାତ ପକାଇ ସାନ୍ତ୍ୱନା ଦେବାକୁ ଚେଷ୍ଟା କଲା । ଅନେକ ବର୍ଷ ତଳର କଥା ଆପଣାଛାଏଁ ଆଖି ଆଗରେ ଆସି ଝୁଲିପଡ଼ିଲା । ଏମିତି ଟିକିଏ କଥାରେ କାନ୍ଦିଲେ ବାପା ତା' କାନ୍ଧ ଥାପୁଡ଼ାଇ ବୁଝାଇବାକୁ ଚେଷ୍ଟା କରନ୍ତି । ଆଜି ବାପାଙ୍କ ଜାଗାରେ ସେ ଠିଆହୋଇ ସାନ୍ତ୍ୱନା ଦେଉଛି । ସେ ନିଜେ ସତେ କି ବାପା ପାଲଟି ଯାଇ ଅଝଟ ପୁଅକୁ ନ କାନ୍ଦିବା ପାଇଁ ବୁଝାଉଛି ।

ପ୍ରସଙ୍ଗ ବଦଳାଇବାକୁ ଯାଇ ସେ ବାପାଙ୍କୁ ପଚାରିଲା, ଆମର ଯେଉଁ ଶୁଆ ଚଢ଼େଇଟି ଥିଲା, ସେ କ'ଣ ଆଗଭଳି କଥା କହୁଛି ? ବାପା କରୁଣ ହସ ହସି ପକାଇଲେ । କହିଲେ, ଦଶ ବର୍ଷତଳର ଜିନିଷକୁ ଖୋଜୁଛୁ । ସେ ତ କେଉଁ ଦିନରୁ ମରିଗଲାଣି । ପଞ୍ଜୁରି ଖାଲି ପଡ଼ିଛି ।

ସତେତ ! ଲୁହା ପଞ୍ଜୁରିଟା ସେମିତି ଝୁଲୁଥିଲା । କଳଙ୍କିଲଗା ଅଳନ୍ଧୁଘେରା ପଞ୍ଜୁରୀଟା ଦଶ ବର୍ଷ ତଳର ନିର୍ମମ ସ୍ମୃତିକୁ ସାବ୍ୟସ୍ତ କରୁଥିଲା । ପକ୍ଷୀଟା ମଣିଷଭଳି ଅନେକ କଥା କହି ଶିଖିଥିଲା । ଦଶ ବର୍ଷ ତଳେ କ'ଣ ସେ ଏଠି ଛାଡ଼ିଯାଇଥିଲା, ଦଶବର୍ଷ ପରେ ତାକୁ ସେହି ଅବସ୍ଥାରେ ଦେଖିବାର ଆଶା କରିବାଟା କେଡ଼େ ମୂର୍ଖାମୀ ନୁହେଁ ।

ଚା ଆଣି ଦେଇଗଲେ ଗୁମାସ୍ତା ରାମକକା ।

ତମେ ପିଇବନି ରାମକକା ? ସେ ପଚାରିଲା ।

ହଁ ତ, ଭୁଲିଗଲିଣି କେତେ ସବୁକଥା । ରାମକକା ଚା' କରିଜାଣନ୍ତି କିନ୍ତୁ ପିଅନ୍ତି ନାହିଁ । ବିଦେଶରେ ଥିଲାବେଳେ ସେବି କ'ଣ କେବେବି ରାମକକାଙ୍କ ଭଳି ଜଣେ ମଣିଷ କଥା ମନେପକାଇଛି ? ଅଥଚ ସେ ତାକୁ କୋଳ କରି ବଢ଼ାଇଛନ୍ତି । କେତେଥର କାଖେଇକି ସ୍କୁଲ ନେଇ ଯାଇଛନ୍ତି । ଅନେକ ଥର ମାଡ଼ରୁ ବଞ୍ଚାଇଛନ୍ତି । ସେହି ରାମକକା ଯେ ଚା' ପିଅନ୍ତି ନାହିଁ କେବେ ଏକଥା ସେ ଭୁଲିଯାଇଛି ।

ଅନେକ ଦିନପରେ ସେ ଅତୀତକୁ ଚାହୁଁଥିଲା । ଅନେକ ଜିନିଷ, ଅନେକ ମଣିଷ ଅନେକ ପରିଚୟ ସବୁକିଛିକୁ ସେ ଭୁଲିଗଲାଣି । ଯାହା ବି ମନେ ଅଛି ଝାପ୍‌ସା ଝାପ୍‌ସା । ଯେତେ ବଡ଼ ହେଉଛି ସେତେ ପୁରୁଣା ମୁହଁ ସବୁ ତା' ସ୍ମୃତିକୋଠରୀରୁ ଲିଭିଲିଭି ଯାଇଛି । ଏମିତି କ'ଣ ହୁଏ ସବୁ ଜୀବନରେ ନା ତାରି ଖାଲି ହେଉଛି ? ତା' ଭିତରେ ଯେଉଁ ଓଲଟ ପାଲଟ ହେଇଯାଉଛି, ତାହା କ'ଣ ପ୍ରତିଟି ଜୀବନରେ ଛାଏଁ ଛାଏଁ ହୁଏ ?

ଘର ଅଗଣାକୁ ଆସିଲା ସେ । ଏ ଭିତରେ ଗଙ୍ଗଶିଉଳି ଗଛଟା ବି ବୁଢ଼ା ହୋଇ ଗଲାଣି । କେବେ ଲଗାଯାଇଥିଲା କେଜାଣି । ତଥାପି ଧଳା ଫୁଲସବୁ ପକ୍‌କା ଚଟାଣ ଉପରେ ବିଛେଇ ହୋଇଯାଇଛି । ଏଇ ଗଛଟା ମୂଳରେ ସ୍ମୃତିର ଚିହ୍ନ ବି କିଛି କମ୍ ନୁହେଁ । ଆଉ ସେ ଯେଉଁ ଲେମ୍ବୁ ଗଛମୂଳେ ଦିନେ ପାଣି ଢ଼ାଳିଥିଲା । ସେଇଟାରେ ଫଳ ହେଲାଣି । କୂଅର ଚାନ୍ଦିନୀରୁ ଠାଏଁ ଠାଏଁ ପଲସ୍ତରା ଛାଡ଼ିଗଲାଣି । ତୁଳସୀ ଚଉତରା ସେମିତି ପଡ଼ିଛି ହେଲେ ଗଛ ନାହିଁ । ତାରି ଜାଗାରେ ଶୁଖିଲା ତୁଳସୀ ଗଛଟେ ଥୁଣ୍ଟା ହୋଇ ଛିଡ଼ା ହୋଇଛି ଓ ସାବ୍ୟସ୍ତ କରୁଛି ନିଜର ଅତୀତର ସବୁଜ ଦିନଗୁଡ଼ିକର କଥା । ଜୀବନଟା ଠିକ୍ ଏମିତି । କେତେବେଳେ ଛନଛନ ଶୁଖିଲା ଗଛଟାଏତ ପୁଣି କେତେବେଳେ ଥୁଣ୍ଟା ଶୁଖିଲା ଫସିଲ୍ ।

ରାମ କକା କେତେବେଳୁ ଆସି ଠିଆ ହୋଇଥିଲେ । ତୁଳସୀ ଗଛଟାକୁ ଚାହିଁଥିବା ଦେଖି ସେ କହିଲେ, ମା' ଗଲାଠାରୁ ବାବୁ ତୁଳସୀ ମୂଳରେ ପାଣି ଢ଼ାଳିବାକୁ ମନା କରିଛନ୍ତି । ତାଙ୍କର ତ ଧର୍ମକର୍ମ, ଦେବାଦେବୀ ଉପରୁ ସବୁକିଛି ବିଶ୍ୱାସ ତୁଟି ଯାଇଛି ।

ବିଶ୍ୱାସ ତୁଟି ଯାଇଛି ? ବୋଉ କ'ଣ ତାଙ୍କର ସବୁ ବିଶ୍ୱାସର ହେତୁ ଥିଲା ? ଦିନ ଥିଲା ବାପା ତୁଳସୀ ମୂଳରେ ଗାଧୋଇସାରି ପାଣି ନ ଢ଼ାଳିଲା ଯାଏଁ ଚା'କପେ ମଧ ପିଉନଥିଲେ । ଅଥଚ ସେହି ବାପା ଗଛରେ ପାଣି ଢ଼ାଳିବାକୁ ମନା କରିଛନ୍ତି । ତାଙ୍କ ବିଶ୍ୱାସର ତୁଳସୀ ଗଛଟା ପାଣି ନପାଇ ଶୁଖି ଆସୁଥିଲା ବେଳେ ସେ କ'ଣ ନିଜ ଭିତରେ ତିଳେ ତିଳେ ଯନ୍ତ୍ରଣା ଅନୁଭବ କରି ନାହାନ୍ତି ? ନା ନିଜ କ୍ରନ୍ଦନରେ ସେ ନିଜ ବିଶ୍ୱାସର ତୁଳସୀ ଗଛଟାକୁ ଜଳାଇ ଦେଇଛନ୍ତି ?

ବାପା ସତରେ କେତେ ବଦଳି ନ ଯାଇଛନ୍ତି !

ସେ ଆକାଶକୁ ଅନାଇଲା । ଅନାଇଲା ଲେମ୍ବୁ ଗଛର ଛାଇକୁ, ପଲସ୍ତରା ଛାଡ଼ି ଯାଇଥିବା କୂଅକୁ । ଶୁଖି ଯାଇଥିବା ତୁଳସୀ ଗଛକୁ ଆଉ ତା'ପରେ ରାମକକାକୁ । କିଛି ପଚାରିଲାନି ସେ । କେବଳ ଅନୁଭବ କଲା ବାହାରର ଏଇ ବଉଳ ଗଛ, କୂଅର ଚାନ୍ଦିନୀ, ଲେମ୍ବୁଗଛର ଛାଇର କେବଳ ପରିବର୍ତ୍ତନ ହୋଇନାହିଁ, ଏ ଘରେ ରହୁଥିବା ମଣିଷର ପରିବର୍ତ୍ତନ ହୋଇଛି ଟିକେ ବେଶି । ତା'ପରେ ନିଜକୁ ଅନାଇଲା । ସେ ନିଜେ ବି କେତେ ବଦଳି ନ ଯାଇଛି । ଦଶବର୍ଷ ଭିତରେ ତା ଚେହେରାରେ କ'ଣ କମ୍ ପରିବର୍ତ୍ତନ ହୋଇଛି । କେତେ ବଦଳି ଯାଉଛି ଦିନକୁ ଦିନ ଏ ଜୀବନର ଯାତ୍ରା । ବଦଳି ଯାଉଛି ମନ, ବଦଳୁଛି ବି ସମୟ, ତା ସହିତ ନିଜର ଚେତନା, ପରିବେଶ, ପରିସ୍ଥିତି, ବୟସ ସବୁକିଛି । ସବୁ ବଦଳିବା ଭିତରେ କିନ୍ତୁ କେତୋଟି ନିଚ୍ଛକ ସ୍ମୃତିର ପରିବର୍ତ୍ତନ ହେଉନାହିଁ । ସେ ସବୁ ଯଥା ସ୍ଥାନରେ ସେମିତି ପଡ଼ିରହିଛି ।

ଏଥର ସେ ଉଠିପଡ଼ି ଝୁଲୁଥିବା ଶୂନ୍ୟ ପଞ୍ଜୁରିଟା ଭିତରେ ହାତ ଭର୍ତ୍ତିକରି ଘୁରାଇବାକୁ ଲାଗିଲା । ପଞ୍ଜୁରି ଘୁରୁଛି, ଦ୍ୱାରା ଖୋଲା । ମନେ ପଡୁଛି ସେହି ନାଲି ଥଣ୍ଟ, ବେକରେ କଳାଗାର ଥିବା ଶୁଆ ପକ୍ଷୀଟିର କଥା । ହାତ ଦେଖାଇଲେ ସେ ପଞ୍ଜୁରିରୁ ବାହାରି ଆସି କାନ୍ଧ ଉପରେ ବସୁଥିଲା । ସତେ ଯେପରି ମଣିଷର ଭାଷା, ତା'ର ଅନୁଭବକୁ ପକ୍ଷୀଟା ବୁଝି ଦେଉଥିଲା । ପକ୍ଷୀଟିର ଜୀବନ ସହିତ କିନ୍ତୁ ମା'ଙ୍କ ଜୀବନର ଅଦ୍ଭୁତ ସାମଞ୍ଜସ୍ୟ ଥିଲା । ମା'ବି ତ ସଂସାର ପଞ୍ଜୁରି ଭିତରେ ବର୍ଷ ବର୍ଷ ଧରି ଘାଣ୍ଟି ହେଉଥିଲା । ସେ ମୁକ୍ତି ପାଇଗଲା ପରେ ଏବେ ବାପା ଘର ରୂପକ ଶୂନ୍ୟ ପଞ୍ଜୁରିଟାକୁ ଅଭିଶପ୍ତ ଯକ୍ଷ ଭଳି ଜଗିରହି ଖାଲି ଝୁରି ହେଉଛନ୍ତି ।

ରାମକକା କିଛି ଭୁଲି ନାହିଁ । ସେ କ'ଣ ଖାଇବାକୁ ଦିନେ ଭଲ ପାଇଥିଲା ମନେ ରଖିଛି । ଅଥଚ ଏବେ ତାହା ଖାଇବାକୁ ସେ ସୁଖ ମଣୁଛି ନା ନାହିଁ କି ସେ ଅଭ୍ୟାସ ଛାଡ଼ି ଗଲାଣି ସେ ପ୍ରଶ୍ନ ପଚାରୁ ନାହିଁ । କାରଣ ତା'ର ବିଶ୍ୱାସ ଅଛି ଚାଉଳ କ୍ଷୀରି ଚାମଚଟା ପାଟିରେ ପୂରାଇଲେ ସାନବାବୁ ଶୈଶବ ଫେରି ପାଇବେ । ଫେରିପାଇବେ ତାଙ୍କର ଛାଡ଼ି ଯାଇଥିବା ସ୍ମୃତିକୁ, ଭୁଲି ଯାଇଥିବା ଦିନଗୁଡ଼ିକୁ । ହୁଏତ ସେହି ପିଲାଦିନ କଥା ଜିଆଁଇ ଦେବା ପାଇଁ ରାମକକା ଅନେକ ବର୍ଷ ପରେ ପରମ ଆନନ୍ଦରେ ଚାଉଳ କ୍ଷୀରି ରାନ୍ଧି ବସୁଛି । ବିଦେଶରେ ରହି କିନ୍ତୁ ସେ ଏତେଗୁଡ଼ା ବର୍ଷ ଭିତରେ ଭୁଲି ଗଲାଣି ତା'ର ସ୍ୱାଦ, ତା'ର ବାସ୍ନା । ଆଜି ପୁଣି ଥରେ ଅନେକ ବର୍ଷ ପରେ ସେ ଚାଉଳ କ୍ଷୀରି ଭିତରେ ପୁରୁଣା ସ୍ୱାଦ ଚାଖିବ, ହଜି ଯାଇଥିବା ବାସ୍ନା ଶୁଙ୍ଘିବ । ପୁଣି କଅଁଳି ଉଠିବ ସେହି ହଜିଯାଇଥିବା ଦିନ ସବୁ । ପୁଣି ଅତି ପୁରାତନ ଆପଣା ଆପଣା ବାସ୍ନାରେ ସେ ମହକି ଉଠିବ ।

ସେ ସେହି ସମୟରେ ଘର ଭିତରେ, ଅଗଣା ସାରା ଏକ ଅନ୍ତରଙ୍ଗତାର ବାତାବରଣରେ ଆତ୍ମହରା ହୋଇ ଉଠିଲା । ତା'ର ହଠାତ୍ ମନେ ହେଲା ବଦଳି ଚାଲିଥିବା ଜୀବନଧାରା ଭିତରେ ଏମିତି ବି କିଛି ଏକ ଖିଅ ରହିଥାଏ, ଯାହାକୁ ଆଶ୍ରୟ କରି ବହୁବର୍ଷ ପରେବି କ୍ଷଣକ ପାଇଁ ହେଲେବି ଗାଁ ମାଟିରେ, ଜନ୍ମଭୂଇଁରେ ମଣିଷ ତା'ର ପିଲାଦିନକୁ ଖୋଜିପାଏ । ଯାହାକୁକି ହଜାଇବି ହଜାଇ ହୁଏନା, ପାଶୋରିବି ସଂପୂର୍ଣ୍ଣ ପାଶୋରି ହୁଏନା; ଏଇ ଟିକକ ସତେକି ପ୍ରତିଟି ମଣିଷର ପରିଚୟ, ପ୍ରତିଟି ମଣିଷ ଭିତରର ଅହଂ, ଯାହାକି ଜଣକ ଠାରୁ ଅନ୍ୟ ଜଣକୁ ଭିନ୍ନ କରି ଚିହ୍ନାଇଦିଏ । ପିଲାଦିନକୁ ଯେ ବାହ୍ୟ ଚାକଚକ୍ୟ ଭିତରେ କେବେ ମନେ ପକାଇ ପାରେନା, ନିଜ ଭିତରେ ଚିହ୍ନା ମାଟିରେବି ତାକୁ ଖୋଜି ପାଏନା ତାର ଆଉ ଗୋଟିଏ ନିଜସ୍ୱ ପରିଚୟ ହୋଇ କ'ଣ ରହେ ସତେ !



# ଅଧିକାର ଠାରୁ ଦୂରରେ

ସବୁ ବଦଳି ଯାଉଛି କେମିତି କେମିତି କେଜାଣି । ବୟସ, ସ୍ୱପ୍ନ, ଆବେଗ, ପରିବେଶ, ଚିନ୍ତାଧାରା ସବୁଥିରେ ବଦଳିବାର ଚିହ୍ନ । ଅଥଚ ଏହି ପରିବର୍ତ୍ତନ ଟିକକକୁ ଗ୍ରହଣ କରିନେଇ ପାରୁନାହିଁ ସ୍ୱାତୀ । ପରିବର୍ତ୍ତନର ସ୍ରୋତରେ ନିଜକୁ ସେ ସାମିଲ କରିନେଇ ପାରୁନାହିଁ । ଏଡ଼େ ବଡ଼ ସଂସାରରେ ଆପଣାର ବୋଲି ଅଧିକାର ସାବ୍ୟସ୍ତ କରିବାକୁ ଯାଇ ସେ ଦେଖୁଛି ତା ପାଖରେ କିଛି ନାହିଁ । ଏଇ ଫୁଲ, ଫଳ, ପକ୍ଷୀ, ଆକାଶ, ଯେଉଁ ମାଟି ଉପରେ ସେ ନିଜେ ଛିଡ଼ା ହୋଇଛି ସବୁତ ପ୍ରକୃତିର । ଏ ଦେହବିତ ତା'ର ନୁହେଁ, ସ୍ରଷ୍ଟା ଈଶ୍ୱରଙ୍କର । ତା ହେଲେ ସେ ଏ ଦେହ ଭିତରେ ଭର୍ତ୍ତି ହୋଇଥିବା ସ୍ୱପ୍ନ, ଆବେଗ, କର୍ମଫଳ, ପାପପୂଣ୍ୟ ସବୁକିଛିକୁ କ'ଣ ଈଶ୍ୱରଙ୍କ ପାଦତଳେ ସମର୍ପିତ କରି ଦେଇ ନିଶ୍ଚିନ୍ତ ହେଇଯିବ ?

ଦିନ ଥିଲା ଏ ଘର ତା'ର ଅତି ଆପଣାର ଥିଲା । ବାପା ମା', ଭାଇ ଭଉଣୀ କେତେ ନିଜର ନଥିଲେ ? ସେ ନିଜକୁ ସଂସାରର ସବୁଠାରୁ ସୁଖୀ ମନେ କରୁଥିଲା । ଭାବିଥିଲା ଜୀବନଟା ଏମିତି ଦଟିଯିବ ଭଲରେ ଭଲରେ । ସାନ ଝିଅ ବୋଲି ସମସ୍ତେ ତାକୁ ଖୁବ୍ ଗେହ୍ଲା କରୁଥିଲେ । ବାପା ତା ଲାଗି ଅଲଗା କୋଠରୀର ବନ୍ଦୋବସ୍ତ କରି ଦେଇଥିଲେ । ତାର ପଲଙ୍କ, ଚେୟାର ବିଛଣା ସବୁ ଅଲଗା ଥିଲା । ର୍‌ୟାକ୍‌ରେ ଭର୍ତ୍ତି ଶାଢ଼ୀ, ଆଲମୀରାରେ ବହି, ଥାକରେ ରେଡ଼ିଓ, ଟେପ୍‌ରେକର୍ଡରୁ ଆରମ୍ଭ କରି ପ୍ରସାଧନ ଦୁନିଆ ଜିନିଷ ଥିଲା । ସେ କୋଠରୀରେ ଚାଲିଥିଲା ତା'ର ଆଧିପତ୍ୟ, ଅନ୍ୟମାନଙ୍କ ନିମନ୍ତେ ପ୍ରବେଶ ନିଷେଧ । ସେ କୁଆଡ଼େ ଗଲେ ଚାବି ଦେଇ ଯାଉଥିଲା କାଳେ ତା ସୁସଜ୍ଜିତ ରୁମ୍‌କୁ କେହି ଘାଣ୍ଟିଦେବେ ବୋଲି । ଏପରିକି ବଡ଼ ଭାଇଙ୍କୁ ମଧ୍ୟ ସେ ପଶିବାକୁ ଦେଉ ନଥିଲା । ଭାଇଙ୍କ ହାତରେ ରାକ୍ଷୀ ବାନ୍ଧିବା ବେଳେ ସେ ନିଜକୁ ଗୌରବାନ୍ୱିତ ମନେ କରୁଥିଲା । ବାପା, ବୋଉ କିଛିରେ ତା ଇଚ୍ଛା ବିରୁଦ୍ଧରେ ପ୍ରତିବାଦ କରୁ ନଥିଲେ । ସତେତ ତା ବାପା ବୋଉ କେବଳ ତା'ର; ଏକାନ୍ତ ନିଜର । ବଗିଚାରେ ମାଳୀ ଦେଖିଲା ମାତ୍ରେ ସ୍ୱାତୀକୁ ସମ୍ଭ୍ରମରେ ସମ୍ମାନ ଜଣାଉଥିଲା । ବଗିଚାରେ ଫୁଲମାନେ ବି ଯେମିତି ତାକୁ ମୁଣ୍ଡ ହଲାଉଥିଲେ । ପକ୍ଷୀଟିଏ ଭଳି ସେ ବଗିଚାସାରା ଘୁରି ବୁଲୁଥିଲା । କହିଲାମାତ୍ରେ ଘରେ ତାର ସବୁ ଇଚ୍ଛା ପୂର୍ଣ୍ଣ ହେଇ ଯାଉଥିଲା । ଗଣ୍ଡି ବସିଲେ ଘରେ ସମସ୍ତେ ବ୍ୟସ୍ତ ହେଇ ପଡୁଥିଲେ ।

ପୁଣି ଦିନେ ସ୍ନାତା ଜୀବନରେ ପରିବର୍ତ୍ତନ ଆସିଲା । ଘରେ ବାଜା ବାଜିଲା, ବ୍ରାହ୍ମଣ ମନ୍ତ୍ର ପଢ଼ିଲେ । ସେ ବଧୂ ହୋଇ ଶାଶୂ ଘରକୁ ଚାଲିଗଲା । ଗୋଟିଏ ଅଚିହ୍ନା ଘରେ ନିଜକୁ ବହୁ ଭାବରେ ବାଣ୍ଟି ଦେବାକୁ ପଡ଼ିଲା । କେତେ କାହାର ମନନେଇ ଚଳିବାକୁ ପଡ଼ିଲା । ନିଜର ଅଭିମାନର ସେ ଘରେ କିଛି ମୂଲ୍ୟ ନଥିଲା । ବରଂ ଅନ୍ୟମାନଙ୍କ ଅଭିମାନକୁ ଭାଙ୍ଗିବାକୁ ସେ ଯତ୍ନ କଲା । କେତେ ଅନଭିଜ୍ଞ ଅନୁଭୂତି ସହିତ ସେ ଏକାତ୍ମ ହେଇ ପଡ଼ିଲା ।

ହେଲେ କଣ ହେଲା ? ସ୍ୱାମୀ ବୋଲି ଯାହାକୁ ସେ ନିଜର ମାନିନେଇ ଥିଲା ସେ ପୁଣି ଆଉ ଜଣକୁ ନେଇ ଆସିଲେ । କହିଲେ, ଆମର ସମ୍ପର୍କ ତମଠାରୁ ବି ଖୁବ୍ ପୁରୁଣା ସ୍ନାତା । ବାପାଙ୍କର ଅମାନ୍ୟ ନ ହେଇ ତମକୁ ବାହାହେଇ ପଡ଼ିଥିଲି । ହେଲେ ଏବେ ଅନୁଭବ କଲି ତା ବିନା ବଞ୍ଚିବା ସମ୍ଭବ ନୁହେଁ । ତେଣୁ... ନା, ସେ ବାକିର ବାକି ଅଂଶ ସେ ଶୁଣି ପାରି ନଥିଲା । ହେଲେ ଯାହା ସତ୍ୟ ତାକୁ ସେ ସ୍ୱୀକୃତି ନ ଦେଇଥାନ୍ତା କିପରି ?

ସ୍ୱାମୀ ଉପରେ ତା'ର ଆଉ ଅଧିକାର ନଥିଲା । ଗହଣା, ଶାଢ଼ୀରେ ସାଧବ ବୋହୂ ସାଜି ଘରର ଶୋଭାବର୍ଦ୍ଧନ କରିବା ଛଡ଼ା ଏଠି ଯେମିତି ତା'ର ଆଉ ଅନ୍ୟ କିଛି ମୂଲ୍ୟ ନଥିଲା । ଦିନେ ତାହାର ଅନୁଭବ ହେଲା ଯେଉଁ ଶଙ୍ଖା, ସିନ୍ଦୂର ସେ ନିଜେ ନାଇଛି ତାହା ଭାଗ ହେଇ ଯାଇଛି । ଆଉ ଯେତେବେଳେ ଦିନକୁଦିନ ସଉତୁଣୀର ଅତ୍ୟାଚାର, ନିର୍ଯ୍ୟାତନା ବଢ଼ିଲା, ସହିବାର ସୀମା ଟପିଗଲା ସ୍ନାତା ବାପଘରକୁ ସବୁଦିନ ପାଇଁ ଚାଲି ଆସିବାକୁ ସ୍ଥିର କଲା ।

ଶାଶୁଘର ଛାଡ଼ିଲାବେଳେ ସେ ଥରେମାତ୍ର ପଛକୁ ଚାହିଁଥିଲା । କେହି ଜଣେ ଅଟକାଇବାକୁ ନ ଥିଲେ । ଶ୍ୱଶୁର ଥିଲେ ହୁଏତ ଆଜି ଏ ଦୃଶ୍ୟ ତାକୁ ଦେଖିବାକୁ ପଡ଼ି ନଥାନ୍ତା । କେତେ ସ୍ୱପ୍ନ ନେଇ ସେ ଏଠିକୁ ନ ଆସିଥିଲା । ଅଥଚ... ଜଣେ କେହି ବିଦାୟ ଦେବାକୁ ବି ନାହିଁ ।

ନିଜ ଘରପାଖ ବସ୍‌ଷ୍ଟାଣ୍ଡରେ ଅନେକ ଦିନ ପରେ ଓହ୍ଲାଇଲା ସ୍ନାତା । ପିଲାଟି ଦିନରୁ ଦେଖି ଆସୁଥିବା ବସ୍‌ଷ୍ଟାଣ୍ଡ ବି ନିଜର ମନେ ହେଲା ନାହିଁ । ଘରେ ତାକୁ ଦେଖି କେହି ସେତେ ଖୁସି ହେଲେ ନାହିଁ । ସମସ୍ତଙ୍କ ଆଖିରେ ପ୍ରଶ୍ନବାଚୀ ଥିଲା ତୁ ଶଶୁର ଘରୁ ପଳାଇ ଆସିଲୁ ? ଏଇ ଘରେ ଦିନେ ନ ରହିଲେ ଘର କୁଆଡ଼େ ଖାଲି ଲାଗୁଥିଲା କିନ୍ତୁ ଆଜି ? ଝିଅ ବାହା ହେଇ ଗଲା ପରେ ବାପ ଘରେ ଏତେ ଅବାଞ୍ଛିତ ପାଇଟିଯାଏ ?

ଏ ଭିତରେ ଭାଉଜ ଆସିଯାଇଥିଲେ । ଭାଉଜ ହିଁ ତା ସ୍ଥାନ ଅଧିକାର କରି ନେଇଥିଲେ । ନିଜ ଘରେ ସେ ଯେ ଅତିଥି ଏକଥା ଦିନ କେଇଟାରେ ସ୍ନାତା ଜାଣି ପାରିଥିଲା । ଯେଉଁ ଘରଟାରେ ସେ ଦୀର୍ଘ ବାଇଶ ବର୍ଷ କଟାଇ ଥିଲା ଓ ଯେଉଁ କୋଠରୀରେ

ତାଲା ପକାଇ ସେ କଲେଜ ଯାଉଥିଲା ଓ ବଡ଼ ଭାଇବି ପଶିବାକୁ ସାହସ କରୁ ନଥିଲା ସେ ଘରଟା ଭାଇଙ୍କର ଓ ପିଲାମାନଙ୍କର ପଢ଼ାଘର ହେଉଛି । ସେଠିକା ର୍ୟାକ୍‌ରେ ଆଉ ତା'ର ଶାଢ଼ୀ ଝୁଲୁନାହିଁ । ଯେଉଁ ଆଲମୀରାରେ ସେ ବହି ରଖୁଥିଲା, ଭାଉଜ ସେଠି ବାସନ, କପ୍ ପ୍ଲେଟ ରଖୁଛନ୍ତି । ସେ ଯେଉଁ ପଲଙ୍କରେ ଶୋଉଥିଲା ସେଟା ଦାଣ୍ଡଘରେ ପଡ଼ିଛି ଓ ଭାଉଜଙ୍କ ବାପଘରୁ କିଏ ଆସିଲେ ସେ ଖଟଟା ବ୍ୟବହୃତ ହେଉଛି । ତା'ର ପ୍ରିୟ ରେଡ଼ିଓଟା ତା ଭଳି ଏ ଭିତରେ ଅକାମି ହେଇ ଯାଇଛି । ତା ଛଡ଼ା ସମସ୍ତଙ୍କ ମୁହଁ ଏତେ ଅଜଣା ଲାଗୁଛି କାହିଁକି ? ଯେଉଁ ବଗିଚାରେ ସେ ନିଜେ ପକ୍ଷୀ ଭଳି ବୁଲୁଥିଲା, ଅନେକ ଗଛ ନିଜ ହାତରେ ଲଗାଇଥିଲା, ଫୁଲ ଆଣି ମୁଣ୍ଡରେ ମାରୁଥିଲା, ଗୁଣୁଗୁଣୁ ଗୀତ ଗାଇଥିଲା ସେ ବଗିଚାରେ ଆଜି ଭାଉଜଙ୍କର ଅଧିକାର । ତାକୁ ଫୁଲ ଛିଡ଼ାଇବାକୁ ମନା । ମାଳିବି ଆଜି ଦେଖି ଅଦେଖା । ସତରେ ଏ ଭିତରେ କେତେ ବଦଳି ଗଲାଣି ଏ ଘର ଆଉ ତା' ନିଜ ଜୀବନ ! ନିଜ ହାତରେ ବଢ଼ାଇଥିବା ଗଛ ଗୁଡ଼ିକ ବି ଅଚିହ୍ନା ଲାଗୁଛନ୍ତି । ହଁ, ନିଜକୁ ନିଜର କହିବାର ଅଧିକାର ତା'ର ସେଦିନ ସରିଯାଇଥିଲା, ଯେଉଁଦିନ ସ୍ୱାମୀ ତାର ଦ୍ୱିତୀୟ ବିବାହ କରିଥିଲେ । ଆଉ ତା'ପରେ ? ସେ ଅନୁଭବ କରୁଛି ଜୀବନର ସବୁ ମାୟା ମମତା ତା'ଠାରୁ ସମସ୍ତଙ୍କର କଟି ଯାଇଛି । ସେ ବଡ଼ ଅଲୋଡ଼ା ହେଇ ପଡ଼ିଛନ୍ତି ଶାଶୁ ଘରେ, ବାପ ଘରେ ।

ଏମିତି କାହିଁକି ଘଟିଲା ? କାହିଁକି ? ତା'ର କ'ଣ ଦୋଷ ଥିଲା ? ଥରେ ମାତ୍ର କ୍ଷମା ମାଗିବାର ସୁଯୋଗ କିଆଁ ତାକୁ ମିଳିଲା ନାହିଁ ? ଦିନ ସରି ଯାଇଛି, ସଞ୍ଜ ଆସୁଛି । କ୍ୟାଲେଣ୍ଡରର ପୃଷ୍ଠା ଓଲଟୁଛି, ସମୟ ସରୁଛି, ବୟସ ବଢୁଛି । ଅଥଚ ଆଶ୍ଚର୍ଯ୍ୟ ! ତା'ଠୁ ନିଜ ଘର ଭିତରର ପରିବର୍ତ୍ତନ ଏତେ ବେଶୀ ? ଏତେ ଆପଣାର ଲୋକ ହେଇଯା'ନ୍ତି ଏତେ ପର ?

ସ୍ୱାତୀ ନିଜକୁ ପ୍ରକୃତିସ୍ଥ କରିବାକୁ ଚେଷ୍ଟାକଲା । କେଉଁଠି ଥାଏ ଏତେ ଆବେଗ ଯେ ସେ ଗୋଟିପଣେ ଓଦା ହୋଇଯାଏ ? କେଉଁଠି ଥାଏ ଏତେ ଭାବପ୍ରବଣତା ଯେ ସେ ବିହ୍ୱଳ ହେଇପଡ଼େ ? ଅଥଚ ସେହି ମୁହୂର୍ତ୍ତ ପାରି ହେଇଗଲା ପରେ ସେ ଚୁପଚାପ୍ ଯେମିତି ନିସ୍ତରଙ୍ଗ ପୋଖରିଟେ ।

ହଁ ତ, ସମୟ ତାକୁ ଆଜି ବହୁଦୂରକୁ ଠେଲି ଦେଇଛି । ଦିନେ ଯାହା ନିଜର ଥିଲା, ଆଜି ତାହାକୁ ନିଜର କହିବାକୁ ବି ଭୟ ହେଉଛି । ଦିନେ ଯେଉଁଠି ଦାବୀ ଥିଲା ଆଜି ସେଠି ଅଧିକାରର ହିଁ ପ୍ରଶ୍ନ ଉଠୁନାହିଁ । ସମୟ ଯେମିତି ସବୁ ଆପଣାର ସାବ୍ୟସ୍ତକୁ ଚକୁ କରି ଦେଇଛି । ତାକୁ ଅଖୋଜା, ଅଲୋଡ଼ା ବାଲିଗରଡ଼ାରେ ପରିଣତ କରି ଦେଇଛି । କେଉଁଠି ରହିଲା ସେହି ବହୁ ଈପ୍‌ସିତ ସ୍ୱପ୍ନର ଘର ? କେଉଁଠି ହଜିଗଲା କୃଷ୍ଣଚୂଡ଼ାର ସେ

ରଙ୍ଗଭରା ଜୀବନ ? ଅଥଚ ଆଜିର ଏ ଯେଉଁ ବର୍ତ୍ତମାନ ତାହା ଯେମିତି ଅବାଞ୍ଛିତ । ସ୍ୱାମୀ ପରିତ୍ୟକ୍ତା ନାରୀଟିଏ ଛଡ଼ା ତା'ର ଆଉ କିଛି ପରିଚୟ ନାହିଁ । ଏ ଜୀବନ କେବେ ସେ ଚାହିଁ ନଥିଲା । କିନ୍ତୁ ନ ଚାହିଁ ଥିବା ଏ ବର୍ତ୍ତମାନ ହିଁ ତା ପାଇଁ ଆଜି ସତ୍ୟ । ସତ୍ୟ ପୁଣି ଏଡ଼େ ନିଷ୍ଠୁର !

ବେଳେ ବେଳେ ସ୍ୱାତା ତା'ର ଏହି ଅବାଞ୍ଛିତ ଜୀବନକୁ ନଷ୍ଟ କରିଦେବା କଥା ଭାବେ । ଟିକେ ବିଷରେ ସେ ତା'ର ଏ ଜୀବନ ଉପରେ ପର୍ଦ୍ଦା ଟାଣି ସବୁ ଯନ୍ତ୍ରଣାରୁ ମୁକ୍ତ ହେଇଯିବା କଥା ଭାବେ । ପରକ୍ଷଣରେ ଜୀବନ ପ୍ରତି କେଉଁଠି ଏତେ ବିପୁଳ ମମତା ଥାଏ କେଜାଣି ଗଦା ହେଇପଡ଼େ । କାଲିର କଅଁଳ ସକାଳକୁ ମନଭରି ଦେଖିବାର ଆବେଗରେ ସେ ବିଭୋର ହେଇପଡ଼େ । ଜୀବନ ପାଖରୁ ସେ ଏତେ ଶୀଘ୍ର ପରାଜୟ ସ୍ୱୀକାର କରିନେବ ? ଯେ ହାରିଯାଏ, ବର୍ତ୍ତମାନକୁ ମାନି ନେଇ ପାରେ ନାହିଁ ସେ ହିଁ ଭିରୁ କଳି ଆତ୍ମହତ୍ୟା କରେ ।

ସ୍ୱାତା ପୁଣି ତା'ର ସେହି ଦାବୀ ନ ଥିବା ସଂସାରକୁ ଫେରି ଆସେ । ସ୍ୱାମୀଙ୍କୁ ଦୂରରେ ଦେଖି ମୁଗ୍ଧ ହୁଏ, ସିନ୍ଦୂର ଲଗାଏ । କାଚ ବନ୍ଧ ହେଉ ବୋଲି ପ୍ରଣାମ କରେ । ସୁଖୀ ରହିବାର ଚେଷ୍ଟା କରେ । ଶ୍ରଦ୍ଧା ନଥିବା ଭାଉଜଙ୍କ ଘରକୁ ଯାଏ । ଫୁଲ ଛିଡ଼ାଇବାର ଅଧିକାର ନ ଥିଲେ ବି ଫୁଲ ବଗିଚାରେ ବସେ, ଆପଣାର ଗଛମାନଙ୍କୁ ନିଜର କରି ନେବାର ଆଖିରେ ଅନାଏ । ଅତୀତର ଅନ୍ତରଙ୍ଗ ସମୟ ବିସ୍ତାର କରିଥିବା ତା'ର ସେହି ପରିଣତ କୋଠରିଟିକୁ ବାହାରେ ଥାଇ ଅନାଏ । ସ୍ମୃତିର କେତେ କେତେ ଦାଗ ଖୋଜେ । ବହି ର୍ୟାକ୍, ଆଲମୀରା, ଭଙ୍ଗା ରେଡ଼ିଓ, ପଛଦିନର ଅନେକ କଥାକୁ ମନେ ପକାଇ ଦିଅନ୍ତି । ସ୍ମୃତି ଯାହା ହେଉନା କାହିଁକି ମଧୁର । ବାର ବାର ଫିଙ୍ଗିବାକୁ ଚେଷ୍ଟାକଲେ ମଧ ଫିଙ୍ଗିହୁଏନା । ସ୍ମୃତିକୁ ସମ୍ବଳ କରି ଅନେକ ସମୟରେ ମଣିଷ ସମଗ୍ର ଜୀବନ କଟାଇ ଦିଏ । ଅଥଚ ସେହି ବିଗତ ଦିନ ଗୁଡ଼ିକ ସହିତ ଅନ୍ତରଙ୍ଗ ହେବାପାଇଁ ସୁଯୋଗ ଥିଲେ ମଧ ଅଧିକାର ନଥାଏ, ସଠିକ ଜଣା ନଥାଏ । ତଥାପି, ହଁ ତଥାପି ସ୍ୱାତା ବାହାରେ ଠିଆ ହେଇ ବିଗତ ଦିନଗୁଡ଼ିକ ପାଖରେ ପହଞ୍ଚିବାକୁ ଚେଷ୍ଟା କରେ । କାରଣ ଜୀବନ ପାଖରେ ନ ହାରିବାର ସେ ଯେ ଶପଥ ନେଇଛି !



# କାକ୍ଟସ୍

ଜେଲର ଫାଟକ ପାଖରେ ମୋତେ ଦେଖି ତମେ ଆଶ୍ଚର୍ଯ୍ୟରେ ଯେମିତି ଚମକି ପଡ଼ିଲ । ମୁଁ ହସି ହସି କହିଲି, ତମକୁ ମୁଁ ନେବାକୁ ଆସିଛି । ତମେ କେମିତି ଥାଥାମାମା ହେଇ କହିଲ, ତମେ ଜାଣ ମୁଁ ଜଣେ ଖୁନୀ ଆସାମୀ, ମୁଁ କହିଲି, ଭଲ ଭାବରେ ଜାଣେ ଆଉ ସେଇଥି ପାଇଁ ତମେ ବାରବର୍ଷ ଜେଲରେ କଟାଇ ଆଜି ଖଲାସ ହେଇଛ ।

ତଥାପି ?

ହଁ ତଥାପି ! ତମେତ ଜେଲ ଭିତରେ ତମର ପ୍ରାୟଶ୍ଚିତ୍ତ କରିବାର ସୁଯୋଗ ଦିଅ ।

କିନ୍ତୁ ତମର ଯେ କିଛି ଭୁଲ ନାହିଁ । ବରଂଚ ମୋ ଭଳି ଏକ...

ମୁଁ ତମ ମୁହଁରେ ହାତରଖି ତମକୁ ଚୁପ୍ କରିବାକୁ ଚାହୁଁ ଥିଲି ହାତ ଅଟକି ଗଲା । ବାରବର୍ଷର ବ୍ୟବଧାନ ଭିତରେ ତମେ ଏତେ ଅଚିହ୍ନା ହେଇ ଯାଇଛ । ଏତେ ପର ଲାଗୁଛ । ଏତେ ଦୂରେଇ ଯାଇଛ ! ହଠାତ୍ ସଚେତନ ହେଲି ଯେ ତେର ବର୍ଷତଳେ ଆମର ଛାଡ଼ପତ୍ର ହେଇ ଯାଇଥିଲା ବୋଲି । ତାହାହିଁ କଣ ଲକ୍ଷ୍ମଣରେଖା ଭଳି ଆଜି ତମକୁ ଛୁଇଁବାକୁ ମୋତେ ନିଷେଧ କରିଦେଲା ? ଏ ଭିତରେ ତମର କେତେ ପରିବର୍ତ୍ତନ ହେଇ ଯାଇଛି ଶେଖର । ସେ ସ୍ୱାସ୍ଥ୍ୟ, ସେ ଚେହେରା ନାହିଁ । ଅକାଳ ବାର୍ଦ୍ଧକ୍ୟ ତୁମକୁ ବୁଢ଼ା କରି ଦେଇଛି । ତମେ କେତେ ରୁକ୍ଷ ଦିଶୁଛ । ତମକୁ ସେମିତି କେବେ ଦେଖି ନଥିଲି । ଜାଣି ନଥିଲି କି ଚିହ୍ନି ନଥିଲି । ଶେଖର, ଆମ ଜୀବନ ଏମିତି କାହିଁକି ହେଇଗଲା ?

ତମେ କିଛି କହିଲ ଶିଖା ?

ମୁଁ ? କାହିଁ ନାଁତ... ହଁ ଗାଡ଼ି ଅପେକ୍ଷା କରିଛି । ତମେ ଆଜି ଖଲାସ ହେବ ବୋଲି ମୁଁ ସକାଳୁ ଆସି ପହଞ୍ଚିଛି ।

ତାହାଲେ ?

ହଁ, ତମର ଅନୁମାନ ଠିକ୍ । ତମର ସମସ୍ତ ଖବର ମୁଁ ରଖିଛି । ଛାଡ଼ପତ୍ର ଦେଲାପରେ ତମେ ବାହା ହେବା ଓ ବର୍ଷେ ପରେ ମଞ୍ଜୁ ଆତ୍ମହତ୍ୟା କରିବା ଆଉ ତମେ ତମ ବାପାଙ୍କୁ.....

ବାସ୍‌ବାସ୍ ।

ଗାଡ଼ି ଚାଲିଛି । ଆମେ ଦୁହେଁ ଚୁପ୍‌ଚାପ ରାସ୍ତାର ଦି ଆଡ଼େ ଥିବା ଗଛ, ଘର, ଖାଲିପଡ଼ିଆ ପାରି ହେଇ ଯାଉଛୁ । ଅତୀତର କିଛିଦିନ ଆଜି ଆମ ଦୁଇପଟେ ସତେକି ଛାୟାଛବି ପାଲଟି ଯାଉଛି । ଆଜିକୁ ଚଉଦ ବର୍ଷ ତଳେ ଶେଖରଙ୍କୁ ଭେଟିଥିଲି ଏକ ରେଷ୍ଟୁରାଣ୍ଟରେ । ସଦ୍ୟ ସ୍ଥାନୀୟ କଲେଜରେ ଜୟେନ୍ କରିଥିଲି ଆଉ ଶେଖର ଥିଲେ ତାଙ୍କ ବାପାଙ୍କ କମ୍ପାନୀର ମ୍ୟାନେଜିଂ ଡିରେକ୍ଟର । ଖୁବ୍ ଶୀଘ୍ର ଆମେ ଦୁହେଁ ବିବାହର ନିଷ୍ପତ୍ତି ନେଇଥିଲୁ । ଏକମାତ୍ର ପୁଅ ଶେଖରଙ୍କୁ ଯୌତୁକ ବଜାରରେ ବିକ୍ରି କରି ମୋଟା ଅଙ୍କରେ କିଛି ପାଇବାର ଲୋଭ ତାଙ୍କ ବାପାଙ୍କର କିଛି କମ୍ ନ ଥିଲା । ତେଣୁ ସେ ପ୍ରଥମରୁ ଆମ ବିବାହର ଅନ୍ତରାୟ ସାଜିଥିଲେ ଆଉ ଆମେ ଦୁହେଁ ଶେଷରେ ବାଧ ହୋଇ କୋର୍ଟରେ ଦିନେ ବାହାହେଇ ପଡ଼ିଥିଲୁ । ମୋର ସେହି ସ୍ମରଣୀୟ ରାତିରେ ଶେଖର ଏକ ଶାଢ଼ୀ ଉପହାର ଦେଇ କହିଥିଲେ ଜୀବନର ସବୁ ଭଲ ଦିନରେ ଯେମିତି ମୁଁ ଶାଢ଼ୀଟି ପିନ୍ଧେ । ମୁଁ ଯେ ତାଙ୍କ ଭଲ ପାଇବାକୁ ସମ୍ମାନ ଦିଏ ଓ ଅନୁରୂପ ତାଙ୍କୁ ଭଲ ପାଏ ତାହାର ପ୍ରମାଣ ହିଁ ଏ ଶାଢ଼ୀ ।

ଜୀବନରେ ସାବତ ମାଁଙ୍କ କଡ଼ା ଶାସନରେ ବଢ଼ି ଆସିଥିବା ଓ କେବେ ଶ୍ରଦ୍ଧାରେ ବି କିଛି କାହାଠାରୁ ଉପହାର ପାଇ ନଥିବା ମୋ ଭଳି ଝିଅଟି ପ୍ରଥମ ଥର ପାଇଁ ଜଣକର ଏତେ ଭଲ ପାଇବା ସତେକି ସମ୍ଭାଳି ପାରୁନଥିଲା । ଆନନ୍ଦରେ ଆଖିରେ ପାଣି ଆସି ଯାଇଥିଲା ।

ଦିନ ଯେତେ ଗଡ଼ି ଯାଉଥିଲା ଶେଖରଙ୍କ ଭଲପାଇବା ସେତେ ଗଭୀର ହେଇ ଯାଉଥିଲା । ହେଲେ ଏତେ ସୁଖ ଯେ ଅସହ୍ୟ । ମୋର ଚରିତ୍ର ଉପରେ ବିଭିନ୍ନ ବେନାମି ଚିଠି ଶେଖରଙ୍କ ପାଖକୁ ଗଲା । ଶେଖର ବି କ୍ରମଶଃ ମୋତେ ସନ୍ଦେହ କରିବାକୁ ଆରମ୍ଭ କଲେ ମୁଁ କାହା ସହ ମିଶୁଛି, କିଏ ଘରକୁ ଆସୁଛି ଏ ସମ୍ପର୍କରେ ଟିକିନିଖି ବିବରଣୀ ସେ ରଖିବାକୁ ଆରମ୍ଭ କଲେ । ଆଉ ତାପରେ... ସେହି ଭୟଙ୍କର ଘଟଣା ।

କମ୍ପାନୀ କାମରେ ଦୁଇତିନିଦିନ ବାହାର୍‌କୁ ଯାଇଥିଲେ ଶେଖର । ଦିନେ ରାତିରେ କବାଟରେ ନକ୍ ଶୁଣି ଶେଖର ଆସିଛନ୍ତି ଭାବି କବାଟ ଖୋଲି ଦେଲା ବେଳକୁ ଦେଖିଲି ମଦନିଶାରେ ଟଳମଳ ହେଉଥିବା ଶ୍ୱଶୁରଙ୍କୁ । ଆଉ... ଶ୍ୱଶୁର ପଶିଆସି ମୋତେ ସେଦିନ ବଳାତ୍କାର କରିବାକୁ ଗଲାବେଳକୁ ନିଜକୁ ବଞ୍ଚାଇବାକୁ ଯାଇ ତାଙ୍କ ଉପରକୁ ଜୀବନବିକଳେ ପେପରୱେଟ, ପିତଳ ଫୁଲଦାନୀ ଫିଙ୍ଗିଥିଲି । ଅତି କଷ୍ଟରେ ସେଦିନ ନିଜକୁ ମୁକୁଳେଇଥିଲି । କିନ୍ତୁ ଶେଖର ଆସିଲା ପରେ ଶ୍ୱଶୁର ପ୍ରମାଣ କଲେ ମୁଁ ଜଣକ ସହିତ ଥିଲାବେଳେ ସେ ଅସଂଜତ ଅବସ୍ଥାରେ ମୋତେ ଦେଖିଥିଲେ ଓ ପ୍ରତିବାଦ କରିବାରୁ ମୁଁ କୁଆଡ଼େ ତାଙ୍କୁ ଏଭଳି ଅବସ୍ଥା କରିଛି । ସବୁଠୁ ଆଶ୍ଚର୍ଯ୍ୟ ଶେଖର ବି ତାଙ୍କ ବାପାଙ୍କ କଥା

ବିଶ୍ୱାସ କଲେ । ମୁଁ ତାଙ୍କ ବାପାଙ୍କ ସଂପର୍କରେ ପ୍ରକୃତ କଥା କହିବାରୁ ସେ ମୋତେ ଚାପଡ଼ାମାରି ମୋର ବିଶ୍ୱାସ, ଭଲପାଇବା, ନାରୀତ୍ୱ ସବୁକିଛିକୁ ଦୋହଲାଇ ଦେଇଥିଲେ । ବାପସମାନ ଶ୍ୱଶୁରଙ୍କ ଚରିତ୍ରରେ କଳଙ୍କ ବୋଳି ଥିବାରୁ ଶେଖର ମୋତେ ଘୃଣା କରିଥିଲେ, ଛିଛିକାର କରିଥିଲେ । ତାଙ୍କ ପରିବାର ଲୋକେ ମୋତେ ଅପମାନିତ, ଲାଞ୍ଛିତ କରି ମୋର ସ୍ୱପ୍ନ, ସହିବାର ସୀମା ସବୁ କିଛିକୁ ଭାଙ୍ଗି ଧୂଳିସାତ କରି ଦେଇଥିଲେ । ଆଉ ତାପରେ ଶେଖରଙ୍କ ସହିତ ରହିବା ସମ୍ଭବପର ନଥିଲା । ଆମେ ଛାଡ଼ପତ୍ର ଦେବାର ନିଷ୍ପତ୍ତି କରି ନେଇଥିଲୁ । ଦିନେ ଯେଉଁ କୋର୍ଟରେ ବିବାହ ହେଇଥିଲା ସେଇଠାରେ ଆମର ଛାଡ଼ପତ୍ର ହେଇଗଲା । ତାଙ୍କ ଘରୁ ବିଦାୟ ନେଇ ଆସିଲା ବେଳେ ଶେଖରଙ୍କର ସେହି ଶାଢ଼ୀଟା କେବଳ ସାଙ୍ଗରେ ଆଣିଥିଲି ଆଉ କହିଥିଲି, ଅନ୍ତତଃ ତମର ଭଲପାଇବାକୁ ଯେ ସମ୍ମାନ ଦିଏ ଏଇ ଖାତିରରେ ତମେ ଏଇ ଗୋଟାଏ ଜିନିଷ ମୋତେ ସାଙ୍ଗରେ ନେବାକୁ ଅନୁମତି ଦିଅ । ଅନ୍ତତଃ ଏଇଟା ହିଁ ହୁଏତ ହୋଇପାରେ ମୋର ବଞ୍ଚିବାର ମାଧ୍ୟମ ।

ଆଉ ତାପରେ ଶୁଣିଥିଲି ଶେଖର ମଞ୍ଜୁ ନାମକ କୌଣସି ଝିଅକୁ ବିବାହ କରିଛନ୍ତି । କିନ୍ତୁ ହଠାତ୍ ତାର କିଛି ମାସ ପରେ ଖବର କାଗଜରେ ସମ୍ବାଦଟା ପଢ଼ି ସ୍ତମ୍ଭୀଭୂତ ହେଇ ଯାଇଥିଲି । ବୋହୂ ଉପରେ ପାଶବିକ ଅତ୍ୟାଚାର କରିବା ଅବସ୍ଥାରେ ଶେଖର ପହଁଞ୍ଚି ଯାଇଥିଲେ ଆଉ କ୍ରୋଧ ଅବସ୍ଥାରେ ବାପାଙ୍କୁ ଖୁନ୍ କରି ଦେଇଥିଲେ । ଏହି ଲଜ୍ଜ୍ୟାକର ପରିସ୍ଥିତିକୁ ସାମ୍ନା କରି ନ ପାରି ମଞ୍ଜୁ ଆତ୍ମହତ୍ୟା କରି ଦେଇଥିଲା । ଆଉ ଶେଖରଙ୍କ ହେଇ ଯାଇଥିଲା ବାରବର୍ଷ ଜେଲ୍ ।

ଆରେ, ଗାଡ଼ି ଅଟକାଇଲ ଯେ । ଶେଖର ତନ୍ଦ୍ରାଚ୍ଛନ୍ନ ହେଇ କହିଲେ ।

ହଁ ଟିକେ ଚା ପିଇବା । ତମକୁ ବି ଭୋକ କରୁଥିବ ।

ଭୋକ, ମୋତେ ? ଭୋକ, ଅନିଦ୍ରା ଏଭଳି କିଛି ଶବ୍ଦ ସହିତ ବାରବର୍ଷ ହେଲା ମୁଁ ଅଭ୍ୟସ୍ତ ହେଇ ଯାଇଛି ଶିଖା । କେତେ ପୁରୁଣା ଅଭ୍ୟାସକୁ ବି ଭୁଲି ଯାଇଛି ।

ତମର ମନେଅଛି ଶେଖର ଏହି ରେଷ୍ଟୁରାଣ୍ଟରେ ଆମର ପ୍ରଥମ ଦେଖା ହୋଇଥିଲା ?

ଆରେ ! ସତତ । କେତେବର୍ଷ ତଳେ । ଚଉଦ ?

ହଁ, ତମେ ଠିକ୍ କହିଛ । ଚଉଦ !

ଚଉଦ ବର୍ଷ ଭିତରେ ଆମର କେତେ କଣ ପରିବର୍ତ୍ତନ ହେଇ ଯାଇଛି ଦେଖତ । ରେଷ୍ଟୁରାଣ୍ଟ ସେମିତି ଅଛି । ସେମିତି ଭିଡ଼, ବିକ୍ରିବଟା, ନୂଆ ନୂଆ କେତେ ଯୋଡ଼ି । ଅଥଚ ଆମେ ଅତୀତ ହେଇଯାଇଛେ ।

ଏହାହିଁ ତ ଜୀବନ ଶେଖର । ପରିବର୍ତ୍ତନ ତ ଜୀବନ ଆଉ...

ଆଉ ?

ଆଉ ଏହି ପରିବର୍ତ୍ତନ ଭିତରେ କେତେ ବଦଳି ଯାଇଛି ଆମର ଦୁନିଆ । କେତେ ବିଡ଼ମ୍ବିତ ହେଇ ଯାଇଛି ଆମର ଭାଗ୍ୟ । ସରଳରେଖା ଭଳି ଗଡ଼ିଯାଇଛି ଆମର ଜୀବନ ।

ଟା ଥଣ୍ଡା ହେଉଛି ।

ହଁ ଥଣ୍ଡା ହେଉଛି । କାହିଁକିନା ସ୍ମୃତି ଗଦେଇ ପଡୁଛି । ଅନେକ ବର୍ଷ ପରେ ସ୍ମୃତିର ପୃଷ୍ଠା ଏକାଠି ଓଲଟାଇବାକୁ ଭଲ ଲାଗୁଛି । ଏମିତି ତ ଏକାଏକା ଅନେକ ଥର ଅତୀତକୁ ଛୁଇଁଛି । ଆଜି ଦୁହେଁ ମିଶି ଛୁଉଁଛୁ । ଭଲ ଲାଗୁଛି । ସତେକି ଆବେଗ ସମୁଦ୍ର ପାଲଟିଛି । ଆବେଗର ସ୍ୱାଦ ଫେର୍ ଏତେ ତୀବ୍ର ? ହଁ ତ, ସଂପର୍କ ଏକ ସ୍ୱପ୍ନ ଅନୁଭବଟାଏ । ଦୁର୍ବଳ କରିଦିଏ ମଣିଷକୁ ।

ଯା ପରେ ? ତମେ ଠିଆ ହେଇ ମୁହଁ ପୋଛୁପୋଛୁ ପଚାରୁ ଥିଲ ।

ମୋରଘରକୁ...

କିନ୍ତୁ...

ମୁଁ ଜାଣେ ଆଜି ଆମ ଭିତରେ କୌଣସି ସଂପର୍କରେ, ପରିଚୟର ଡ଼ୋରି ନାହିଁ । ସ୍ୱାମୀ ସ୍ତ୍ରୀର ସମ୍ବନ୍ଧକୁ ଏକ କାଗଜରେ ଆମେ ତେରବର୍ଷ ତଳେ ତୁଟେଇ ଦେଇଛୁ । କିଛି ସଂପର୍କରେ ସଂପର୍କିତ ନ ହେଲେ ହେଁ ଜଣେ ପୁରୁଣା ବନ୍ଧୁ ହିସାବରେ ତମେ କଣ ଗୋଟିଏ ରାତି ପାଇଁ ମୋର ଅତିଥି ହେଇ ପାରିବନି ? ବରଂତ କାଲି ତମେ ତମ ସହରକୁ ଫେରିଯିବ । ଅନ୍ତତଃ ଆଜି ଗୋଟାଏ ଦିନ ପାଇଁ ତମେ ରହିଯାଅ ପ୍ଲିଜ୍ ।

ପୁଣି ନିରବତା ଆଉ ଗଛବୃକ୍ଷକୁ ପଛରେ ପକାଇ ଆମର ଚୁପ୍‌ଚାପ୍ ଯାତ୍ରା । ଆଜି ଆମ ଚାରିପଟରେ ନିରବତା ଗୀତ ପାଲଟି ଯାଉଛି । ସେ ଗୀତର ସମ୍ମୋହନରେ ମୁଁ ଆତ୍ମହରା ହେଇ ଯାଉଛି । ତମକୁ ଚୁପିଚୁପି ଚାହିଁଛି । ଅତୀତର ମଧୁର ଦିନ ସବୁ ମୁଣ୍ଡ ପିଟୁଛି ।

ତମେ ମୋ ଡ୍ରଇଂ ରୁମ୍‌ରେ ବସି ଥାକ ଥାକ ବହିକୁ ଦେଖି ଆଶ୍ଚର୍ଯ୍ୟ ହେଉଥିଲ । ଏତେ ବହି ? ତମେତ ତମଘରକୁ ଏକ ଲାଇବ୍ରେରୀ କରି ଦେଇଛ ଶିଖା । ଏସବୁ ତମେ ପଢୁଛ ? ସିଲେଇ, ଘର ସଜେଇବାରେ ତମକୁ ଯେ ପଢ଼ାପଢ଼ି କରିବାକୁ ଦିନେ ସମୟ ମିଳୁ ନଥିଲା ।

ମୁଁ ତମକୁ ଚାହିଁଥିଲି ଓ ତା ସହିତ ଥାକଥାକ ବହିକୁ । କହିବାକୁ ଇଚ୍ଛା ହେଉଥିଲା,

ବର୍ଷା ଭିଜା ମାଟିର ଗନ୍ଧ ଯେମିତି ଆପଣାର ଲାଗେ, ସେମିତି ବହିକୁ ଜୀବନର ଅନ୍ତରଙ୍ଗ ବନ୍ଧୁ ଭାବରେ ଗଲା କେତେବର୍ଷ ହେଲା ନିଜର କରି ନେଇଛି ଶେଖର । ବହିକୁ ଦିନେ ପ୍ରାଣହୀନ ଅକ୍ଷରର ସମାହାର ବୋଲି ଭାବୁଥିଲି । କିନ୍ତୁ ତମକୁ ହରାଇଲା ପରେ ଯେତେବେଳେ ବଞ୍ଚିବାର ମାଧ୍ୟମ ଖୋଜିଲି, ସବୁଠାରୁ ପରମ ବନ୍ଧୁ ଭାବରେ ଏଗୁଡ଼ିକୁ ହିଁ ବାଛିଲି । କାରଣ ବହି କେବେ ଧୋକ୍କା ଦେବ ନାହିଁ ଶେଖର ! ଗଲା କେତେ ବର୍ଷ ଭିତରେ ବିଭିନ୍ନ ପ୍ରକାରର ପୁସ୍ତକ ଅଧ୍ୟୟନ କରିଛି, ତର୍ଜମା କରିଛି । ଜୀବନର ଅନୁଭବ ସହ ହଜାଇବା ପାଇବାର ଭିନ୍ନ ଭିନ୍ନ ଭାବକୁ ତନଖି ଜୀବନକୁ ଅତି ନିକଟ କରି ଦେଖିଛି । ଯେତେ ଦେଖିଛି ସେତେ ନୂଆ ଲାଗିଛି, ନୂଆ ଭାବରେ ଆବିଷ୍କାର କରିଛି । ଜୀବନର ବିବିଧତା, ବିଚିତ୍ରତାକୁ ବର୍ଷ ବର୍ଷ ଧରି ବହିର ପୃଷ୍ଠାରେ ଖୋଜି ହେଉଛି । ସେତେବେଳେ ଜୀବନ ଅଲଗା ଭାବରେ ଆସି ଠିଆ ହେଉଛି । ଶେଖର, ମୋ ଜୀବନରେ ଯଦି ଏମିତି କିଛି ଘଟି ନଥାନ୍ତା ଜୀବନକୁ ଚିହ୍ନିବାର ଅବସର ମିଳି ନଥାନ୍ତା । ଭଲ ଖାଇବା, ପିନ୍ଧିବା, ସାଜିବାର ସୀମିତ ପୃଥିବୀ ଭିତରେ ମୁଁ ନିଜକୁ ଖର୍ଚ୍ଚ କରି ଦେଇଥାନ୍ତି । ହେଲେ ଏଥିପାଇଁ ମୋତେ କେତେ ବେଶି ମୂଲ୍ୟ ଦେବାକୁ ନ ପଡ଼ିଲା।

ବିଉଟିଫୁଲ ।

ବିଉଟିଫୁଲ ? ମୁଁ ଭାବନାରୁ ଫେରି ଆସି ଶେଖରଙ୍କ କଥାରେ ଚମକି ପଡ଼ିଲି ।-

ହଁ ଶିଖା । ତମର ବଞ୍ଚିବାର ମାଧ୍ୟମ, ସମୟ କଟାଇବାର ଯୋଜନା ବାସ୍ତବିକ ବିଉଟିଫୁଲ । ତମେ ଏଇଗୁଡ଼ାଏ ବର୍ଷ ଭିତରେ କେତେ ସୁନ୍ଦର ଭାବରେ ବଞ୍ଚି ପାରିଛ । ଅଥଚ ମୁଁ । ଦେଖତ ଜୀବନଟା ଦେଖୁଦେଖୁ ନଷ୍ଟ ହୋଇଗଲା । ଭଲ ହିଁ ହୋଇଛି । ମୋ ସହିତ ଥିଲେ କଣ ବା ପାଇଥାନ୍ତ ତମେ ? କଣ ଜାଣିଥାନ୍ତ ବା ପଢ଼ିଥାନ୍ତ । ଭଗବାନ ଯାହା କରନ୍ତି ମଙ୍ଗଳ ପାଇଁ ।

ହଁ ଶେଖର ! ଭଗବାନ ଯେତେବେଳେ, ସେ ମଙ୍ଗଳ ଛଡ଼ା ଆଉ କଣ କିଛି ଖରାପ କରିପାରନ୍ତେ ?

ଖାଇଲାବେଳେ ପାଏସ୍ ଡ଼ିସ୍ ଦେଖି ସେ ଅନ୍ୟମନସ୍କ ହେଇଗଲା । କହିଲେ ମନେରଖିଛ ପାଏସ୍ ଭଲ ପାଏ ବୋଲି । ଆଜି କେତେବର୍ଷ ପରେ ଘରୋଇ ରନ୍ଧା ଖାଉଛି । କଣ ଯେ ଭଲ ପାଉଥିଲି ସେ କଥାଟାବି ଭୁଲି ଯାଇଛି ।

କିନ୍ତୁ କିଛି ଜିନିଷ ଅଛି ଭୁଲାଯାଇ ପାରେନା । ଛାଡ଼ପତ୍ରରେ ସଂପର୍କ କଟିଗଲେ ସୁଦ୍ଧା ।

ମାନେ ?

ସବୁ ମାନେର ବି ଯେ ଉତ୍ତର ଦେଇହୁଏ ନାହିଁ ଶେଖର !

ତମେ ଠିକ୍ କହିଛି ଶିଖା । ଏତେବର୍ଷ ପରେ ତମକୁ ଭେଟି ମୋର ମନେ ହେଉଛି ବୟସ ତମକୁ କେବଳ ଅଭିଜ୍ଞା କରି ନାହିଁ, ତମର ଉପଲବ୍ଧି, ଚେତନାକୁ ଗଭୀର ବି କରି ଦେଇଛି ।

ତମକୁ ବି ମୋର ଏତେ ବର୍ଷ ପରେ ଦେଖା ହେଲା ପରେ ଲାଗୁଛି ତମେ ଅନେକ କିଛି ଭୁଲି ଯାଇଛ । ଜୀବନ ପ୍ରତି କେମିତି ଉଦାସ ହେଇ ଯାଇଛ ।

ହଁ ଠିକ୍ କହିଛ । ଆମ ଚିନ୍ତା ଚେତନା ଭଳି ଆମର ରାସ୍ତାବି ଅଲଗା ହେଇଯାଇଛି ।

ଅନେକ ରାତି ପର୍ଯ୍ୟନ୍ତ ଆମେ ବସିଥିଲୁ ମୋର ଛୋଟ ବଗିଚାରେ । ଜହ୍ନ ରାତି, ଖୋଲାପବନ ଆଉ ରାତିର ନିରବତା ଭିତରେ କେତେ ସବୁ ପାଶୋରି ଦେଇଥିବା ଦିନ ଆସି ଆଖି ଆଗରେ ଠିଆ ହେଉଥିଲା । କୁଣ୍ଡରେ ଲାଗି ହେଇଥିବା କାକ୍ଟସକୁ ଚାହିଁ ଶେଖର ପଚାରୁଥିଲେ, ତମ କାକ୍ଟସ୍‌ରେ ଫୁଲ ଆସେନା ? ଏବେତ ଅନେକ କାକ୍ଟସ୍‌ରେ ଫୁଲ ଫୁଟୁଛି ।

ମୁଁ ତାଙ୍କୁ କିଛି ସମୟ ଅନାଇ ରହି କହିଲି, ହଁ କିଛି କାକ୍ଟସ୍‌ରେ ଆଦୌ ଫୁଲ ଫୁଟେନା । ଆଉ ଜାଣେ, ଫୁଲ ଫୁଟୁ ନଥିବା କାକ୍ଟସ୍ ପ୍ରତି ମୋର ରହିଛି ପ୍ରଚଣ୍ଡ ଦୁର୍ବଳତା । ମନେ ହୁଏ ତାହା କାକ୍ଟସ୍ ନୁହେଁ ସତେ କି ମୁଁ ।

ଶିଖା !

ଶେଖର ଚମକି ମୋତେ ସମ୍ବୋଧନ କଲା ବେଳକୁ ଓଜନିଆ ଆଖି ନେଇ ମୁଁ ମୋ ରୁମ୍‌ରେ ପଶି ଯାଇଥିଲି ।

ସକାଳୁ ସକାଳୁ ହିଁ ବାହାରି ପଡ଼ିଥିଲେ ଶେଖର ନିଜ ସହରକୁ । ଆଉ ବୋଧହୁଏ ଦେଖା ହେବନାହିଁ । କେଜାଣି ? କଫି ଦୁଇକପ୍ ଧରି ମୁଁ ଯେତେବେଳେ ତାଙ୍କ ସାମ୍ନାରେ ରଖିଲି ସେ ଆଶ୍ଚର୍ଯ୍ୟରେ ମୋତେ ଚାହିଁ ରହିଲେ । ସେ କିଛି କହିବା ଆଗରୁ ମୁଁ କହିଲି ହଁ, ତେର ବର୍ଷ ପରେ ଏ ଶାଢ଼ୀ ପିନ୍ଧିଛି । ତମର ମନେ ଅଛି ଏ ଶାଢ଼ୀ ଦେଲାବେଳେ କଣ କହିଥିଲ ?

ଶେଖର କିଛି କହିବା ଆଗରୁ ମୁଁ କହିଲି, ତମେ କହିଥିଲ ସବୁ ଭଲ ଦିନରେ ଏ ଶାଢ଼ୀ ମୁଁ ଯେମିତି ପିନ୍ଧେ ।

କିନ୍ତୁ ଶିଖା ସେ ଭଲ ଦିନ ସବୁକୁତ ଆମେ ହଜାଇ ଦେଇଛୁ ।

ମୁଁ ନଶୁଣିଲା ଭଳି କହି ଚାଲିଥିଲି, ତମେ କହିଥିଲ ମୁଁ ଯଦି ତମ ଭଲ ପାଇବାକୁ

ସମ୍ମାନ ଦିଏ ଓ ଅନୁରୂପ ଭଲପାଏ ତାର ପ୍ରମାଣ ସ୍ୱରୂପ...

ନା ଶିଖା ! ମୁଁ ଯେ ଆଜି ତାର ଯୋଗ୍ୟ ନୁହେଁ । ପୁଣି ତେର ବର୍ଷର ବ୍ୟବଧାନ କିଛି କମ୍ ବ୍ୟବଧାନ ନୁହେଁ । ଏ ଭିତରେ ଯାହା ଘଟିଗଲା ବା ଘଟିଯାଇଛି ତାକୁତ ଆଉ ଅସ୍ୱୀକାର କରି ହେବନାହିଁ ।

କାହିଁକି କରି ହେବ ନାହିଁ ଶେଖର ? କାହିଁକି ଜୀବନର ସବୁ କିଛୁର ପାଚେରିକୁ ଉଠାଇ ହେବ ନାହିଁ ? ଗୋଟାଏ ନିର୍ଜୀବ କାଗଜ ସତରେ ଜଣ ସ୍ୱାମୀ ସ୍ତ୍ରୀର ସଂପର୍କକୁ ଏମିତି ତୁଟେଇ ଦେଇପାରେ ? କୁହ, କେବେ ସମ୍ଭବ ? ତମେ ତୁଟେଇ ପାରିଛ ? ପାରିବ ? ସତ କୁହ ।

ଶେଖର ମୋର ଏତେଗୁଡ଼ାଏ ପ୍ରଶ୍ନର ଉତ୍ତର କିଛି ହେଲେବି ଦେଇ ନପାରି କିଂକର୍ତ୍ତବ୍ୟବିମୂଢ଼ ହୋଇ ଠିଆ ହୋଇଥିଲେ । ମୁଁ କହି ଚାଲିଥିଲି, ମୁଁ ଜାଣେ ତମେ ମୋ ପ୍ରଶ୍ନର ଉତ୍ତର ଦେଇ ପାରିବନି । କାହିଁକିନା ତମେ ଭୀରୁ, କାପୁରୁଷ । ବାସ୍ତବତାକୁ ସାମ୍ନା କରିବାର ତମର ସାହସ ନାହିଁ ।

ଏତେ ବର୍ଷ ଧରି ମୋ ଭିତରେ ରହିଥିବା ଆଗ୍ନେୟଗିରିର ବିସ୍ଫୋରଣକୁ ଲକ୍ଷ୍ୟ କରୁଥିଲେ ଶେଖର । କହିଲେ ତମେ ଠିକ୍ କହିଛ ଶିଖା । ମୋଭଳି ମଣିଷଟେ ଭୀରୁ, କାପୁରୁଷ ନୁହେଁତ ଆଉ କଣ । ଶେଷରେ ଦୁଇ ପାଦ ପଛେଇ ଆସି ସେ ମୋତେ ଚମକାଇ ଦେଇ ମୋ କାନ୍ଧରେ ହାତ ରଖି ସାନ୍ତ୍ୱନା ଦେବା ଭଙ୍ଗୀରେ ପଚାରିଲେ, ଆଚ୍ଛା ! ଆମେ ଦୁହେଁ ମିଶି ଫୁଲଫୁଟୁଥିବା କାକ୍‌ଟସ୍‌ଟେ ଲଗେଇଲେ କେମିତି ହୁଅନ୍ତା ?



# ଜୀବନ କେବେ କେମିତି

ଅନେକ ବର୍ଷପରେ ସେହି ଗଛଟା ପାରିହେଲା ବେଳକୁ ମିଷ୍ଟରଙ୍କୁ କହିଲି, ଟିକେ ଏଇଠି ଗାଡ଼ି ରଖତ । ସେ ବିରକ୍ତ ହେଲେ । କେଉଁଦିନରୁ ଲେଡ଼ିଜ ହଷ୍ଟେଲ ଛାଡ଼ିଲଣି । ଅଥଚ ତମର ହଷ୍ଟେଲର ମୋହ ଏଯାଏଁ ଯାଇନାହିଁ । ମୁଁ ହସିଦେଲି । ଦେଖୁଛ ଏଇ ଗଛଟା । ୟା ପଛରେ ଜଣକର କାହାଣୀ ରହିଛି । ଘରକୁ ଗଲେ କହିବି ।

ମୁଁ ପୁଣି ଗଛଟାକୁ ଅନାଇ ରହିଲି । କଅଁଳିଆ ପତ୍ରରେ ଭର୍ତ୍ତି ହେଇ ଯାଇଛି ଗଛଟା । ତା ଭିତରେ ବୁଢ଼ା ପତ୍ର କେତୋଟି ଲାଗି ରହିଛି । ଗଛଟା ଆମ ଜୀର୍ଣ୍ଣ ଅତୀତ ଭଳି ପୁରୁଣା ହୋଇ ଯାଇଛି । ସେହି ପୁରୁଣା ଗଛକୁ ଆଉଜି ମୁଁ କିଛି ସମୟ ଠିଆ ହେଲି । ଏ ଭିତରେ ସମୟ କେତେ ଆଗକୁ ଚାଲି ଯାଇଛି । ତାରି ଭିତରେ ତଥାପି ଜଣକର ଅସ୍ପଷ୍ଟ ଛାଇ ଲମ୍ଫିଲମ୍ଫି ଯାଉଛି । ସେ ଛାଇ କ୍ଷମା ଅପାର ।

କ୍ଷମା ଅପା ହଷ୍ଟେଲରେ ଥିଲାବେଳେ ମୋ ରୁମ୍‌ମେଟ ଥିଲେ । ଏଇ ଗଛଟା ସହିତ ତାଙ୍କର ଥିଲା ଅଦ୍ଭୁତ, ପୁରୁଣା ସଂପର୍କ । ପ୍ରକାଣ୍ଡ ଓଶ୍ୱସ୍ତ ଗଛଟାର ସାଇଁ ସାଇଁ ପବନ ତଳେ ଠିଆ ହେଇ କାହିଁକି କେଜାଣି ଏ ଭିତରେ ଅନେକ ଦିନରୁ ପାଶୋରି ଦେଇଥିବା କ୍ଷମାଅପାଙ୍କୁ ମନେ ପକାଉଥିଲି । ମନେ ପକାଉଥିଲି ଏଇଥିପାଇଁ ଯେ ଏଇ ଗଛ ତଳେ ତାଙ୍କ ଜୀବନର ଏକ ବିଚିତ୍ର କାହାଣୀ ଯୋଡ଼ା ହୋଇଥିଲା ।

ଗୋଟେ ଗୋଟେ ଝିଅ ଏତେ ଅଲଗା ଥାନ୍ତି । ଗୋଟେ ଗୋଟେ ଜୀବନ ପେଣ୍ଟ ଏତେ ବିଚିତ୍ର ! ବର୍ଷ ବର୍ଷ ଧରି ଜଣକ ପାଖରେ ଜଣେ ରହିଥିଲେ ବି ତାକୁ ବୁଝିବା ଯେ ସହଜ ନୁହେଁ, ବରଂ ପ୍ରତ୍ୟେକ ମଣିଷ ଯେ ପ୍ରତ୍ୟେକ ପାଖରେ ଗୋଟାଏ ଗୋଟାଏ ଅବୁଝା ଦୁର୍ଗ କ୍ଷମାଅପାଙ୍କ ସଂପର୍କରେ ଜାଣି ସାରିଲା ପରେ ହିଁ ବୁଝିଥିଲି । ବୁଝିଲା ବେଳକୁ ସମୟ ଅନେକ ଆଗକୁ ମାଡ଼ି ଯାଇଥିଲା ।

କ୍ଷମା ରାୟ, ଓ୍ୱର୍କିଂ ଓମେନ୍‌ସ ହଷ୍ଟେଲରେ ଥିଲାବେଳେ ମୋରି ରୁମ୍‌ରେ ଥିଲେ ତିନିବର୍ଷ । ସେ ବୟସରେ ମୋଠାରୁ ବେଶ୍ ବଡ଼ ଓ ଅବିବାହିତା ଥିଲେ । ଅବଶ୍ୟ ତାଙ୍କ ଜୀବନ କାହାଣୀ ଶୁଣିବା ପାଇଁ କୌଣସି ଚନାଘନା ଲୋଡ଼ା ହେଇ ନାହିଁ । ନିଜ ସଂପର୍କରେ ସେ ବହୁ ବିଚିତ୍ର କାହାଣୀ ପ୍ରତିଦିନ ଯୋଗାଡ଼ କରିଥିଲେ ଓ ମୋତେ ତାର ଶ୍ରୋତା ବନିବାକୁ ବାଧ କରୁଥିଲେ । ତାଙ୍କ ଗଳ୍ପ ଭିତରେ ପ୍ରେମ ହିଁ ମୁଖ୍ୟ ଥିଲା । କେମିତି ଜଣକ ପାଇଁ ସେ ଅପେକ୍ଷା କରିଛନ୍ତି, ଦରକାର ହେଲେ ସାରାଜୀବନ ଅପେକ୍ଷା କରିବେ କିନ୍ତୁ ବାହାହେବେ

ନାହିଁ ଏମିତି ଏମିତି । ଶୁଣୁଶୁଣୁ କହିଥିଲି, ଆଶ୍ଚର୍ଯ୍ୟ କଥା । ଜଣକ ପାଇଁ ତମେ ସାରା ଜୀବନ ଅପେକ୍ଷା କରିବ ଅଥଚ ବାହା ହେବନି କାହିଁକି ? ସେବି ତମକୁ... ମୋ ପାଟିରୁ କଥା ଛଡ଼ାଇ ନେଇ କ୍ଷମାଅପା କହିଥିଲେ, ଅତୁଲ କହେ ଏ ଜନ୍ମ କଣ ଦରକାର ହେଲେ ସାତଜନ୍ମବି ସେ ମୋତେ ଅପେକ୍ଷା କରିବ । ତାର ଭଲପାଇବା ପାଖରେ ମୁଁ ନଇଁଯାଏ, ତା ଭଲ ପାଇବା ମୋତେ ପାଗଳ କରିଦିଏ । ପତ୍ର ଗହଳରେ ଯେଉଁ ଫୁଲ ଫୁଟେ ସେ ସେଠି ମୋତେ ଦେଖେ । ପକ୍ଷୀର କାକଳିରେ ମୁଁ, ଝରଣାର ଛନ୍ଦରେ ମୁଁ, ଆକାଶର ନୀଳିମାରେ, ପୃଥିବୀର ସବୁଜିମାରେ, ପ୍ରଭାତର ଶିଶିରରେ କୁଆଡ଼େ ମୁଁ । ସତରେ କହତ ଏମିତି ଭାଗ୍ୟ କାହାର ଥାଏ । ଏଇ ଭଲ ପାଇବା ହିଁ ତ ନାରୀ ଜୀବନକୁ ସଫଳ କରିଦିଏ ।

ସତକଥା ! ମୁଁ ମୁଣ୍ଡ ହଲାଇଲି । ଜଣେ ପୁରୁଷ ଯଦି ଜଣେ ନାରୀକୁ ଏତେ ନିବିଡ଼ ଭାବରେ ଭଲପାଇ ପାରେ ତେବେ ସେ ନାରୀ ନିଶ୍ଚୟ ନିଜକୁ ଧନ୍ୟ ମନେ କରିବ । ତାର ଜନ୍ମ ସାର୍ଥକ ହେଇଯିବ । ସେଦିନ ପ୍ରଥମଥର ମୁଁ ଈର୍ଷା କରିଥିଲି ତାକୁ ନିଜର ଅଜାଣତରେ । ହେଲେ ବୁଝିପାରି ନଥିଲି ଯିଏ ସାତଜନ୍ମ ପାଇଁ ଜଣକୁ ଅପେକ୍ଷା କରିପାରେ ସେ ଏ ଜନ୍ମରେ କାହିଁକି ବାହାହେବ ନାହିଁ । ଏମିତି କଣ ଘଟଣା ଘଟିଛି ? ଦୁହିଁଙ୍କ ପରିବାରରେ ରାଜି ନୁହଁନ୍ତି ନା ସମାଜ ବାଛନ୍ଦ କରିବ ? ସେଥିରେ କଣ ଅଛି । ଅତୁଲ ବାବୁ ତ ଗୋଟେ ପ୍ରତିଷ୍ଠିତ ଟା କମ୍ପାନୀର ମ୍ୟାନେଜିଂ ଡିରେକ୍ଟର । କ୍ଷମା ଅପାବି ତ ବେଶ୍ ଭଲ ଚାକିରିଟେ କରିଛନ୍ତି । ଅସୁବିଧା କଣ । ପରିବାର ନ ଚାହିଁଲେ ବି ତ ଦୁହେଁ ଖୁସୀରେ ବାହାହେଇ ପାରନ୍ତେ । ଧୀରେ ଧୀରେ ଉଭୟଙ୍କ ପରିବାର ମାନି ନିଅନ୍ତେ । ଏମିତିତ ପ୍ରାୟ ହୁଏ । ପୁଣି ସମାଜତ ଆମ ହାତର ଗଢ଼ା । ସମାଜ ପାଖରେ ମଣିଷର ଭଲପାଇବା, ଆବେଗ, କଳ୍ପନା, ଘର ବାନ୍ଧିବାର ମୋହ, ଜୀବନର ପୁଞ୍ଜିଭୂତ ସ୍ୱପ୍ନ ବଳି ପଡ଼ିବ କାହିଁକି ? ଯୁଗେ ଯୁଗେ ମଣିଷର ଭଲ ପାଇବା ପାଖରେ ଦେବତା ବି ମୁଣ୍ଡ ନୁଆଁଇଛନ୍ତି । ତାହେଲେ ?

ବେଳେ ବେଳେ ମୁଣ୍ଡ ମୋର ଗୋଳମାଳ ହେଇଯାଏ । କ୍ଷମା ଅପାଙ୍କୁ ବୁଝିବାକୁ ଚେଷ୍ଟା କରେ । ଧ୍ୟାନମଗ୍ନ ହେଇ କେବେ କେବେ ତାଙ୍କୁ ବିଶ୍ଳେଷଣ କରେ । ସବୁଦିନ ସନ୍ଧ୍ୟାରେ ପ୍ରାୟ ତାଙ୍କ ଭିଜିଟର ଅତୁଲ ଦାସ ଆସନ୍ତି । ସେମାନେ ଏଇ ଗଛର ଛାଇରେ ହିଁ ଗପନ୍ତି, ଘଣ୍ଟା ଘଣ୍ଟା ବସନ୍ତି । ତାପରେ ରାତିରେ ତାଙ୍କ ଗପିବାର କିଛି ଅଂଶ ସେ ମୋତେ ଆପେ ଆପେ ଶୁଣାନ୍ତି । ଅତୁଲ ଦାସଙ୍କ ବିଭିନ୍ନ କାହାଣୀ ବଖାଣି ଚାଲନ୍ତି । କିନ୍ତୁ ମୁଁ କେବେ ଭଦ୍ରଲୋକଙ୍କୁ ଦେଖିନାହିଁ । କ୍ଷମା ଅପା ବି କେବେ ତାଙ୍କୁ ଚିହ୍ନାଇ ଦେବାକୁ ଇଚ୍ଛା କରି ନାହାନ୍ତି । ହୁଏତ ଅତୁଲ ବାବୁ କାହା ସହିତ ଚିହ୍ନାପରିଚୟ ହେବାକୁ ଭଲ ପାଉ ନଥିବେ । ଛାଡ଼ । ପସନ୍ଦ ଅପନି ଅପନି...

ସକାଳୁ ସକାଳୁ ଦିନେ ହଠାତ୍ ନିଦ ଭାଙ୍ଗି ଯାଇଥିଲା । କହିବା ବାହୁଲ୍ୟ ଯେ ଏକ

ସୁନ୍ଦର ଗୀତର ଗୁଣୁଗୁଣୁ ସ୍ୱର ମୋ ଆଖିରୁ ନିଦକୁ ଘୁଞ୍ଚାଇ ଦେଇଥିଲା । ଗୀତପ୍ରତି ମୋର ସବୁଦିନେ ଅସମ୍ଭବ ଦୁର୍ବଳତା । କିଏ ଗାଉଛି ଏତେ ସକାଳୁ ? ଭଲ କରି ତଥାପି ଶୀତ ସକାଳ ପାହି ନଥିଲା । ଦେଖିଲି କ୍ଷମା ଅପା ତାଙ୍କ ବିଛଣାରେ ନାହାନ୍ତି । ଆମ ରୁମ୍‌ର କବାଟ ଦରଆଉଜା । ଚମକି ଉଠି ପଡ଼ିଥିଲି । ସାଲ୍‌ଟା ଦେହରେ ଗୁଡ଼ାଇ ବାହାରକୁ ଆସିଥିଲି । ବାଃ ସୁନ୍ଦର ସକାଳ । ସାମ୍ନାରେ ହିଲଭ୍ୟୁ । ରେଖାଙ୍କିତ ଧୂଆଁଳିଆ ପାହାଡ଼ ଉପରେ ଭସାମେଘ ଓହ୍ଲେଇ ଚାଲିଛି । ପାହାଡ଼ ଚୂଡ଼ାରୁ ସେଥିପାଇଁ ଧୂଆଁ ଉଠୁଛି । ସଦ୍ୟ ଗାଧୁଆ କଅଁଳ ସକାଳ ସବୁଜ ଶାଢ଼ୀ ପିନ୍ଧି ଠିଆ ହେଇଛି । ଧାଡ଼ି ଧାଡ଼ି କୃଷ୍ଣଚୂଡ଼ା ଆଉ ଦେବଦାରୁ ଗଛ । ସେଆଡ଼କୁ ଚାହିଁ ରହିଛନ୍ତି କ୍ଷମା ଅପା । ତାଙ୍କ କଣ୍ଠରୁ ଗୁଣୁ ଗୁଣୁ ଗୀତଟେ ଲହରାଇ ଚାଲିଛି ଯାହାର ମଧୁର ତରାନା ମୋର ନିଦକୁ ଚାଉଁକରି ଭାଙ୍ଗି ଏକ ମୁଗ୍ଧ ବିହ୍ୱଳତା ଭରି ଦେଇଥିଲା ମନରେ, ଦେହରେ, ମୋର ସମଗ୍ର ସତ୍ତାରେ ।

କ୍ଷମା ଅପା ତାହାଲେ ଭଲ ଗୀତ ଗାଆନ୍ତି ? ମୋ ପାଦ ଶବ୍ଦ ଶୁଣି ସେ ଚାହିଁଲେ । କହିଲେ, ଆସ ଆସ । ତମେ ଶୋଇଥିଲ ତ ତେଣୁ ଉଠାଇଲି ନାହିଁ । କାହିଁକି କେଜାଣି ଆଜି ଆଦୌ ନିଦ ହେଲାନାହିଁ ।

କହିଲି ତମର ସିନା ନିଦ ହେଲାନି କିନ୍ତୁ ତମ ଗୀତ ମୋର ନିଦକୁ ଭାଙ୍ଗିଦେଲା । ସତରେ ଏତେ ସୁନ୍ଦର ଗୀତ ଗାଅ ବୋଲି ମୋର ଧାରଣା ନଥିଲା । ଗାଅତ ଆଉ ଥରେ । ବେଶ୍ ସକାଳଟା ଆହୁରି ଜମିଯିବ । ଲକ୍ଷ୍ୟ କଲି ମୋର ପ୍ରଶଂସା ଶୁଣି ତାଙ୍କ ମୁହଁରେ ଖୁସୀ ସବୁ ବିଛେଇ ଯାଉଛି ।

ସେ କହିଲେ, ଏଇ ଗୀତଟି ମୋ ଜୀବନ । ଏଇ ଗୀତଟିହିଁ ମୋତେ ଏକ ନୂଆଜନ୍ମ ଦେଇଥିଲା ।

ମାନେ ? ମୁଁ ଭଲ କରି ତାଙ୍କ କଥା ବୁଝି ପାରିଲି ନାହିଁ ।

ସେ କହିଲେ, 'ଆଜିକୁ ଆଠବର୍ଷ ତଳେ ମୁଁ ଆମ ଘରର ଛାତରେ ଠିଆ ହେଇ ଗୀତଟି ଗାଉଥିଲି । ଆମ ଘର ସାମ୍ନାରେ ଥିବା ଜଣେ ଯୁବକ ଏ ଗୀତଟି ଶୁଣି ମୋ ପ୍ରେମରେ ପଡ଼ି ଯାଇଥିଲା । ସେ କୁଆଡ଼େ ଭାବିଥିଲା ଯାହାର କଣ୍ଠସ୍ୱର ଏଡ଼େ ସୁନ୍ଦର ସେ କେତେ ସୁନ୍ଦର ହେଇ ନଥିବ ସତରେ । ସେଥିପାଇଁ ମୋତେ ଦେଖିବା ଲାଗି ପାଗଳ ହେଇ ଉଠିଥିଲା । ଯେତେବେଳେ ଏ ଗୀତ ମୁଁ ଗାଉଥିଲି ସେ ଚୁମ୍ବକ ଭଳି ଟାଣି ହେଇ ଆସୁଥିଲା ତାଙ୍କ ଝରକା ପାଖକୁ । ମୋତେ ବଡ଼ ଖୁସୀ ଓ ମଜା ଲାଗୁଥିଲା । ତେଣୁ ତାକୁ ଅସ୍ତବ୍ୟସ୍ତ କରି ଦେବାକୁ ସଞ୍ଜସକାଳେ ଜାଣିଜାଣି ଗୀତଟିର ଭଲ୍ୟୁମ ବଢ଼ାଇ ଦେଉଥିଲି ।

ମୁଁ ବେଶ୍ ଆଗ୍ରହର ସହିତ ଶୁଣୁଥିଲି ତାଙ୍କର ପରୀରାଇଜ ଭଳି କାହାଣୀକୁ ।

ସେ କହିଲେ, କିଏ ହୋଇଥିବ ସେ କୁହତ ?

କିଏ ହୋଇପାରେ ? ଅତୁଲ ଭାଇ ?

କରେକ୍ଟ । ଠିକ୍ ଧରିଛ । ଏଇଠୁ ହିଁ ଅତୁଲ ସହିତ ମୋର ସଂପର୍କର ଆରମ୍ଭ । ଏ ଗୀତଟି ହିଁ ଆମ ଭଲ ପାଇବାର ସେତୁବନ୍ଧ ।

ଆଜି ସକାଳୁ ସକାଳୁ ଅତୁଲ ଭାଇ ତାହାଲେ ଯାଦ୍‌ରେ ଆସିଗଲେ ନୁହେଁ ? କଣ କିଛି ଖାସ୍ କାରଣ ?

ଏଥର ତାଙ୍କ ମୁହଁରେ ଅବିରସବୁ ବୋଳି ହେଇଗଲା । ହଁ ଠିକ୍ କହିଛ ତମେ । ଆଜି ମୋର ଜନ୍ମ ଦିନ ।

ସତେ ! ହ୍ୟାପି ବାର୍ଥ ଡ଼େ ଟୁ ୟୁ...

ମୋ ଜନ୍ମ ଦିନରେ ଅତୁଲ ଯେଉଁଠି ଥାଉ ନିଶ୍ଚୟ ପହଁଞ୍ଚି ଯାଉଥିଲା । ଟୁରରେ ଯାଇ ଥିଲେ ଫେରି ଆସୁଥିଲା କିମ୍ବା ବାରମ୍ବାର କାହାକୁ କହି ଯାଉଥିଲା ଫୁଲ ତୋଡ଼ାଟି ଦେଇଯିବାକୁ । କିନ୍ତୁ ତା ବଦଳରେ ସେ ଗୋଟିଏ କଥା ଆଦାୟ କରୁଥିଲା । ତାହାହେଲା ଏ ଗୀତଟି । ଯେମିତି ହେଲେ ମୋତେ ଏ ଗୀତଟା ଗାଇବାକୁ ପଡ଼ିବ ।

ତାହାଲେ ସଞ୍ଜବେଳେ ଗୀତଟା ବୋଲାଯିବ ବୋଲି ସକାଳୁ ସକାଳୁ ପ୍ରାକ୍ଟିକ୍ସ ଆରମ୍ଭ କରି ଦେଇଛ । ଯାହା ହେଉ ତମ ଅତୁଲ ବାବୁଙ୍କ ଦୟାରୁ ଗୀତଟି ଶୁଣିବାର ସୌଭାଗ୍ୟ ମିଳିଲା । ଚାଲ ଏହା ବଦଳରେ ମୁଁ ବଢ଼ିଆ ଚା କପ୍‌ଟେ ତମକୁ ପ୍ରେଜେଣ୍ଟ କରିବି । ନାଁନାଁ ଆଜି କଫି ପିଇବା । ତମର ଯେ ଆଜି ବାର୍ଥ ଡ଼େ । ସଞ୍ଜବେଳେ ଯଦିଓ ତମେ ତାଙ୍କ ସହ ଭଲ କରି ସେଲିବ୍ରେଟ କରିବ । କିନ୍ତୁ ସକାଳଟା ମୋର ।

ଆମେ ଫେରି ଆସିଲା ବେଳେ ବି ଗୁଣୁଗୁଣୁ ଗୀତଟି ତାଙ୍କ କଣ୍ଠରେ ଲାଖି ରହିଥିଲା । ପ୍ରଜାପତି ପଛରେ ଫ୍ରକ୍ ପିନ୍ଧା ଝିଅଟି ଡ଼େଇଁ ଡ଼େଇଁ ଧାଇଁଲା ଭଳି ସେ ମୋ ସହିତ ଆସୁଥିଲେ । ଅତୀତ ତାଙ୍କ ମୁହଁରେ ସେମିତି ଅବିର ବୋଳି ଧରିଥିଲା । କେଉଁ ଏକ ମଧୁର ସ୍ମୃତି ଭିତରକୁ ସେ ଯେମିତି ଟାଣି ହେଇ ଯାଉଥିଲେ । ଭଲ ପାଇବାର ପୂର୍ଣ୍ଣତା ନାରୀକୁ ଏତେ ସୁନ୍ଦର କରିଦିଏ ? ଏତେ ଭାବବିହ୍ୱଳ ସମୁଦ୍ରରେ ବୁଡ଼ାଇଦିଏ ।

ଏମ୍‌ତି ଦିନ ଗଡ଼ିଯାଏ । ପ୍ରତି ସନ୍ଧ୍ୟାରେ ରୁଟିନ୍ ବନ୍ଧା ଜୀବନ ଭଳି ବେଶ ଭୂଷା ହେଇ କ୍ଷମାଅପା ବାହାରି ଯାଆନ୍ତି ଅଶ୍ୱସ୍ତଗଛ ତଳକୁ ଯେଉଁଠି ଅପେକ୍ଷା କରିଥାଏ ତାଙ୍କର ଅତୁଲ ଦାସ । ତାପରେ ରାତିରେ ସେ ମୋତେ କହିଚାଲନ୍ତି ତାଙ୍କର ପ୍ରେମ ନଗରର ଅନେକ କାହାଣୀ । ସେ ରାଣୀ ମହୁମାଛି ଭଳି ମୋ ଚାରିପଟେ ଗୀତିମୟ ହୋଇଉଠନ୍ତି ।

ଥରେ ରାତିରେ ହଠାତ୍ ମୋର ନିଦ ଭାଙ୍ଗିଦେଲେ ସେ । ସ୍ୱପ୍ନ ଦେଖୁଛି କି କଣ, ମୁଁ ଚମକି ଉଠିଲି । ସେ ପର୍ଯ୍ୟନ୍ତ ମୋ ଆଖିରୁ ନିଦ ଛାଡ଼ି ନଥାଏ । ବିରକ୍ତ ବି ଲାଗୁଥାଏ । କ୍ଷମା ଅପା ଏ ଭିତରେ ଦି କପ୍ ଚା କରି ଟେବୁଲରେ ରଖି ସାରିଥିଲେ । କଣ ହେଲା ? ଦେଖିଲି ସେ ଯେମିତି ମୋତେ କିଛି କହିବାକୁ ଚାହୁଁଛନ୍ତି । କଣ କିଛି କହିବ ?

ସେ ହସି ଦେଲେ । ତାପରେ କ୍ଷଣେ ଚାହିଁ କହିଲେ ମୁଁ ଅତୁଲକୁ କାହିଁକି ବାହା ହେଇ ପାରିବିନି ସେଇ କଥାଟାହିଁ ତମକୁ କହିବି ଆଜି । ଅନେକ ଦିନ ହେଲା ତମ ଆଗରେ ପ୍ରକାଶ କରିଦେବି ବୋଲି ଚାହିଁଛି, ପାରିନାହିଁ । ପ୍ରମିସ୍ କର ଏ କଥା କାହାକୁ କହିବନି । ମୁଁ ଆଶ୍ଚର୍ଯ୍ୟ ହେଇ ତାଙ୍କୁ ଚାହିଁଲି । କଣ ଏମିତି କହିବେ ରାତି ଅଧରେ କ୍ଷମାଅପା ? ଖରାଦିନ ହେଲେ ବି ମୁଁ ଶୀତେଇ ଗଲି । ଡରିଲା ଡରିଲା ଭାବ ନେଇ ତାଙ୍କୁ ଚାହିଁଲି । ସେଦିନ ରାତିରେ ସେ ଏମିତି ଏକ କାହାଣୀ କହିଲେ ଯାହା ଶୁଣି ମୁଁ ସ୍ତମ୍ଭୀଭୂତ ହେଇ ଯାଇଥିଲି । ପାଟିରୁ ମୋର କୌଣସି କଥା ବାହାରି ନଥିଲା । ଏମିତି କେବେ ସମ୍ଭବ ହେଇପାରେ ?

କ୍ଷମା ଅପାଙ୍କ କାହାଣୀ ଏମିତି ଥିଲା । ୱାର୍କିଂ ଓମେନ୍ସ ହଷ୍ଟେଲ ଆସିବା ଆଗରୁ ସେ ଜଣକ ଘରେ ଭଡ଼ାରେ ଥିଲେ । ପାଖରେ ଗାଁରୁ ଆସିଥିବା ଚାକରାଣୀ ଝିଅଟିଏ ଥିଲା । ଘରବାଲା ବେଶ ଭଲ ଲୋକ ଥିଲେ । ତାଙ୍କ ପୁଅମାନେ ତାଙ୍କୁ ଅପା ବୋଲି ଡାକୁଥିଲେ । ସେଥର ଚାକରାଣୀ ଝିଅଟି ଗାଁକୁ ଯାଇଥାଏ । ସଅଳ ଖାଇ ସେ ଶୋଇ ପଡ଼ିଥିଲେ । ଘରବାଲାଙ୍କ ପୁଅର ଅପା ଅପା ଡାକ ଶୁଣି କିଛି ନ ଭାବି ସେ କବାଟ ଖୋଲି ଦେଇଥିଲେ । ପଶି ଆସିଥିଲେ ଘରବାଲାଙ୍କ ଦୁଇପୁଅ ସହିତ ଆଉ ଦୁଇଜଣ ଯୁବକ । ସେମାନେ କବାଟ ବନ୍ଦ କରି ଦେଇଥିଲେ । କିଛି ବୁଝିବା ଆଗରୁ ଦ୍ରୁତ ଭାବରେ ଘଟଣାଟି ଘଟି ଯାଇଥିଲା । ଭୟରେ ଚିତ୍କାର କରିବା ଆଗରୁ ସେମାନେ ତାଙ୍କ ପାଟିରେ ଲୁଗା ଭର୍ତ୍ତି କରି ହାତଗୋଡ଼ ବାନ୍ଧି ଦେଇଥିଲେ । ଆଉ ତାପରେ ଜଣେ ପରେ ଜଣେ...

କ୍ଷମାଅପାଙ୍କ ପରବର୍ତ୍ତୀ କଥା ମୁଁ ଶୁଣି ପାରୁନଥିଲି । ମୋ ପାଦତଳୁ ଯେମିତି ମାଟି ଖସି ଯାଉଥିଲା, ଧସେଇ ପଡୁଥିଲା । ମୋ ଚାରିପଟର ସଜଡ଼ା ପୃଥିବୀରେ ଏଇ ଯେମିତି ଭୂମିକମ୍ପ ଆସିଥିଲା । ମୁଁ ଏକ ପ୍ରକାର ଥରୁଥିଲି । ଏହି ସବୁ ଘଟଣା ସମ୍ବାଦପତ୍ରରେ ଅନେକ ଥର ପଢ଼ିଛି, ଚଳଚିତ୍ରରେ ଅଭାଗିନୀ ସହିତ ମୋର ଏ ଯାଏଁ ଭେଟ ହେଇ ନଥିଲା । ଏ ଘଟଣାରେ କି ସହାନୁଭୂତି ଦେଇହୁଏ ? ଲୁହ ଢ଼ାଳି ହୁଏ ନା ସାନ୍ତ୍ୱନା ଥାଏ । ମୁଁ ଗୁମ୍ ମାରି ଯାଇଥିଲି । ବୁଝାଇବା ପାଇଁ ଭାଷା ନଥିଲା ମୋ ପାଖରେ । ମୋ ଦେହ ହାତ ବରଫ ପାଲଟି ଯାଉଥିଲା ।

କ୍ଷମାଅପା କାନ୍ଦୁଥିଲେ । ଅନେକ ଦିନ ଧରି ଜମାଟ ବାନ୍ଧିଥିବା କୋହ, କ୍ଷୋଭ,

ହତାଶା ତରଳି ଗଡ଼ିଯାଉଥିଲା ଯେମିତି ।

ପଚାରିଲି, ତମେ ଆଇନର ସାହାଯ୍ୟ ନେଇ ନାହଁ ଅପା ?

ଆଇନ୍ ! ସେ ହସିଲେ । ଆଇନ୍ ଅଛି ଆମ ଭଳି ଝିଅମାନଙ୍କୁ ଅପମାନିତ କରିବାକୁ, ବଦ୍‌ନାମ କରିବାକୁ । ଯେଉଁମାନେ ଏ ଘଟଣା ଘଟାଇ ଥିଲେ ସେମାନେ ସମସ୍ତେ ପ୍ରତିଷ୍ଠିତ ଘରର ପିଲା ଥିଲେ । ତାଙ୍କ ବାପା ସମାଜର ଜଣେ ଜଣେ କ୍ଷମତାଶାଳୀ ବ୍ୟକ୍ତିତ୍ୱ ଥିଲେ । କୋର୍ଟ ଖୋଜିବ ପ୍ରମାଣ । ମୁଁ ସେହି ଭୟଙ୍କର ରାତିର ପ୍ରମାଣ କେମିତି କୋର୍ଟରେ ଉପସ୍ଥାପନା କରିଥାନ୍ତି ? କିଏ ବା ବିଶ୍ୱାସ କରିଥାନ୍ତା । ମୁଁ ଜାଣିଥିଲି ସେମାନେ ଯଦିଓ ଗିରଫ ହେବେ ତା ପରଦିନ ଜାମିନ୍‌ରେ ଖସି ଆସିବେ । ବାପାଙ୍କ କ୍ଷମତା ପଇସା ବଳରେ ସେମାନେ ନିର୍ଦ୍ଦୋଷରେ ଖଲାସ ହେଇଯିବେ । କିନ୍ତୁ ସବୁଦିନ ପାଇଁ ମୁଁ ହିଁ ବଦ୍‌ନାମ ହେଇ ରହିଯିବି । ସମାଜ ପତିତା, କଳଙ୍କିନୀର ଆଖ୍ୟା ଦବ । ଏତେ ଲାଞ୍ଛନା ଦେବ ଯେ ସେ ବୋଝକୁ ଧରି ମୁଣ୍ଡ ଟେକି ଚାଲିବା ମୋ ପକ୍ଷରେ ସମ୍ଭବ ହେବନାହିଁ ।

ତା ବୋଲି ତମ ଭଳି ନିର୍ଯ୍ୟାତିତା ଝିଅମାନେ ପ୍ରତିବାଦ କରିବେ ନାହିଁ ? ଅଧିକାର ଖୋଜିବେନି ? ସେମିତି ହେଲେତ ଯିଏ ପାରିବ ଯାହାର ଝିଅ, ଭଉଣୀକୁ ଯେ କୌଣସି ସମୟରେ ଯେ କୌଣସି ସ୍ଥାନରୁ ଉଠାଇ ନେବ । ଆମର ସବୁ ସାମାଜିକ ସଂପର୍କ, ନୀତିନିୟମ ଭୁଷୁଡ଼ି ପଡ଼ିବ । କ୍ଷମାଅପା ପ୍ରସଙ୍ଗ ବଦଳାଇଲେ । କହିଲେ, ଛାଡ଼ ଏତେ କଥା ଭାବିନି । ତାପରେ ଡ଼ାକ୍ତରୀ ମାଇନା କରି ମୁଁ ପରିସ୍ଥିତିକୁ ସମ୍ଭାଳି ନେଲି । ତାହାଲେ ତୁ କହ ମୁଁ ଅତୁଲକୁ କେମିତି ବାହାହେବି, କଣ କହିବି । ଏକଥା କଣ ତାକୁ କୁହାଯାଇ ପାରେ ? ସବୁ ଶୁଣିଲା ପରେ ଯଦି ସେ ଦୂରେଇ ଯାଏ । ନାରୀ ଜୀବନର ଅମୂଲ୍ୟ ସମ୍ପଦଟିକୁତ ହରାଇ ଦେଇଛି । ତାପରେ ଅତୁଲକୁ ହରାଇ ସେ ଆଘାତ ସହିବା ମୋ ପକ୍ଷରେ ସମ୍ଭବପର ହେବନାହିଁ । ଯେ କୌଣସି ସମ୍ପଦର ବିନିମୟରେ ବି ମୁଁ ଅତୁଲକୁ ହଜାଇବାକୁ ଚାହେଁନାହିଁ । ବରଂଚ ଏମିତି ଭାବରେ ବଞ୍ଚିବା ଭଲ ।

ସେଦିନ ରାତିରେ ଆଉ ମୋ ଆଖିରେ ନିଦ ନଥିଲା । ନିଶ୍ଚନ୍ତ ଭାବରେ ଶୋଇ ଯାଇଥିଲେ କ୍ଷମାଅପା ମୋ ଆଖିରୁ ନିଦ ଚୋରି କରି । ତାଙ୍କ ପ୍ରତି ଦୟା, ସହାନୁଭୂତିରେ ମୁଁ ବିଚଳିତ ହେଇ ଯାଇଥିଲି । ଶୁଅନ୍ତୁ, ଅନେକ ଦିନ ପରେ ମନର ବୋଝକୁ ହାଲୁକା କରି ବିଚାରି ଶୋଇଥାନ୍ତୁ । ତାଙ୍କ ଭିତରେ ଯେ ଏମିତି ଏକ ଦୁଃଖ ରହିଛି ତାଙ୍କର ଖୁସ୍‌ମିଜାସ୍ ସ୍ୱଭାବ ଦେଖିଲେ କିଏ ବିଶ୍ୱାସ କରିବ ଯେ । ଯେଉଁମାନେ ବେଶି ହସନ୍ତି ସେମାନଙ୍କ ଜୀବନରେ ବେଶି କ୍ଷତ ନା । କେମିତି ଏତେଦିନ ଧରି ସେ ନିଜକୁ ସମ୍ଭାଳି ନେଇଛନ୍ତି । ଆଉ ଅତୁଲ ବାବୁ ଏକଥା ଜାଣିଲା ପରେ... ସତରେ ଦୂରେଇ ଯିବେ ? ପ୍ରେମତ ଦେହଠାରୁ ବହୁ ଉର୍ଦ୍ଧ୍ୱରେ । ଭଲ ପାଇବାତ ନାରୀର କୁମାରୀତ୍ୱକୁ କେନ୍ଦ୍ର କରି ଗଢ଼ି ଉଠେନା । କିନ୍ତୁ

କେତେଜଣ ପୁରୁଷ ଏକଥା ବୁଝନ୍ତି ? ହେଲେ ଅତୁଲ ଦାସ କଣ ସେହି ତଥାକଥିତ ପୁରୁଷ ଭିତରେ ଅନ୍ତର୍ଭୁକ୍ତ ? ସେ କଣ ଏତିକି ବୁଝିବେନି, କ୍ଷମା ଅପାଙ୍କର ବା ଅପରାଧ କଣ ଥିଲା ? ଆଜି ଅତୁଲ ଦାସ ଯଦି କ୍ଷମାଅପାଙ୍କ ସ୍ଥାନରେ ଥାନ୍ତେ ? ପୁଣି ମନ କହିଲା, ତ୍ୟାଗ, ଉତ୍ସର୍ଗ, କ୍ଷମା ଏସବୁ କେବଳ ବହିର କଥା, ଉପନ୍ୟାସର ସୁନ୍ଦର ଧାଡ଼ି । ବାସ୍ତବତା ସହିତ ତାହାର କୌଣସି ସଂପର୍କ ନଥାଏ । ଆଦର୍ଶ ସଂପର୍କରେ ଭାଷଣ ଦେବା ସହଜ କିନ୍ତୁ ଆଦର୍ଶକୁ ପାଳିବା ସେତେ ସହଜ ନୁହେଁ । ହୁଏତ ସେଇଥି ପାଇଁ କ୍ଷମାଅପା ବାହା ନ ହେବାର ନିଷ୍ପତ୍ତି ନେଇଛନ୍ତି । ପୁଣି ଭାବିଲି ଦୁହେଁ ଦୁହିଁଙ୍କ ପାଇଁ ସାରାଜୀବନ ଏଭଳି ଭାବରେ ରହିବା ଅପେକ୍ଷା ଏହି ଘଟଣାଟାକୁ ଏକ ଦୁର୍ଘଟଣା କହି ଭୁଲିଯାଇ ଜୀବନ ସହିତ କମ୍ପ୍ରୋମାଇଜ କରିନେଲେ କେତେ ଭଲ ହୁଅନ୍ତା ନାହିଁ । ହାୟ, ଜୀବନ ସତରେ କେଡ଼େ ଜଟିଳ । ସବୁ ଯୁଗରେ ପୁରୁଷର ହିଁ ଜୟ ହେଇଛି । ନାରୀ ଯେତେ ଶିକ୍ଷିତା, ସମାନ ଅଧିକାରର ହକ୍‌ଦାର ହେଲେହେଁ ପୁରୁଷ ଆଖିରେ ସେ ସେହି ରକ୍ତ ମାଂସର ପ୍ରତିମାଟିଏ ହିଁ ହୋଇ ରହିଛି । ସବୁ ଯୁଗରେ ରହିଥିବ । ଏଥିରେ ବା ପରିବର୍ତ୍ତନ କାହିଁ ?

ଅତୁଲ ଆସିଛି କହି ଡ଼େଇଁ ଡ଼େଇଁ ପ୍ରତିଦିନ ଭଳି ସେଦିନ ଖୁସୀରେ ଓହ୍ଲେଇଗଲେ କ୍ଷମାଅପା । ଓଶ୍ୱସ୍ତ ଗଛର ସେପଟେ ତାଙ୍କ ଛାଇ ଲୁଚିଲା ପରେ ମୁଁ ପାଦ ଟିପି ଟିପି ଓହ୍ଲେଇଲି । ଆଜି ଯେମିତି ହେଲେ ଅତୁଲ ଦାସଙ୍କୁ ଦେଖିବି । ନିଶ୍ଚେ ସୁବିଧା ହେଲେ ଦୁହିଁଙ୍କୁ ମିଳାଇବା ପାଇଁ ମୁଁ ଚେଷ୍ଟା କରିବି । କାହିଁକି ଅସମୟରେ ଦୁଇ ଦୁଇଟା ଜୀବନ ନଷ୍ଟ ହେଇଯିବ । କିନ୍ତୁ, ଏକଣ ? ତା ହେଲେ... ଭାବିପାରିଲି ନାହିଁ । ପୁଣି ଥରେ ମୋ ପାଦତଳୁ ମାଟି ଧସିବାକୁ ଆରମ୍ଭ କଲା । ଗଛତଳେ କେହି ନଥିଲେ କେବଳ ପବନର ସାଇଁ ସାଇଁ ଆଉ ଚଢ଼େଇମାନଙ୍କର କିଚିରି ମିଚିରି ଶବ୍ଦ ଛଡ଼ା । ଓହଳି ଆସିଥିବା ଗୋଟାଏ ଡ଼ାଳକୁ ଧରି କ୍ଷମାଅପା ଠିଆ ହେଇଥିଲେ କେଉଁ ଶିଳ୍ପୀର ନିଖୁଣ ପ୍ରସ୍ତର ମୂର୍ତ୍ତିଟେ ଭଳି । ଆଖି ତାଙ୍କର ଦିଗ୍‌ବଳୟ ଛୁଇଁଥିଲା । ଲମ୍ବିଯାଇ କାହିଁ କେଉଁଠି ହଜି ଯାଇଥିଲା । ଆଗରେ ଯେମିତି ଥିଲା ସମୁଦ୍ରଭଳି ଶୂନ୍ୟତା । ଜାଗାଟାର ଶୁନ୍‌ଶାନ୍, ଖାଁ ଖାଁ ଭାବ ଯିବାର ନାହିଁ । ସତେକି ବହୁ ଦୂରରୁ ଆସିଥିବା ଅଜଣା ଲହରୀଟିଏ ଏଇଠି ତାର ଦିଗ, ଲକ୍ଷ୍ୟ ହଜାଇ ଦେଇଛି । ରାସ୍ତା ବାରମ୍ବାର ଖୋଜି ହେଇ ପୁଣି ରାସ୍ତା ହଜାଇ ଚାଲିଛି । ତାହେଲେ... ??? ଆଜିଯାଏଁ ଯାହା ସବୁ ମୁଁ ତାଙ୍କଠାରୁ ଶୁଣିଥିଲି... ଜଣକର କଳ୍ପନାର ପୃଥିବୀର ରଙ୍ଗ ଏଭଳି ହୋଇପାରେ ?

ମୁଁ ଯେମିତି ଯାଇଥିଲି ସେମିତି ପାଦ ଟିପି ଟିପି ଫେରି ଆସିଲି । ହଷ୍ଟେଲର ଝରକା ଦେଇ ଝାପସା ଦିଶୁଥିବା ଅଶ୍ୱସ୍ତ ଗଛକୁ ଚାହିଁ ଭାବନା ମୋର ଲମ୍ବି ଯାଇଥିଲା । ଏ କି ଅଦ୍ଭୁତ ଆନନ୍ଦ, ଅଦ୍ଭୁତ କଳ୍ପନାର ଜୀବନ । ମୁଁ ଜାଣିଥିଲି ସବୁଦିନ ଭଳି ଆଜି ବି ଅତୁଲ ଦାସଙ୍କ ସହିତ କଟାଇଥିବା ତିନି ଚାରିଘଣ୍ଟାର କଥାବାର୍ତ୍ତା କ୍ଷମାଅପା ଆସି ଆପେ

ଆପେ ବଖାଣିବେ । ଜଣକର କପୋଳକଳ୍ପିତ କାହାଣୀକୁ ଏତେ ଦିନ ଧରି ମୁଁ ବିଶ୍ୱାସ କରି ଆସିଥିଲି । ସହାନୁଭୂତି, ଆବେଗରେ ତାଙ୍କୁ ଓଦା କରି ଦେଉଥିଲି । ଏତେ ପାଖରେ ଥାଇ ବି ମୁଁ ତାଙ୍କୁ ଆଜିଯାଏଁ ବୁଝିପାରି ନଥିଲି । ମଣିଷ ମଣିଷ ପାଖରେ ଏତେ ଅବୁଝା ପାଇଁଟେ ? ପ୍ରତିଦିନ ଭଳି କ୍ଷମାଅପା ସେଦିନ ଫେରି ଆସିଲା ପରେ ଶୁଣେଇ ଚାଲିଥିଲେ ଅତୁଲ ଓ ତାଙ୍କର ପ୍ରେମ କାହାଣୀ, ଯାହା ଥିଲା ଆରବ୍ୟ କାହାଣୀଠାରୁ ବି ଆହୁରି ରୋମାଞ୍ଚକର । ଯେ କେହି ମୁଗ୍ଧ ହେଇଯିବ, ଈର୍ଷା କରିବ । ଭାସିଯିବା ଭାବପ୍ରବଣତାରେ ଓଦା ହେଇଯିବ ।

ତାର କିଛି ଦିନ ପରେ ସେହି ଆରବ୍ୟ ରଜନୀ ରୋମାଞ୍ଚକର କାହାଣୀ ବି ସରିଗଲା । ହାୟ, ତାଙ୍କର ବାଚାଳତା ଚରମ ସୀମାରେ ପହଞ୍ଚିଥିଲା । ଘର ଲୋକ ଆସି ନେଇଗଲା ଦିନ ଶୁଣିଥିଲି ସେ ଅନେକ ଦିନର ଜଣେ ମାନସିକ ରୋଗୀ ଥିଲେ । ମୁଁ ପୁଣି ଥରେ ଚମକି ଷ୍ଟେଚ୍ୟୁ ବନି ଯାଇଥିଲି ।

ତାପରେ ବାହାଘର ଆଗରୁ ଯେଉଁ କେତେ ଦିନ ସେ ହଷ୍ଟେଲରେ ଥିଲି କ୍ଷମାଅପାଙ୍କ ଅବର୍ତ୍ତମାନରେ ତାଙ୍କର ରହସ୍ୟ ରୋମାନ୍ସ ପୂର୍ଣ୍ଣ କାହାଣୀର ପୃଷ୍ଠା କେବଳ ଓଲଟାଇଥିଲି । ବାରମ୍ବାର ଚିନ୍ତା କରୁଥିଲି ମୁଁ ଯାହା ଆଖିରେ ଦେଖିଲି, ଆଉ କାନରେ ଶୁଣିଥିଲି ସେମଧ୍ୟରୁ କେଉଁ କଥାଟି ସତ ଥିଲା ? ତାଙ୍କ ଜୀବନର ପ୍ରକୃତ କାହାଣୀଟି ହୁଏତ ମୋ ପାଖରେ ଅପହଞ୍ଚ୍ ହେଇ ରହିଗଲା ସବୁ ଦିନ ପାଇଁ ।

